# ଚେନାଏ ଆକାଶ
# ମୁଠାଏ ପୃଥିବୀ

ପଲ୍ଲୀଶ୍ରୀ ପଟ୍ଟନାୟକ

ସୁବର୍ଣ୍ଣଶ୍ରୀ ପ୍ରକାଶିନୀ, ବାଲେଶ୍ୱର

# ଚେନାଏ ଆକାଶ
# ମୁଠାଏ ପୃଥିବୀ

(ଗଳ୍ପ ସଂକଳନ)

ଗାଳ୍ପିକା : ପଲ୍ଲୀଶ୍ରୀ ପଟ୍ଟନାୟକ
ଇରିଗେସନ୍ କଲୋନୀ, ଭବାନୀ ପାଟଣା

ପ୍ରକାଶକ : କାଳୀପଦ ପଣ୍ଡା
ସୁବର୍ଣ୍ଣଶ୍ରୀ ପ୍ରକାଶିନୀ, ବାଲେଶ୍ୱର

ଠିକଣା : ସୁନାରୁଇ, ବି. କଟିସାହି,
ସିଂଲା (ବାଲିଆପାଳ) ବାଲେଶ୍ୱର - ୭୫୬୦୨୩
ଫୋ:୦୬୭୮୧-୨୯୧୪୨୫ /
୯୪୩୭୦୮୯୨୪୧

ପ୍ରଚ୍ଛଦ ଶିଳ୍ପୀ : ଅଶୋକ ପଟ୍ଟନାୟକ

ମୁଦ୍ରଣ : ଜଗନ୍ନାଥ ପ୍ରସେସ୍
ଡଗରପଡ଼ା, କଟକ

ଅକ୍ଷର ବିନ୍ୟାସ : ଶବ୍ଦଲିପି,
ଫକୀରମୋହନ ସେନାପତି ରୋଡ଼, ବାଲେଶ୍ୱର

ପ୍ରଥମ ପ୍ରକାଶ କାଳ : ରାକ୍ଷୀ ପୂର୍ଣ୍ଣମୀ ୨୦୦୬

ମୂଲ୍ୟ : ୮୦ (ଅଶି ଟଙ୍କା ମାତ୍ର)

# ଉତ୍ସର୍ଗ

ଓଡ଼ିଶା ମାଟି ମା'ର ଯୋଗ୍ୟତମ ସନ୍ତାନ ବିଶିଷ୍ଟ
କବି ବ୍ରଜନାଥ ରଥଙ୍କ କରକମଳରେ
'ଚେନାଏ ଆକାଶ ମୁଠାଏ ପୃଥିବୀ'କୁ ଉତ୍ସର୍ଗ
କରି ମୋ ଜୀବନ ସାର୍ଥକ ମଣୁଛି ।

ପଲ୍ଲୀଶ୍ରୀ ପଟ୍ଟନାୟକ

# ମୋ ବାପାଙ୍କ ପାଇଁ ନାନାବାୟା ଗୀତଟିଏ

ତୁମେ ଦେଖିନ କେବେ
ରକ୍ତନଦୀରେ ରୂପାନ୍ତରିତ
ଦୟାନଦୀର ଅବୟବ;
ପାଦରେ ଫୁଟିଯାଉଥିବା
ଅଜସ୍ର କଣ୍ଟାକୁ କାଢ଼ି
ଫିଙ୍ଗିବାକୁ ବି ମୁହୂର୍ତ୍ତଟିଏ
ନାହିଁ ତୁମ ପାଖେ;
ଜଣେ ବୀର ସୈନିକ ପରି
କେବଳ ମାତ୍ର
ଯୁଦ୍ଧ କରିବା ନ୍ୟାୟରେ
ତମେ ଲଢ଼ି ଚାଲିଛ ।
ଦେଖିନ ପ୍ରତିପକ୍ଷରେ
ଅଛି କିଏ
ଛାତି ପାତି ସହିଛ ସବୁ
ଗୁଳିର ଯନ୍ତ୍ରଣା ।
ମଥାପାତି ରହିଛ
ଖରା-ବର୍ଷା ଶୀତ-କାକରକୁ;
ତୁମରି ପିଲାଙ୍କୁ
ଚେନାଏ ଆକାଶ
ମୁଠାଏ ପୃଥିବୀ ଦେବା ପାଇଁ
ପାପୁଲି ତୁମ ବାରବାର
ରକ୍ତାକ୍ତ ହୋଇଛି
ତଥାପି ଥକିନ;
ସାଉଁଟିଛ ସବୁ କୋହ
ଲୁହ ଓ ବେଦନା;
ଛାତି ଆରପାଖେ
ସାଇତି ରଖିଛ ସବୁ
ଜୀବନ ଯନ୍ତ୍ରଣା ।।
ହେଲେ କେଉଁଠି କେହି ଚୁପ୍‌ଚାପ୍ ତୁମକୁ
ନିରେଖି ଦେଖୁଛି,
ନୀରବରେ ତୁମପାଇଁ
ଲୁହ ବର୍ଷାଉଛି,
ତୁମ ସାଥେସାଥେ
ସମୟ ସହ ସେ ବି ଲଢୁଛି ।
ହେ ମୋର କାଳଜୟୀ
ଅନନ୍ତ ମହାଶୂନ୍ୟ
ସୃଷ୍ଟି ତୁମ ବ୍ୟର୍ଥ ନୁହେଁ
ଲକ୍ଷ୍ୟ ତୁମ ଭ୍ରଷ୍ଟ ନୁହେଁ
ତୁମ ସାଙ୍ଗୁ ଟାଣ କର
ଲଢ଼େଇ ଆହୁରି
ବାକି ଅଛି ।।

ତୁମର ଲକି ।

# ମୋ କଥା

ପ୍ରଥମେ ମା' ଘଟଗାଁ-ବାସିନୀ ତାରିଣୀ, ମୋର ଗୁରୁଦେବ ଶ୍ରୀ ନିଜାନନ୍ଦ ସରସ୍ୱତୀ ଓ ଗୁରୁଦେବ ଠାକୁର ଶ୍ରୀ ଶ୍ରୀ ଅନୁକୂଳ ଚନ୍ଦ୍ରଙ୍କୁ କୋଟି ପ୍ରଣାମ !

ସେଦିନ କେଉଁ ଗ୍ରହ, ନକ୍ଷତ୍ର, ତିଥି ବେଳା ଥିଲା ତାହା ମୁଁ ଜାଣେନା । ବାଲେଶ୍ୱର ଯାଇଥିଲି ମୋର ଗବେଷଣା କାମରେ କବି ଶ୍ରୀଯୁକ୍ତ ବ୍ରଜନାଥ ରଥଙ୍କୁ ଭେଟିବା ପାଇଁ । ସେତେବେଳକୁ ରାତି ପ୍ରାୟ ନଅଟା, ସେଇ ମହାନ୍ ବ୍ୟକ୍ତିଙ୍କର ବ୍ୟକ୍ତିଗତ କଥା ଶୁଣିବା ଲୋଭରେ ଯାହା ଯାହା ପଚାରିଲି ତାଙ୍କର ଦରଦୀପ୍ରାଣର ଆବେଗଭରା ବକ୍ତବ୍ୟ ମୋ ଅନ୍ତରକୁ ଦୋହଲାଇ ଦେଲା । ସେଦିନ.ଅନୁଭବ କଲି ସ୍ରଷ୍ଟାଟିଏର ହୃଦୟ ତଳେ ଯଦି ଦୁଃଖର ଝରଣାଟିଏ ନ' ବହିଲା, ତେବେ ତାର ଲେଖା ପ୍ରାଣସ୍ପର୍ଶୀ ହେବନାହିଁ । ସେଦିନ ପ୍ରଭୁଙ୍କୁ ମିନତି କଲି ହେ ପ୍ରଭୁ ! ହେ ମହାବାହୁ, ହେ ଜଗତର ନାଥ ମୋତେ ଦୁଃଖ ଦିଅ । ଦୁଃଖରୁହିଁ ପୃଥିବୀର ସମସ୍ତ ଜଡ଼ ଓ ଚେତନ, ଭୂମିରୁ ଓ ଭୂମାକୁ ଜାଣିହୁଏ ।

ସଂଯୋଗ ହୁଏ ଏମିତି !

ସାକ୍ଷାତ ହୁଏ ସେହିଠାରେ କାଳୀଭାଇଙ୍କ ସହ । ଶ୍ରୀଯୁକ୍ତ କାଳୀପଦ ପଣ୍ଡା, 'ସୁବର୍ଣ୍ଣଶ୍ରୀ' ସାହିତ୍ୟ ପତ୍ରିକାର ସଂପାଦକ । ଯେକି ସେଦିନ ପରୋକ୍ଷ ଭାବରେ ମା' ସରସ୍ୱତୀଙ୍କ ଦ୍ୱାରା ନିଯୁକ୍ତ ହୋଇଥିଲେ ସମ୍ଭବତଃ ମୋର ପ୍ରକାଶକ ହେବା ପାଇଁ । ତାଙ୍କରି ଇଚ୍ଛା, ଚେଷ୍ଟା ଓ ଦାୟିତ୍ୱର ଫଳଶ୍ରୁତି ମୋର ତୃତୀୟ ସଙ୍କଳନ 'ଚେନାଏ ଆକାଶ, ମୁଠାଏ ପୃଥିବୀ' । ଭଗବାନ ତାଙ୍କର ଅଶେଷ ମଙ୍ଗଳ କରନ୍ତୁ । ଗପ ଲେଖିବା ପାଇଁ, ବହି ଛାପିବା ପାଇଁ, ଏମିତିକି ପତ୍ରିକାକୁ କିମ୍ବା ସମ୍ବାଦପତ୍ରକୁ ପଠାଇବା ପାଇଁ ମୁଁ କେବେ ବି ଗପ ଲେଖିନାହିଁ । ମୋ ଅନ୍ତରର ଉଚ୍ଛ୍ୱାସକୁ

ପ୍ରତିବେଦନା ଜଣାଇବା ଆଶାରେ କଲମ ଧରିଛି । ମୁଁ ଜାଣେ ଯେଉଁମାନେ ମୋର ଗପର ଚରିତ୍ର ସାଜି ମୋ ଦେହ, ମନ, ପ୍ରାଣରେ ସବାର ହୋଇ ମୋତେ ଆନମନା କରିଛନ୍ତି, ସେମାନେ କେବେହେଲେ ମୋର ଏ ବହି ପଢ଼ିବେନାହିଁ । ତଥାପି ମୁଁ ଲେଖେ । କାହିଁକି ଲେଖେ ତାହା ପଢ଼ିସାରିଲେ ଜାଣିବେ ।

ମୋର ଯାହା ମନେ ହୁଏ, ଦୁନିଆରେ ମଣିଷ ରୂପରେ କେହି ଭଗବାନ ଯଦି ଥାଆନ୍ତି, ତାହେଲେ ସେ ବୋଧେ ସରଳ, ନିଷ୍କପଟ, ନିଃସ୍ୱାର୍ଥପର, ପରୋପକାରୀ ବ୍ୟକ୍ତିଟିଏ । ଚିରବନ୍ଦିତ ଡ଼ଃ ବିଜୟ କୁମାର ଶତପଥୀ ଓ ଡ଼ଃ ସଂଘମିତ୍ରା ମିଶ୍ର ମୋତେ ସେହିପରି ଲାଗନ୍ତି । ଇତ୍ୟବସରରେ ସେହି ଦୁଇ ମହାନ୍ ମଣିଷଙ୍କୁ ମନେ ନ ପକାଇ ରହିପାରୁନି । ସବୁ ସମୟରେ ଡ଼ଃ କୃଷ୍ଣଚରଣ ବେହେରା ମୋତେ ଯେପରି ଉତ୍ସାହିତ କରିଛନ୍ତି ସେ କଥା ଜୀବନରେ କେବେ ଭୁଲିବି ନାହିଁ । ବିଶିଷ୍ଟ ଗାଳ୍ପିକା ତଥା ଦୂରଦର୍ଶନ କେନ୍ଦ୍ର, ଭବାନୀପାଟଣାର ଶ୍ରୀମତୀ ସୁନୀତିଦେବୀଙ୍କ ପ୍ରେରଣା ମୋ ପାଇଁ ଚିର ଅଭୁଲା ।

ଶେଷରେ ମୋର ଆଦ୍ୟ ମଙ୍ଗଳାକାଙ୍‌କ୍ଷୀ ମୋ ଘରର ସଭିଙ୍କୁ ସଶ୍ରଦ୍ଧ ସ୍ମରଣ କରୁଛି । ଓଡ଼ିଆ ସାହିତ୍ୟର ପାଠକ ମହଲରେ "ଚେନାଏ ଆକାଶ ମୁଠାଏ ପୃଥିବୀ" ଗଳ୍ପ ସଂକଳନଟି ଆଦୃତ ହେବ ବୋଲି ଆଶା ରଖୁଛି ।

ପଲ୍ଲୀଶ୍ରୀ ପଟ୍ଟନାୟକ

ପ୍ରଥମ ଜୁନ୍, ଦୁଇହଜାର ଛଅ
ଗୁଞ୍ଜନ, ଇରିଗେସନ କଲୋନୀ
ଭବାନୀପାଟଣା ।

# 'ଚେନାଏ ଆକାଶ ମୁଠାଏ ପୃଥିବୀ' ଓ ତାର ଗାଳ୍ପିକାଙ୍କ ସଂପର୍କରେ

ଓଡ଼ିଆ ସାହିତ୍ୟଜଗତ ପାଇଁ ଲେଖିକା ପଲ୍ଲୀଶ୍ରୀ ପଟ୍ଟନାୟକ ଆଉ ନବାଗତା ହୋଇନାହାଁନ୍ତି । ଏହା ମଧ୍ୟରେ ଗୋଟିଏ କ୍ଷୁଦ୍ରଗଳ୍ପ ସଂକଳନ 'ନିଃସଙ୍ଗନିଳୟ' ଓ ଏକ ପ୍ରବନ୍ଧ ସଂକଳନ 'ଶତାବ୍ଦୀର ସ୍ୱରଲିପି' ରଚନା କରି ଓଡ଼ିଆ ସାହିତ୍ୟଭଣ୍ଡାରକୁ ଉପହାର ଦେଇସାରିଛନ୍ତି । 'ଚେନାଏ ଆକାଶ ମୁଠାଏ ପୃଥିବୀ' ତାଙ୍କର ଦ୍ୱିତୀୟ ଗଳ୍ପ ସଂକଳନ । ଉଚ୍ଚଶିକ୍ଷା ଲାଭ ପରେ ଜଣେ ସୁଗୃହିଣୀ ହୋଇ ଯାବତୀୟ ପାରିବାରିକ ଜଞ୍ଜାଳକୁ ସୁଚାରୁ ରୂପେ ସଂପାଦନା କରି, କିଛି ସମୟ ବାହାର କରି ଲେଖନୀଚାଳନା ଅବ୍ୟାହତ ରଖିଛନ୍ତି । ତାଙ୍କର ଗଳ୍ପ ଓ ଆଲୋଚନାଗୁଡ଼ିକ ରାଜ୍ୟର ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶ ପାଇ ପାଠକୀୟ ଶ୍ରଦ୍ଧା ଲଭିଛି । ପଲ୍ଲୀଶ୍ରୀଙ୍କ ଲେଖା ବେଶ୍ ଶିକ୍ଷଣୀୟ ଓ ସଚେତନ ଧର୍ମୀ । ସାଂପ୍ରତିକ ସମାଜର ଜନଜୀବନର ପ୍ରତିଛବି ତାଙ୍କ ଲେଖାରେ ପ୍ରତିଫଳିତ । ଏକ ଉତ୍ତରିତ ଚିନ୍ତା ଚେତନାର ବାର୍ତ୍ତାବହନ କରେ ଲେଖାଗୁଡ଼ିକ ।

ଏହି ସଂକଳନରେ ସ୍ଥାନୀତ ପନ୍ଦର ଗୋଟି ଗଳ୍ପ ମଧ୍ୟରୁ କେତେଗୁଡ଼ିଏ ଗଳ୍ପ ବ୍ୟଙ୍ଗବିଦ୍ରୂପ ଧର୍ମୀ । କେତେଗୁଡ଼ିଏ ଗଳ୍ପରେ ନାରୀ ସ୍ୱାଧୀନତା ନାମରେ ନାରୀର ସ୍ୱେଚ୍ଛାଚାରୀତା ଓ ଉଚ୍ଛୃଙ୍ଖଳତା ପାଇଁ ନାନା ବିଭ୍ରାଟ ଘଟୁଛି ବୋଲି ସେ ଜଣେ ନାରୀ ହୋଇବି ଦୃଢ଼କଣ୍ଠରେ ସ୍ୱୀକାର କରିବାକୁ କୁଣ୍ଠା କରିନାହାଁନ୍ତି । କାହାଣୀଗୁଡ଼ିକର ଉପସ୍ଥାପନା ଶୈଳୀ କିଛିଟା ନୂତନତାଛାପ ବହନ କରିଛି । ଗଳ୍ପଗୁଡ଼ିକ ପଢ଼ିଲେ ପାଠକକୁ ଏକ ସମୟଖଣ୍ଡର ନାନା ଅସଙ୍ଗତିକୁ ଜାଣିବାକୁ ମିଳିବ । ବିଶେଷତଃ ଯେଉଁ ଗଳ୍ପ ନାମରେ ବହିର ନାମକରଣ କରାଯାଇଛି ସେହି ଗଳ୍ପରେ ଗାଳ୍ପିକା କହିଛନ୍ତି ଚେନାଚେନା ଆକାଶ ଓ ମୁଠା ମୁଠା ପୃଥିବୀକୁ ମୋର କହି ବାନ୍ଧି ରଖିବାର ଚେଷ୍ଟା ଅହରହ ଚାଲିଛି, ହେଲେ ତାକୁ ନିଜ ସହ କେହି କ'ଣ ନେଇଯାଇପାରେ ? ଖୁବ୍ ଚମତ୍କାର ହୋଇଛି ଗଳ୍ପଟି । ଈଶ୍ୱରଙ୍କ ଉପରେ ଅଭିମାନ ପ୍ରକଟ କରି ନାୟକ ତାର ଜୀବନ ଦୁର୍ଦ୍ଦଶାକୁ ବଖାଣିଛି । ଯେ କେହି ପାଠକ ପଢ଼ିଲେ ମୁଗ୍ଧ ହେବ ।

ଗଳ୍ପ ସଂକଳନର ଶେଷଗଳ୍ପ 'ତୃଷ୍ଣାର ଡାଏରୀ'ରେ ନବଦମ୍ପତି ହନିମୁନ୍‌ରେ ଯିବା ରାସ୍ତାରେ ବିବାହିତା ସ୍ତ୍ରୀଟି ତାର ସ୍ୱାମୀ ସମ୍ମୁଖରେ କେତେକ ଦୁର୍ବୃତ୍ତଙ୍କ ଦ୍ୱାରା ଧର୍ଷିତା ହେବା ପରେ ତା' ଗର୍ଭରେ ଯେଉଁ ଭ୍ରୂଣସଂଚାର ହେଲା ସେହି ଜାରଜସନ୍ତାନକୁ ନଷ୍ଟ ନ' କରିବାରୁ ସ୍ୱାମୀ ତାକୁ ଘରୁ ତଡ଼ି ଦେଲା । ନାୟିକାଟି ଯୌନପିପାସୁଙ୍କ ଦ୍ୱାରା ବାରମ୍ବାର ଧର୍ଷିତା ହୋଇବି ବଞ୍ଚିବାକୁ ସଂଗ୍ରାମ କରିବା ସହ ସେଇ ଜାରଜ ସନ୍ତାକୁ ଜନ୍ମ ଦେଇଥିଲା । ତାରଜନ୍ମିତ କନ୍ୟାଟି ବାଲ୍ୟକାଳରୁ ଅପବାଦ ଜର୍ଜରିତ ହୋଇ ନାନା ଅକଥନୀୟ ଦୁର୍ଦ୍ଦଶାର ସମ୍ମୁଖୀନ ହୋଇ ଶେଷରେ ସେ ମଧ୍ୟ ଯୌନପିପାସୁଙ୍କର ଶିକାର ହୋଇଛି । ଏକ ଲୋମହର୍ଷଣକାରୀ ବର୍ଣ୍ଣନା ଥିବା ଗଳ୍ପଟି ପଢ଼ିଲେ ପାଠକ ସମାଜ ବ୍ୟବସ୍ଥା ଉପରେ ବିଦ୍ରୋହୀ ହେବାକୁ ବାଧ୍ୟ ହେବେ ।

ସେହିଭଳି 'ଲାର୍ଭା', 'ଫୁଲଟାଇମ୍ ୱାଇଫ୍', 'କାମକଲାବାଲୀ ଝିଅ' ଆଦି ଗଳ୍ପ ଏକ ଏକ ସୁଖପାଠ୍ୟ ଗଳ୍ପ ।

ଲେଖିକା ପଲ୍ଲୀଶ୍ରୀ ପଟ୍ଟନାୟକ କେବଳ ଜଣେ ଉଚ୍ଚଶିକ୍ଷିତା ସୁଗୃହିଣୀ ନୁହଁନ୍ତି, ସୁଲେଖିକା ମଧ୍ୟ । ସମାଜ ବ୍ୟବସ୍ଥାର ନାନା ଅସଂଗତିକୁ ସେ କଟାକ୍ଷ କରି ଯେଉଁ ସବୁ ଲେଖା ଲେଖୁଛନ୍ତି ତାହା ପାଠକର ହୃଦୟକୁ ଛୁଇଁବ । ତାଙ୍କ ମତରେ ସାହିତ୍ୟ ଯଦି ସମସାମୟିକ ସମାଜର ଚିତ୍ରବ୍ୟକ୍ତ ନକରେ ତେବେ ସତ୍ୟଠାରୁ ଦୂରେଇଯାଏ । ସେ ତାଙ୍କର ସ୍ୱାମୀ ଶ୍ରୀଯୁକ୍ତ ହୃଷୀକେଶ ମହାନ୍ତିଙ୍କୁ ତାଙ୍କ ଜୀବନର ମନ୍ଦାକିନୀର ଉତ୍ସ ରୂପେ ଅଭିହିତ କରିଛନ୍ତି । ତାଙ୍କର ସୁମିଷ୍ଟ ସମ୍ଭାଷଣ, ଧୀର ସ୍ୱଭାବ, ନମ୍ର ବ୍ୟବହାର, ଆତିଥ୍ୟ ଓ ଅନ୍ୟକୁ ଆପଣେଇବାରପଣ ନିଆରା । ପଲ୍ଲୀଶ୍ରୀଙ୍କ ସୃଷ୍ଟି ହିଁ ତାଙ୍କୁ ଯଶସ୍ୱିନୀ କରିବ । ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ସେ ତାଙ୍କର ଏକ ସ୍ୱତନ୍ତ୍ରସ୍ଥାନ ନିର୍ଣ୍ଣୟ କରି ପାରିବେ ବୋଲି ମୁଁ ଆଶା ପୋଷଣ କରୁଛି । ତାଙ୍କ ଲେଖନୀର ଜୟ ହେଉ ।

ଜୁନ୍ ୧, ୨୦୦୬

ସୁନାରୁଇ, ବାଲେଶ୍ୱର

ଶ୍ରୀ କାଳନ୍ଦ ଅଞ୍ଚ (signature)

ସଂପାଦକ, ସୁବର୍ଣ୍ଣଶ୍ରୀ

# ସୂଚୀ





# ଭାଗ୍ୟ

ଆଦ୍ୟ ଆଷାଢ଼ର ପ୍ରଥମବର୍ଷାରେ ଭିଜିବାକୁ ଖୁବ୍ ଭଲ ପାଉଥିଲା ରଚିତା । ଗୀତଟିଏ ଗୁଣଗୁଣେଇ, ଛତା ଥାଇ ବି ଓଦା ହୋଇ, ଭିଜା ମାଟିର ବାସ୍ନାକୁ ଆକଣ୍ଠ ଗ୍ରାସ କରିବାକୁ ସତେଯେମିତି ବର୍ଷକୁ ଚାତକ ପରି ଚାହିଁରହିଥିଲା । ସେ କିନ୍ତୁ କବି କି ଲେଖିକାଟିଏ ହେବାକୁ ଚାହିଁ ନଥିଲା । ଇତିହାସଟିଏ ସୃଷ୍ଟି କରିବାର ଅଦମନୀୟ ଇଚ୍ଛାଟିଏ ଖୁବ୍ ପିଲାବେଳୁ ତା ଭିତରେ ବସାବାନ୍ଧି ରହିଥିଲା ସେ ଏଭେରେଷ୍ଟ ଚଢ଼ିହେଉ, ସମୁଦ୍ରରେ ପହଁରିହେଉ କିମ୍ବା ସ୍ପୋର୍ଟସ୍‌ମ୍ୟାନ୍ ହୋଇ ହେଉ । ତା'ର ଇଚ୍ଛା, ଭାବନା, ସ୍ୱପ୍ନ ସବୁ କିନ୍ତୁ ସେଇ ଶବ୍ଦମାନଙ୍କ ଭିତରେ ବନ୍ଦୀ ହୋଇ ରହିଗଲେ । କେବଳ ମାତ୍ର ସେ ସୁନ୍ଦରୀ, ଶିକ୍ଷିତା, ସର୍ବଗୁଣ ସମ୍ପନ୍ନା ହୋଇବି ଏକମାତ୍ର ଝିଅ ହୋଇଥିବାରୁ । ତ୍ରିଶଙ୍କୁ ହୋଇ ସେ ଝୁଲିବାକୁ ବାଧ୍ୟ ହେଲା । ନା ସ୍ୱର୍ଗକୁ ତିନି ଅଙ୍ଗୁଳି ଉଠିଯାଇପାରିଲା ନା ମର୍ତ୍ତ୍ୟରେ ପାଦ ଥାପିପାରିଲା । ସବୁବେଳେ ସେ ଚାହିଁଥିଲା କିଛି ଅନନ୍ୟ, ଅଲଗା କରିବାକୁ । କଲେଜ୍ ବାସ୍କେଟ୍‌ବଲ୍ ଟିମ୍‌ର କ୍ୟାପ୍‌ଟେନ୍ ହୋଇ ରାଜ୍ୟ ପାଇଁ ଖେଳିବାର ଗୌରବ ମିଳିଥିଲା ତାକୁ । ଖେଳ ନାଚ, ଗୀତ, ପାଠ ସବୁଥିରେ ପାରଙ୍ଗମ ଥିବା ଝିଅଟା ମୁହେଁ ମୁହେଁ ସବୁଙ୍କୁ ଜବାବ୍ ଦେଇ ସାବାଡ଼୍ କରିଦେଉଥିଲା ଯେ କଲେଜ୍‌ର କେହି ବି ତାକୁ କମେଣ୍ଟ କରିବାକୁ ସାହସ କରିପାରୁନଥିଲେ । ମା'ଙ୍କର ଗୋଟିଏ ଚିନ୍ତା ଏଇ ଅଣ୍ଡିରାଚଣ୍ଡୀ ଝିଅଟା ଶାଶୁଘରେ ଚଳିବ କେମିତି । ବାବାଙ୍କ ସଙ୍ଗରେ ପ୍ରତିଦିନ ପାର୍ଟି । ଝିଅକୁ ମୁହଁ ଦେଇ ନଷ୍ଟ କରିଦେଲଣି । ବି.ଏସ୍.ସି ପଢ଼ିଲାଣି ବର ଘର ଦେଖିବା କଥା, ବାପ ଝିଅ ସୁଆଙ୍ଗ ହେଉଛନ୍ତି । ତାଙ୍କ କଥାର ପ୍ରତିଧ୍ୱନି କେବଳ ସେ ହିଁ ଶୁଣନ୍ତି । 'ବାପା ବ୍ୟାଙ୍କ, ଝିଅ କଲେଜ ଚାଲିଗଲେବେଳେ ମା' ନୀରବ ଅଭିମାନରେ ସେଇ ଜଗା ଆଗରେ ହାତ ଟେକନ୍ତି- ଜଗାରେ ଝିଅ ତୋତେ ଲାଗିଲା ।

ରଚିତା କେବେ ଭାବିନଥିଲା ସେ ହାର ମାନିବ କାହା ପାଖରେ, ହେଲେ ତାକୁ ମାନିବାକୁ ହେଲା । ସେଇ କାହିଁକିର ଉତ୍ତର ଏ ଯାଏଁ ପାଇନି ସେ ।

ଗୋଟିଏ ଏକାନ୍ନବର୍ତ୍ତୀ ପରିବାର ବଡ଼ବୋହୂର ରାଜମୁକୁଟ ପିନ୍ଧିଥିବା ନାରୀଟିଏ ଜୀବନ ସାରା ଚାହେଁ କଣ, ପାଏ କେତେ ? ଶ୍ୱଶୂରଙ୍କର ଦୁଇ ଭାଇ । ଶ୍ୱଶୂର ଦ୍ୱିତୀୟ ପୁଅ, ସମସ୍ତେ ଏକାଠି ରହନ୍ତି । ସମ୍ପତ୍ତି ଭାଗବଣ୍ଟା ହୋଇନାହିଁ । ବଡ଼ ଶ୍ୱଶୂରଙ୍କ ଖୁବ୍ କମ୍ ବୟସରେ ଦେହାନ୍ତ ହୋଇଥିବାରୁ ତାଙ୍କ ପିଲାମାନଙ୍କର ଦାୟିତ୍ୱ ସବୁ ରଚିତାର ଶ୍ୱଶୂର ଶୁଭକାନ୍ତଙ୍କୁ ହିଁ ନେବାକୁ ପଡ଼ିଛି । ସ୍ତ୍ରୀ ଶାନ୍ତିଲତାଙ୍କ ସହଯୋଗରେ ନିଜର ଛଅଟି ସନ୍ତାନ ସହ ବଡ଼ଭାଇଙ୍କର ଆଠଟି ସନ୍ତାନଙ୍କୁ ମଣିଷ ପରି ମଣିଷଟିଏ କରି ଗଢ଼ି ତୋଳିବାର ଆପ୍ରାଣ ଉଦ୍ୟମ କରିଆସିଛନ୍ତି ଜୀବନବ୍ୟାପି । ଶାଶୂ ଶାନ୍ତିଲତାଙ୍କର ଅନାବିଳ ସ୍ନେହ, ମମତା ନିଜ ଯା' ପ୍ରୀତିଛନ୍ଦାଙ୍କ ପ୍ରତି କେହି କେବେ ଜାଣିପାରିବ ନାହିଁ ସେ ଦୁଇଜଣ ମା' ପେଟର ଭଉଣୀ କି ଅନ୍ୟ କିଛି । ସବୁ କିଛି ଅଧା ରଖି ସେ ଅଧରାସ୍ତାରୁ ଓହରିବାକୁ ବାଧ ହେଲେ । ବଡ଼ଭାଇଙ୍କର ମାତ୍ର ଗୋଟିଏ ଝିଅ ବାହା ଦେଇଥିଲେ । ବାକି ନିଜ ପୁଅ ସୁବୋଧର ଡ଼ାକ୍ତରୀ ପୋଷ୍ଟିଂଟି ହୋଇଥିଲା ଯାହା । ପ୍ରଚଣ୍ଡକାୟ ବ୍ୟକ୍ତିତ୍ୱର ଅଧିକାରୀ ଶୁଭକାନ୍ତ ପଟ୍ଟନାୟକ ଗାଧୁଆଘରେ ପଡ଼ି ସବୁଦିନ ପାଇଁ ଧରାଶାୟୀ ହୋଇ ରହିବାକୁ ବାଧ ହେଲେ । ପାରାଲିସିସ୍‌ର ଆକ୍ରମଣ ପ୍ରତିହତ କଲା ତାଙ୍କର ପ୍ରତିଜ୍ଞା ଓ ବହୁତ କିଛି କରିବାକୁ ଅଦମ୍ୟ ଇଚ୍ଛାକୁ । ତାଙ୍କର ଆକୁଳ ଅନୁରୋଧକୁ ଏଡ଼ି ପାରିଲେନି ପିଲାଦିନର ସାଙ୍ଗ ଦିନବନ୍ଧୁ ଦାସ । ବି.ଏସ୍.ସି ପରୀକ୍ଷାର ରେଜଲ୍ଟ ବି ବାହାରି ନଥିଲା, ରଚିତାର ହାତଗଣ୍ଠି ପଡ଼ିଲା ଡ଼ାକ୍ତର ସୁବୋଧ ପଟ୍ଟନାୟକଙ୍କ ସହ । ହାତଗଣ୍ଠି ସହ ଜୀବନଟା ବି ସେଇ ଲୋକଟି ସହ ଗଣ୍ଠି ପଡ଼ିଯାଏ ବୋଲି ଜାଣିନଥିଲା ରଚିତା । ଛଳଛଳ ନିର୍ଝରଣୀଟିଏ । ଯାହାର ଦୁଇଆଖିର ନିରୀହ ଚାହାଁଣୀ ଭିତରେ ଫୁଟିଉଠେ ଲକ୍ଷେ ବାଘୁଣୀର ଦୃଢ଼ତା । ସ୍ଥିର ପଦପାତ ତାର କେବେ ଅସ୍ଥିର ହୋଇନି, ଆନମନା ହୋଇନି, ଅବାଧ ହୋଇନି । ଭାବିସ୍ୱାମୀଙ୍କ ଠାରୁ ଆଗକୁ ପାଠପଢ଼ିବା ସହ ଯାହା ନିଜର ରୁଚି ଓ ପସନ୍ଦ ଅଛି ଜାରି ରଖିବାର ନିର୍ଭର ପ୍ରତିଶୃତି ମିଳିବା ପରେ ହିଁ ସେ ବିବାହ ପାଇଁ ସମ୍ମତି ଦେଇଥିଲା । ମାତ୍ର ସେ ଜାଣି ନଥିଲା ସବୁ ପ୍ରତିଶୃତି କେବେ ପାଳନ ହୁଏନି, ସେଥିରୁ ଅଧା ପାଣିର ଗାର ହୋଇଯାଏ ।

କିନ୍ତୁ କାହିଁକି ? ମନରେ ଅସୁମାରୀ ସ୍ୱପ୍ନ ନେଇ ଶାଶୂଘରେ ପାଦ ଥାପିଲା ରଚିତା । ବିବାହାର ସପ୍ତମଦିନ ହିଁ ଶାନ୍ତିଲତା ରଚିତାଶାଢ଼ୀର କାନିରେ ବାନ୍ଧିଦେଲେ ଘରର ଚାବିନେହ୍ଣା । ଯାହା ଭିତରେ ହୁଏତ ଲୁକ୍‌କାୟିତ ରହିଥିଲା ବଂଶର ଆଭିଜାତ୍ୟ, ପରମ୍ପରା, ସମ୍ମାନ, ମର୍ଯ୍ୟଦା ଓ ସମଗ୍ର ସତ୍ତା । ତାଙ୍କ ଆଖିର ଲୁହ ଦେଖି ସେ ବୁଝିପାରିନଥିଲା । ସେଇ ନୀରବ ଲୁହ ଓ ଅକୁହା କୋହର ଅର୍ଥ । ସ୍ୱାମୀ ସହ ନୂଆ ଦୁନିଆଁରେ ପାଦରଖିଥିବା ନବବଧୂଟିଏ କ'ଣ ଭାବିପାରେ ଚାବିନେହ୍ଣାଟିର ଅର୍ଥ ଯେ ସାରା ସଂସାରର ଅଦେଖାଭାର ଏବେ ତା କାନ୍ଧରେ ଜୁଆଳି ହେଲା ? କାନିର ଗଣ୍ଠି ଖୋଲିଗଲେ ସଂସାର ଉଜିଡ଼ିଯିବ, ବାନ୍ଧିରଖିଲେ ହସିବ ସଂସାର । ବାନ୍ଧି ରଖିବା ଯେ କଠିନ ତପସ୍ୟାର ଅନ୍ୟନାମ ! ମା'ରେ ତୋ ଶ୍ୱଶୂରଙ୍କର ଜୀବନର ଦାୟିତ୍ୱ ମୋର, ମୋ ସଂସାରର ଦାୟିତ୍ୱ ଏବେଠାରୁ ତୋର- କଇଁକଇଁ ହୋଇ କାନ୍ଦି ଉଠିଥିଲେ ଶାନ୍ତିଲତା, ବାସ୍...... ଗୋଟିଏ ନାରୀର ବେଦନା ବିଜଡ଼ିତ ସେଇ ଆକୁଳସ୍ୱର ଯେ ଅନ୍ୟ ଏକ ନାରୀର ହୃଦୟର ଆରପାରିଦେଇ ଭେଦ କରିଗଲା ଏଥିରେ ସନ୍ଦେହ ନଥିଲା କିଛି । ଜୀବନରେ ସବୁ ଚ୍ୟାଲେଞ୍ଜକୁ ହସିହସି ଗ୍ରହଣ କରିଥିବା ରଚିତା ଏହି ଚ୍ୟାଲେଞ୍ଜ ବି ଗ୍ରହଣ କଲା । ସେ ଜାଣିନଥିଲା ଭବିଷ୍ୟତର ରୂପରେଖ କ'ଣ ହେବ । ସମୟର ଅନାହତ ପଦଧ୍ୱନି ବି ଶୁଣି ପାରିନଥିଲା ସେ । ଘରର ବୋହୁଟିଏ ଯେ ଜଗନ୍ନାଥଙ୍କ ପରେ ହାତ ନଲଗାଇ ବି ଘର ଗୋଟାକର କାମ କରେ, ଗୋଟିଏ ଜାଗାରେ ଥାଇ ଘରସାରାର ଆଖି ରଖେ, କାନ ଦେଇ ଆର୍ତ୍ତଙ୍କର ଦୁଃଖ ଶୁଣେ, ଆଉ କୁଆଡ଼େ ନଯାଇ ବି ସବୁ ସମସ୍ୟା ସମାଧାନ କରେ ଏକଥା ଧିରେଧିରେ ଜାଣିବାକୁ ହେଲା ତାକୁ । ସ୍ୱାମୀଙ୍କର କ୍ଲିନିକ୍, ରୋଗୀ, ଔଷଧ, ଇଂଜେକ୍‌ସନକୁ ନେଇ ଜୀବନ । ଡେ଼ରି ରାତିରେ ଫେରି କ୍ଲାନ୍ତ ଶରୀରଟିକୁ ଆଶ୍ରା ଦେବାପାଇଁ ରଚିତାର ସୁନ୍ଦର ଶରୀରଟି ହିଁ ଆବଶ୍ୟକ କରନ୍ତି ସେ । ବାସ୍.... ଦାମ୍ପତ୍ୟ ଜୀବନର ଅନ୍ୟ କିଛି ଜାଣନ୍ତି ନାହିଁ ସେ । ବିବାହ କେବଳ ମାତ୍ର ଦୁଇଟି ଶରୀରର ମିଳନ ନୁହେଁ, ଏହା ଦୁଇଟି ଆତ୍ମାର ମିଳନ । ପରସ୍ପରକୁ ବୁଝିବା, ପରସ୍ପର ପାଇଁ କିଛି କରିବା । ଅପରପାଇଁ ଭାବିବା ପାଇଁ ହିଁ

ଅଗ୍ନିପାଖରେ ଶପଥ କରନ୍ତି ଦୁଇଟି ମଣିଷ । ସ୍ତ୍ରୀଟିଏ କ'ଣ କେବଳ ସ୍ୱାମୀ ଓ ତାର ପରିବାର ପାଇଁ କରିବାକୁ ବାଧ୍ୟ ? ତା' ପାଇଁ କେହି କିଛି ଭାବିବେ ନାହିଁ ? କିନ୍ତୁ କାହିଁକି ? ଭାରି ଇଚ୍ଛାହୁଏ କିଏ ଟିକେ ଚା କପ୍‌ଟିଏ ତା ହାତକୁ ବଢ଼ାଇ ଦିଅନ୍ତା ! ମାତ୍ର ଘରର ବୋହୂଟିଏ । ସମସ୍ତଙ୍କ ପାଇଁ କରିବା ତାର କର୍ତ୍ତବ୍ୟ ତା କଥା ବୁଝିବ କିଏ ? ଯାହାର ସ୍ୱାମୀ ସ୍ତ୍ରୀର ମନ ପଢ଼ିପାରେନି ତା' କଥା ବୁଝିବାକୁ କେହିନାହିଁ । କୋହରେ ଅବରୁଦ୍ଧ ହୋଇ ନିଃସହାୟ ରଚିତା ସ୍ୱାମୀଙ୍କର ଆଶ୍ରା ଖୋଜେ । ତାଙ୍କ ପାଖରେ ପହଞ୍ଚିବା ବେଳକୁ ଦେଖେ ତରତର ହୋଇ ସେ ଘଣ୍ଟା ଦେଖୁଛନ୍ତି । ଏତେ ବଡ଼ ପରିବାରର ଏକମାତ୍ର ରୋଜଗାରକ୍ଷମ ବ୍ୟକ୍ତିଟି ପାଇଁ ପଇସା ରୋଜଗାର ହିଁ ତ ଏକମାତ୍ର ଚିନ୍ତା । ଯାହା ତାଙ୍କର ସମଗ୍ର ଚେତନା, ସମୟ ଓ ଆୟୁଷକୁ ଆବୋରି ବସିଛି ଏକଥା ବୁଝେ ରଚିତା । ବୁଝି ନିଜକୁ ବୁଝାଇବାର ଆପ୍ରାଣ ଉଦ୍ୟମ କରେ । ଗୁଲୁଗୁଲିଆ ଛୁଆ ଦୁହିଁଙ୍କର ଜଞ୍ଜାଳ ଭିତରେ ଆହୁରି ବ୍ୟସ୍ତ ରହିବାକୁ ଚେଷ୍ଟା କରେ । ହେଲେ ବି ସମୟର ଘୂର୍ଣ୍ଣାୟମାନ କଣ୍ଟାର ଟିକ୍‌ଟିକ୍ ଆଓ୍ୱାଜ୍ ଶୁଣୁଣୁଣୁ କେଉଁବେଳେ କେମିତି ଅତୀତଟା କଡ଼ ଲେଉଟାଏ ଆଉ ନିଦ ହୁଏ ନାହିଁ ତାକୁ । ଅସ୍ତବ୍ୟସ୍ତ ଲାଗେ, ନିଶ୍ୱାସ ନେବାକୁ କଷ୍ଟ ହୁଏ । ତା'ର ଇଚ୍ଛା, ସ୍ୱପ୍ନ ସବୁ ମନେ ପଡ଼ିଯାଏ, ମନର ଏମିତି ଅବସ୍ଥାରୁ ମୁକ୍ତି ପାଇଁ ସେ ରାସ୍ତା ଖୋଜେ । ଛଳଛଳ ନିର୍ଝରିଣୀଟା ଶାନ୍ତ, ସ୍ଥିର ହୋଇଯାଏ । ସ୍ଥବିର ହୋଇଯାଏ ପୃଥିବୀ ତାର । ବିବାହ ପରେ ଚେଷ୍ଟାକରି ତା' ମନକଥା ଜଣାଇଥିଲା ସୁବୋଧ ପାଖରେ । ତାଙ୍କର ପଦେ କଥାରେ ହିଁ ନିଷ୍ପତ୍ତି ହୋଇଯାଇଥିଲା । ଦେଖ ପାଠ ପଢ଼ିବା କିଛି ଆବଶ୍ୟକ ନାହିଁ । ଘରକଥା ବୁଝ, ମୋ ଘର ଲୋକ ଖୁବ୍ ଦୁଃଖୀ ସେମାନଙ୍କର ଦୁଃଖ ବୁଝ । ପାଠ ପଢ଼ି କ'ଣ ଚାକିରୀ କରିବ ? ବାସ୍ ....... । ବିଦ୍ରୋହ କରି ହକ୍ ଜାହିର୍ କରିବାର ମାନସିକତା ଆଉ ନଥିଲା ତାର । ସେଇଦିନଠୁ ସେ ଯେ ସ୍ଥିର ହୋଇଯାଇଛି । କେବେବି ପଢ଼ାକଥା ଉଠାଇ ପାରୁନାହିଁ । ରଚିତା ଯନ୍ତ୍ର ପରି ଜୀବନ ଜୀଉଁ ଜୀଉଁ କୁନି ପୁଅଟା ଉପରେ ଆଶା କରି ବସେ । ପୁଅ ବଡ଼ ହେଲେ ଖୁବ୍ ଆଣିଦେବ, ବୁଲାଇ ନେବ, ଆଉ ମା'ର ମନ ବୁଝିବ... !! ଦୂର ଦିଗ୍‌ବଳୟର

ଅସ୍ତଗାମୀ ସୂର୍ଯ୍ୟଙ୍କ ଆଡ଼କୁ ଆଖି ପହଁରାଇ ଆଣେ ନିଜ ଘରର ଝରକା ଭିତରୁ ଛାତି ଫଟାଇ ବାହାରି ଆସେ କରୁଣ ଦୀର୍ଘଶ୍ୱାସଟିଏ । ସେ ଭାବେ ସବୁ ଝିଅଙ୍କର ଜୀବନ କ'ଣ ଏମିତି ? ବାହାଘର ନାମକ ଶୃଙ୍ଖଳଟି ଏକଦମ୍ ଅପରିହାର୍ଯ୍ୟ ? କେବଳ ମାତ୍ର ମାତୃତ୍ୱ ପାଇଁ ଏଇ ସାମାଜିକ ବନ୍ଧନ ଲୋଡ଼ା, ହଁ... ସେଇଆ ନୁହେଁ ଆଉ କ'ଣ ! ସେପଟୁ ଡ଼ାକ ଶୁଭେ ବୋହୂ ମା'.......ଚଞ୍ଚଳ ହୋଇଉଠେ ରଚିତା । ଭାବନା ମରିଯାଏ । ସ୍ୱପ୍ନଟା ଜୀବନ ନୁହେଁ, ଜୀବନ ବି ସ୍ୱପ୍ନ ନୁହେଁ । କେବଳ ମାତ୍ର ଧାଇଁ ଚାଲିବାର କାମ ହିଁ ଜୀବନ । ତଥାପି ସେ ଭଲପାଏ ସ୍ୱପ୍ନ ଦେଖି ବଞ୍ଚିବାକୁ, ସେଇଟା ହିଁ ଆନନ୍ଦ ଦିଏ ତାକୁ । ସ୍ତ୍ରୀ, ବୋହୂ, ମା' ସ୍ଥିତିରେ ସାଲିସ୍ କରିବା ତା'ର କାମ । ଏତେ ବଡ଼ ସଂସାରକୁ କାନ୍ଧେଇ ଚାଲିବା କି ସହଜ କଥା ? ଏଇ କଠିନ କାମଟି ପାଇଁ କିନ୍ତୁ କିଛି ପଦକ ମିଳେନା ତାକୁ । ଏକଦା କଲେଜ୍ ଟିମ୍ ବାସ୍କେଟବଲର କ୍ୟାପଟେନ୍ ରଚିତା ବାରମ୍ବାର କର୍ତ୍ତବ୍ୟ ବିଷୟରେ ସଚେତନ ହେବାକୁ ବାଧହୁଏ !

ସ୍ୱାମୀ ଚିରଦିନ ନିର୍ଲିପ୍ତ ନିର୍ବିକାର ଅଳ୍ପକଥାର ଗମ୍ଭୀର ମଣିଷଟିଏ । ତାଙ୍କ ଛାତିଚିରି କୌଣସି ଶବ୍ଦ କେବେ ବି ଓଠ ସ୍ପର୍ଶ କରେନା । ଅଯଥା କଥା ତାଙ୍କର ପସନ୍ଦ ନୁହେଁ । ରିଟାୟର୍ଡ଼ ପରେ ବି ତାଙ୍କର ପ୍ରାକ୍ଟିସ୍ ଚାଲିଛି । ନାମକରା ଡ଼ାକ୍ତର । ବହୁ ପୁରସ୍କାର, ପଦପଦବୀ, ଟଙ୍କା ପଇସାର ମାଲିକ । ସବୁ ଦାୟିତ୍ୱକୁ ସୂଚାରୁ ରୂପରେ ତୁଲାଇ ପାରିଛନ୍ତି । ସେ ସନ୍ତୁଷ୍ଟ ମଣିଷଟିଏ । ଦାମୀଶାଢ଼ୀ କି, ଗହଣା ଭର୍ତ୍ତି ବାକ୍ସରେ ନୁହଁ, ସ୍ତ୍ରୀଟିଏ ରଙ୍କୁଣି ହୋଇଥାଏ ସ୍ୱାମୀର ପଦଟିଏ ପ୍ରେମଭରା କଥା, ଆଶ୍ୱାସନା ପାଇଁ ସାରା ଜୀବନ ଚାହିଁରହିଛି, ଏକଥା କିନ୍ତୁ ବୁଝିପାରି ନାହାଁନ୍ତି ସେ । ସବୁ ମୂଲ୍ୟବାନ ସମ୍ପତ୍ତିଠାରୁ ସ୍ୱାମୀର ପ୍ରେମ ଯେ ପ୍ରତ୍ୟେକ ସ୍ତ୍ରୀ ପାଇଁ ଅଧିକ ମୂଲ୍ୟବାନ !

ମା' ମନ କିନ୍ତୁ ପିଲାମାନଙ୍କଠାରୁ ଆଶା କରିନାହିଁ କେବେ କିଛି । ମା'ଟିଏ କେବଳ ଦେଇଜାଣେ, ନେଇଜାଣେ ନି । ପୃଥିବୀର କେଉଁ ପିଲା କ'ଣ କେବେ ମାତୃଋଣ ସୁଝିପାରିବ ? ଶାଢ଼ୀକାନିକୁ ବେକରେ ଗୁଡ଼ାଇ ଚଉରା ପାଖରେ

ପ୍ରଣାମ ବାଢ଼ିଲା ବେଳକୁ ସବୁରି ଶୁଭ ମନାସୁ ଥାଏ ସେ । ପଟ୍ଟନାୟକ ବଂଶର ବଡ଼ବୋହୂର ମର୍ଯ୍ୟାଦାକୁ ଜଗିବା ଭିତରେ କେତେବେଳେ ଯେ ନିଜର ସ୍ୱପ୍ନ, ମନ, ଚାହିଦାକୁ ତିଳତିଳ କରି ନିଃଶେଷ କରିଛି ଏକଥାର ହିସାବ ସେ ରଖିନି । ରୁଦ୍ଧ ଅଭିମାନଗୁଡ଼ା କେବେ ତରଳି ନାହିଁ । ଜମାଟ ବାନ୍ଧିରହିଛି ପ୍ରାଗ୍‌ଐତିହାସିକ ଯୁଗର ତୁଷାରଖଣ୍ଡ ପରି । ତରଳିଗଲେ ହୁଏତ ସେଇ ହିମପ୍ରବାହରେ ଭାସି ଯାଇପାରେ ସମଗ୍ର ପୃଥିବୀ । ମନର ସାଗରକୁ ବନ୍ଧ ବାନ୍ଧିବା ବେଶ୍ ଜାଣେ ସେ । ସେ ଜାଣେ ଯେଉଁ କାହିଁକିର କିଛି ଉତ୍ତର ନଥାଏ ତାହାରି ନାମ ହିଁ ଭାଗ୍ୟ, ଯାହାକୁ ସେ ସ୍ୱୀକାର କରିଛି । ସ୍ୱାମୀର ଜ୍ୱଳନ୍ତ ବ୍ୟକ୍ତିତ୍ୱ ଆଗରେ ସ୍ତ୍ରୀଟିଏ ନିଷ୍ପ୍ରଭ ଦୀପଶିଖା ହୋଇ ଜଳୁ ତାହାହିଁ ସେମାନେ ଚାହିଁନ୍ତି ନହେଲେ ତାଙ୍କର ପୌରୁଷତ୍ୱକୁ ପ୍ରଚଣ୍ଡ ଆଘାତ ଲାଗିବ । ଦ୍ୱନ୍ଦ ଯୁଦ୍ଧର ଆରମ୍ଭରୁ ଅସ୍ତ୍ରତ୍ୟାଗ କରିଛି ସେ, ହେଲେ ଅମାନିଆ ମନ ?

ସେଦିନ ଜୁଲାଇ ବାଇଶ୍ ! ଦୀର୍ଘ ଅଠଚାଳିଶ୍ ବର୍ଷ ପରେ ହିମାଂଶୁ ଘୋଷଣା କରିଛି ମା'ର ଜନ୍ମଦିନ ପାଳନ ହେବ ବଡ଼ ହୋଟେଲରେ । ଭାରି ଲାଜ ଲାଗୁଛି ପୁଣି ଖୁସି ଓ ଗର୍ବ ବି ଲାଗୁଛି ରଚିତାକୁ । କେତେ ଟୋପା ଲୁହ ବହିଯାଉଛି ନୟନକୋଣରୁ । ଦୁଃଖର କି ଆନନ୍ଦର ? ହିମାଂଶୁ ପଟ୍ଟନାୟକ, ଆମେରିକା ଫେରନ୍ତା ବଡ଼ ଡ଼ାକ୍ତର । ତାର ଆଦୌ ଇଚ୍ଛା ନଥିଲା ମେଡ଼ିକାଲ୍ ପଢ଼ାଇବା ପାଇଁ । ମାତ୍ର ପୁଅର ଜିଦ୍, ସ୍ୱାମୀଙ୍କ ଇଚ୍ଛା ଆଗରେ ଚିରଦିନ ସେ ମୁଣ୍ଡ ନୁଆଁଇଛି । ଛାତି ଭିତରେ ଯନ୍ତ୍ରଣା ଓ ବେଦନାକୁ କେବଳ ସେ ହିଁ ଜାଣେ ।

ସନ୍ଧ୍ୟାରେ ସେମାନେ ଗଲେ ହୋଟେଲ୍ ମାରିଅନ । ଯେଉଁଠାରେ ତା' ଜୀବନର ସବୁଠାରୁ ମଧୁର ଆନନ୍ଦଟି ଅପେକ୍ଷା କରିଥିଲା । ବିଖ୍ୟାତ୍ ଚିତ୍ରକର ଯତୀନ୍‌ଦାସ ଓ ତାଙ୍କ ଅଭିନେତ୍ରୀ କନ୍ୟା ନନ୍ଦିତା ଦାସ ଉନ୍ମୋଚନ କରିଥିଲେ ତାର ସଯତ୍ନେ ସାଇତା ଗୋପନୀୟ ଦଲିଲ୍ । ତା'ର ଆତ୍ମାର ଦସ୍ତାବିଜ୍ । ଅନେକ ଅକୁହା ବ୍ୟାଥା ଓ ବେଦନାର ଶବ୍ଦରୂପ ଉପନ୍ୟାସ ଓ ଗଳ୍ପଭାବରେ ପୁଅ ଛପାଇଛି ବହି ଭାବରେ ।

ବହୁବର୍ଷତଳେ ସ୍ୱାମୀଙ୍କୁ ଅନୁରୋଧ କରିଥିଲା ବହିଟିଏ ଛପାଇବା ପାଇଁ । କିଏ ଏଇ ଓଡ଼ିଆ ଗପ, ଉପନ୍ୟାସ ଗୁଡ଼ା ପଢ଼େ ? କାହାର ସମୟ ଅଛି ଏଇ ଫାଲତୁ ଜିନିଷ ପାଇଁ ? ବାସ୍ ଏଇ ଉତ୍ତରରେ ନୀରବି ଯାଇଥିଲା ସେ । ସାକ୍ଷୀ ଥିଲା କୁନୀପୁଅ ହିମାଂଶୁ । ମା'ର ଅଲକ୍ଷ୍ୟରେ ସେ ଲକ୍ଷ୍ୟ କରିଥି[illegible]ନୀର ବ୍ୟଥା ବିଜଡ଼ିତ କୋହଭରା ମନଟିକୁ । ଚିରଦିନ ଦୁଃଖି ମଣିଷଟିର ହୃଦୟର କଥା ଅନ୍ୟମଣିଷଟିକୁ ଛୁଏଁ ।

ସବୁରି କରତାଳିରେ ସ୍ତମ୍ଭୀଭୂତ ରଚିତା ଭୁଲିଯାଉଛି ସମୟର ଉଜାଣିନଈରେ ବହିଯାଇଥିବା ଦୁଃଖ ନଦୀର ଧାର । ପୁଣି ସେ ଛଳଛଳ ନିର୍ଝରଣୀଟିଏ ପାଲଟି ଯାଉଛି । ସତେକି ଜୀବନପାତ୍ର ତା'ର ଆଜି ଭରିଯାଇଛି । କିଛି ଅବଶୋଷ, କିଛି ତୃଷ୍ଣା, କିଛି ହେଲେ ଆଉ ବାକିନାହିଁ । ସେ ଭାବୁଛି ସବୁ ମଣିଷ ସମାନ ନୁହଁନ୍ତି । ସବୁ ଡ଼ାକ୍ତର ବି ସମାନ ନୁହନ୍ତି । ଜଣେ ହାର୍ଟ ଅପରେସନ୍ କରି ଜାଣିଲେ, ଆଉ ଜଣେ ହୃଦୟତଳର ରକ୍ତର ରଙ୍ଗରେ ଥିବା ଯନ୍ତ୍ରଣା ବି ପଢ଼ିପାରିଲା । ସେ ଦେଖିଲା ପଥର ଆଖିରେ ଲୁହ । ତା'ର ହାତଦୁଇଟି ଧରି ଠକ୍‌ଠକ୍ ଥରୁଥିଲେ ଡ଼ାକ୍ତର ସୁବୋଧ ପଟ୍ଟନାୟକ । ଆଜିଠାରୁ ମୋ ଦାୟିତ୍ୱ ପୁଅର, ମୁଁ କେବଳ ତୁମ କଥା ବୁଝିବି, ମୋତେ କ୍ଷମା କରିଦିଅ !! ପ୍ରାପ୍ତିର ଅନନ୍ତଦ୍ୟୁତି ଆଉ ଜୀବନ ବ୍ୟାପି ତ୍ୟାଗ ଓ ସାଧନାର ଫଳ ଫୁଟି ଉଠୁଥିଲା ରଚିତା ମୁହଁରେ, ଝଲମଲ କରୁଥିଲା ଚର୍ତୁଦିଗ ।

ସବୁ କାହିଁକିର ଶେଷ ଉତ୍ତର ହିଁ ଭାଗ୍ୟ । ଏକଥା ଆଜି ଜାଣିଲା ରଚିତା ।



# ସତ୍ୟପାଠ

ଆୟୁଷର ଏତିକି ରାସ୍ତା ଦଉଡ଼ି ଆସିବା ପରେ ଆଜି କାହିଁକି କେଜାଣି ଭାରି କ୍ଲାନ୍ତ ମନେହେଉଛି । ମିଶାଣ, ଫେଡ଼ାଣର ଗଣିତ କଷାକଷିରେ କେତେକେତେ ମଣିଷ ଯେ ଜୀବନରେ ସାମିଲ୍ ହୋଇଗଲେ ପୁଣି କେତେ ଫେଡ଼ି ହୋଇ ଚାଲିଗଲେ କାହିଁ କୁଆଡେ, ତାରି ହସିାବ କରିବାକୁ ବୋଧ ହୁଏ ସରକାର ତାଙ୍କୁ ଚାକିରୀରୁ ରିହାତି ଦେଲେ । ଏବେ ଜୀବନ ଶେଷରେ ଲମ୍ବା ହାଇଫେନ୍‌ଟିଏ ପରି ଅବଶିଷ୍ଟ ସମୟତକ ପାଇଁ ପେନ୍‌ସନର ନିର୍ଭର ପ୍ରତିଶୃତି, ଗ୍ରାଚ୍ୟୁଇଟି, ପ୍ରୋଭିଡ଼େଣ୍ଟ ଫଣ୍ଡର ଟଙ୍କା ଆହୁରି ଅନେକ କିଛି । ବିଶ୍ୱସ୍ତ ଉଚ୍ଚପଦସ୍ଥ କର୍ମଚାରୀଙ୍କର ଯୌବନ ଓ ପ୍ରୌଢ଼ତ୍ୱର ମୂଲ୍ୟବାନ୍ ସମୟ ତକର ବିନିମୟରେ କୃତଜ୍ଞ ସରକାର ଦେଇଛନ୍ତି ବୃଦ୍ଧ ସମୟରେ ଆରାମ୍‌ରେ ବଞ୍ଚିବାର ପାଥେୟ । ଦୀର୍ଘନିଶ୍ୱାସ ବ୍ୟତୀତ ଓଜନିଆ ଛାତି ଗହୀରରୁ ଆଉ କିଛି ବି ବାହାରୁନାହିଁ । ଅବସର ପାଇବା ଦିନ ଅଫିସରୁ ଲୁହପୂର୍ଣ୍ଣ ବିଦାୟ ସହ ଆଞ୍ଜୁଳାଏ କୋହ ଆଉ ଥୋଡ଼ାଏ ଆନନ୍ଦର ମିଶ୍ରିତଭାବ ନେଇ ସେ ଘରକୁ ଆସିଲେ । ମଥାଏ ପାଚିଲା କେଶ ମଝିରେ ମୁଠାଏ ଦାଉଦାଉ ସିନ୍ଦୂର ନେଇ ପ୍ରତୀକ୍ଷାରତ ପ୍ରୌଢ଼ ସ୍ତ୍ରୀ ଗେଟ୍ ଖୋଲିଲେ । ତାଙ୍କ ମୁହଁରେ ଅବସନ୍ନତା ନଥାଏ, ବରଂ ବିମଳ ଆନନ୍ଦରେ ଚକ୍‌ଚକ୍ ହେଉଥାନ୍ତି ସେ । ସଂସାର ଜଞ୍ଜାଳର ନାହି ନେଞ୍ଜରା ବୁଝିସାରି ସେ ବି ଖୋଜିଛନ୍ତି ଅବସର । ଏଥର ଯିବ କୁଆଡ଼େ । ଯେଉଁ ଅଫିସ୍‌ର କାମ ଦ୍ୱାହି ଦେଇ ସାରା ଜୀବନ ଠକି ଆସିଛ ସେଇ ସଉତୁଣୀଟି ଆଜି ଦୂରେଇ ଯାଇଛି । ଏଥର ସବୁ ସମୟ ମୋର ଓ ନାତି ନାତୁଣୀଙ୍କର । ଦଉଡ଼ି ଆସନ୍ତି ପୁଅ ବୋହୂ, ଝିଅ ଜ୍ୱାଇଁ, ନାତି ନାତୁଣୀ । ମୂହୂର୍ତ୍ତକରେ ବଦଳିଯାଏ ଲୁହ ଓ କୋହର ଭାବନା ଆନନ୍ଦ ଉଲ୍ଲାସରେ । ଅଥଚ..... ତାଙ୍କ ପାଇଁ ଏ ସବୁ ଦୃଶ୍ୟରୁ କିଛି ବି ଅଭିନୀତ ହେଲାନାହିଁ । ଖାଁ, ଖାଁ ଲାଗୁଥିବ । ଦାଣ୍ଡଟି ନିଜ ଜୀବନ ପରି ଶୂନ୍ୟ । କଲିଂବେଲ ଟିପିବା ପରେ ନିଦୁଆ ବୁଢ଼ା ଚାକର ନୁରିଆ କବାଟ ଖୋଲିଲା । ନିର୍ଜନ ଘର, ନିର୍ଜୀବ ଜିନିଷ ମାନଙ୍କର ସମାହାର କେବଳ । ପରିବର୍ତ୍ତନ କେବଳ ଘଟିଛି ତାଙ୍କରି ନିଜ ସମୟ ଓ ଜୀବନରେ ।

କେଉଁକାଳର ପୈତୃକ ଘର । ତା' ସହ ବୁଢ଼ା ଚାକର । ବିରାଟ କାନ୍ଥ ଗୁଡ଼ାକରୁ ଚୂନ ଖସିଗଲାଣି, ପାଚେରୀ ସାରା ଶିଉଳି, ନିର୍ମୂଳୀ ଲଟା । ରିଟାୟାଡ଼ ସମୟ ବେଳକୁ ସରକାରଙ୍କୁ ଅନୁରୋଧ କରି ଏଠାକୁ ଚାଲିଆସିଥିଲେ । ବାପା, ମା'ଙ୍କ ତୈଳଚିତ୍ର ନିଟକରେ ଆବକ୍ଷ ତୈଳଚିତ୍ର ଅବଗୁଣ୍ଠନବତୀ ନାରୀଟିଏର । ସେ ଆସି ସମ୍ମୁଖରେ ଠିଆ ହେଲେ । ଆଖି କୋଣରୁ ଝରି ପଡ଼ିଲା ଠପ୍‌ଠପ୍ ଲୁହରୁ କେଇବୁନ୍ଦା । ପୋଛିବାକୁ ବା ଦେଖିବାକୁ କେହିନାହିଁ । ମେହେଗାନୀ କାଠର ସୁଦୃଶ୍ୟ ଖାନ୍‌ଦାନୀ ପଲଙ୍କ ଉପରେ ଲଥିକିନା ବସିପଡ଼ିଲେ ସେ । ଛାତି ଭିତରେ ଏକ ମନ୍ଥନ । ସମଗ୍ର ଚେତନାଟା ଯେମିତି ଘାଣ୍ଟିଚକଟି ହୋଇଯାଉଛି । ଚା କପ୍ ଧରି ଠିଆ ହୋଇଛି ନୂରିଆ । ଆଜୀବନ ବିଶମ୍ବଦ ବିଶ୍ୱସ୍ତ ଭୃତ୍ୟ । ଆଖିରେ ତା'ର ସହାନୁଭୂତି, ସମବେଦନା ଆଉ ସ୍ନେହର ପ୍ରଜ୍ଜ୍ୱଳିତ ଦୀପଶିଖା । କଥାବାର୍ତ୍ତା କରିପାରେନାଁ, ଜନ୍ମରୁ ମୂକ ସିଏ । ତଥାପି ବୁଝିପାରେ ତାଙ୍କର ସବୁକିଛି ଆବଶ୍ୟକତା । ସମୟ ମୁତାବକ ଯୋଗାଇ ପାରେ ସବୁ ଜିନିଷ । ସେଭିଂସେଟ୍ ସହ ଉଷୁମ୍ ପାଣି । ଅଣ୍ଡା ଆମ୍‌ଲେଟ୍ ସହ ସ୍ୟାଣ୍ଡଉଇଚ୍ ଓ କଡ଼ା ସୁବାସିତ କଫି । ଆଜି ବି ସେ ପଢ଼ିପାରୁଛି ବାବୁଙ୍କ ମନତଳର ଅକୁହା ବେଦନା । ମନଫଟାଇ ବଡ଼ପାଟିରେ କାନ୍ଦିବାକୁ ଇଚ୍ଛା ହେଉଛି ତାର । ହୃଦୟ ଭିତରେ କବର ଦିଆ ବେଦନା କ୍ଲିଷ୍ଟ ସମୟର ଅସରନ୍ତି କାହାଣୀକୁ ଚିତ୍କାର କରି କହିବାକୁ ଇଚ୍ଛା ହେଉଛି । ହେଲେ ଶୁଣିବ କିଏ... ? ନୂରିଆରେ........ ତୋର ମୂକପଣ ଆଉ ମୋ ଭିତରେ ଅଧିକ ଅସହାୟ କିଏ ? ତୁ କିଛି ଶୁଣିପାରୁନୁ, କହିପାରୁନୁ ଅଥଚ ଅନୁଭବୁଛୁ ସବୁକିଛି । ଆଉ ମୁଁ ସବୁ ଶୁଣିପାରୁଛି, କହିପାରୁଛି କିନ୍ତୁ ସମଭାଗୀ ହେବାକୁ ଯେ କେହିନାହିଁ । ଆଜି ସେ ଉନ୍ମାଦଗ୍ରସ୍ତ ସମୟରୁ ମୁକ୍ତି ଚାହୁଁଛନ୍ତି । ଟଙ୍କାର ବିନିମୟରେ ସବୁକିଛି କିଣିପାରିବାର ସମାର୍ଥ୍ୟକୁ ନେଇ ଗର୍ବ କରୁଥିବା ଦାମ୍ଭିକ ବ୍ୟକ୍ତିଟି ଆଜି କାତର ରାବରେ ନିଜର ହାରିବାକୁ ସ୍ୱୀକାର କରୁଛି । ମଣିଷକୁ ମଣିଷଟିଏର ହିଁ ସବୁଠୁ ଅଧିକ ଲୋଡ଼ା । ନିର୍ଜୀବ ଟଙ୍କା କେବେ ବି ସଜୀବ ପ୍ରେମର ବିଧୂର ଭାବନା ଦେଇ ପାରେନା । ଯୋଡ଼ିପାରେନା ଭାଙ୍ଗିଯାଇଥିବ ଟୁକୁରା କାଚଖଣ୍ଡର ଘରଟିକୁ । ଆଜି ସମୟର ମୁହାଁଣରେ ପହଞ୍ଚି ସେ ମାପି ପାରୁନାହାଁନ୍ତି କାହାର ଜଳ

ଅଧିକ । କାହାପାଣି ଅଧିକ ମିଠା କିମ୍ବା କାହାର ଅଧିକ ଲୁଣି । ନଦୀକୁ ନେଇ ସମୁଦ୍ର ନାଁ ସମୁଦ୍ର ପାଇଁ ନଦୀ । ଦିନେ ଠିକ୍ ଏଇମୋଡ଼ରେ ସେ ଆସି ପହଞ୍ଚିବେ ବୋଲି କହିଥିଲେ ବିଶାଖା । ଏଇକଥା ବି ଶୁଣିଥିଲେ ଅନୁପମା ଠାରୁ । ଦୁଇ ସମାନ୍ତରାଳ ରେଖା ତାଙ୍କ ଆୟୁଷର ସୀମାରେଖା ଭିତରେ ।

କେତେ କେତେ ରାତି ତାଙ୍କର କଟିଥିଲା ନୂଆ ନୂଆ ଶଯ୍ୟା ସଙ୍ଗୀନି ମାନଙ୍କ ସହ । ସରକାରଙ୍କର ଅବକାରୀ ବିଭାଗର କମିଶନର ପୋଷ୍ଟ ତ ଇନ୍ଦ୍ରଦେବାତାଙ୍କ ଠାରୁ କିଛି କମ୍ ଓଜନର ନଥିଲା ! ଦେହରେ ଫୁଟୁଥିଲା ଗରମ ଜମିଦାରୀ ରକ୍ତ । ପିତାଙ୍କର ତୃତୀୟ ପତ୍ନୀଙ୍କର ପୁତ୍ର ହୋଇ ମଧ୍ୟ ବେଶ୍ ଆଦର ଯତ୍ନ ପାଇଥିଲେ ସଭିଙ୍କ ଠାରୁ । ତାଙ୍କର ପ୍ରତ୍ୟେକ ଆଦବକାଇଦାରେ ଫୁଟିଉଠୁଥିଲା ରାଜକୀୟ ଔଦ୍ଧତ୍ୟ । କାହାରି ପାଖରେ ମଥାନତ କରିବା ଶିଖିନଥିଲେ । ପାଠପଢ଼ା ଶ୍ରେଣୀ ଠାରୁ ସରକାରୀ ଚାକିରୀର ପରୀକ୍ଷା ପର୍ଯ୍ୟନ୍ତ ସବୁଥିରେ ପ୍ରଥମ ହୋଇଥିଲେ ସେ । ହେଲେ ଜୀବନରେ ପ୍ରଥମ ଥର ପାଇଁ ପ୍ରଚଣ୍ଡ ଭାବରେ ହାରିଯିବାର କ୍ଲେଦାକ୍ତ ଅନୁଭୂତିଟିକୁ ସେ ପାଇଥିଲେ ବିଶାଖା ଠାରୁ । ପାଖ ଗାଁର ଜମିଦାରଙ୍କ ଝିଅ । କର୍ପୂର ସିନା ଉଡ଼ିଯାଇଥିଲା ହେଲେ ପଡ଼ିରହିଥିଲା କନା । ତା'ର ପିତାଙ୍କର ଧନ, ସଂପତ୍ତି, ପ୍ରତିପତ୍ତି ସବୁକିଛି ହ୍ରାସ ହୋଇଥିଲେ ବି ବଂଶର ପ୍ରବାହିତ ରକ୍ତରେ କିନ୍ତୁ ହିମତା ଆସିନଥିଲା । ବିବାହ ବାସର ରାତ୍ରିରେ ସ୍ପଷ୍ଟ ଜଣାପଡ଼ିଯାଇଥିଲା ତା'ର ଅପୂର୍ବ ରୂପଲାବଣ୍ୟ ଲଜ୍ଜାବିନତା ଚାହାଁଣୀ ଭିତରେ ଫୁଟି ଉଠୁଥିଲା ଶତସିଂହୀର ପରାକ୍ରମ । ତାହା ହିଁ ଯଥେଷ୍ଟ ଥିଲା ତାଙ୍କ ପତ୍ନୀପଦଟି ପାଇଁ ନିର୍ବାଚିତ ହେବାପାଇଁ । ଅଥଚ ସବୁ ହିସାବକୁ ଭୁଲ ପ୍ରମାଣିତ କରି ସେଇ ରାତ୍ରୀରେ ସେ ଦୃପ୍ତ କଣ୍ଠରେ କହିଥିଲା "ପୁରୁଷର ପୌରୁଷତ୍ୱ ନାରୀର ମର୍ଯ୍ୟଦା ରକ୍ଷା ପାଇଁ । ତାକୁ ଲୁଣ୍ଠନ କରିବା ପାଇଁ ନୁହେଁ । ମୁଁ ଆପଣଙ୍କର ଚରିତ୍ର ପଞ୍ଜିକା ଜାଣେ । ମୋ ପିତାଙ୍କର ଅସହାୟତା ପାଇଁ କନ୍ୟାଦାୟରୁ ମୁକ୍ତି ଦେବାକୁ ମୁଁ ବିବାହ କରିଛି ଯେଉଁଦିନ ଏକ ସଂଶୋଧିତ ଚରିତ୍ରରେ ଆପଣ ମୋ ସାମ୍ନାକୁ ଆସିବେ ସେହିଦିନ ହିଁ ମୋତେ ପତ୍ନୀଭାବରେ ପାଇବେ । ସେହିଦିନହିଁ ଏ ଦେହର ହକ୍‌ଦାର ହେବେ । ତା'ପୂର୍ବରୁ ନୁହେଁ । ସ୍ତବ୍ଧ ହୋଇ ଯାଇଥିଲେ ସେ । ଏକ ଗ୍ରାମ୍ୟଲଳନାର ଔଦ୍ଧତ୍ୟରେ ସେ

ସ୍ତମ୍ଭୀଭୂତ ହୋଇ ଯାଇଥିଲେ । ଆହତ ସିଂହ ପରି ଯନ୍ତ୍ରଣାରେ ଅସ୍ଥିର ହୋଇ ଚିତ୍କାର କରିଥିଲେ- ତୁମର ଏତେ ସାହସ । ମୋ ଚରିତ୍ର ଉପରେ ତମେ ପ୍ରଶ୍ନବାଚୀ ଲଗାଇବ ? ପୁରୁଷପିଲା ସୁନାମାଠିଆ- ତାଙ୍କର ପୁଣି ଚରିତ୍ର କ'ଣ ? ଟଙ୍କା ବିନିମୟରେ ସବୁ ସୁଖ ମୋ ହାତ ମୁଠାରେ ରହିପାରିବ । ମୋ ଜେଜେମା, ଖୁଡ଼ୀ, ମା କେହି ପ୍ରତିବାଦ କରିନଥିଲେ । ପୁଅ ଝିଅଙ୍କ ମା' ହୋଇ ସୁଖର ସଂସାର କରିଥିଲେ । ନାଁ.....ଚିତ୍କାର କରିଥିଲେ ବିଶାଖା । ଏସବୁ ନିର୍ଯ୍ୟାତନା ମୁଁ କିନ୍ତୁ ସହିବି ନାହିଁ । ମୋ ସ୍ୱାମୀର ଦେହରୁ ଅନ୍ୟ ନାରୀରୁ ବାସ୍ନା ସହି ତା' ହାତକୁ ମଦର ପିଆଲା ବଢ଼ାଇ ମୁଁ ନିଜକୁ ସମର୍ପି ପାରିବି ନାହିଁ କାରଣ ମୁଁ ବେଶ୍ୟା ନୁହେଁ ପତ୍ନୀ । ଓଃ.... ଅସହ୍ୟ, କି ଆସ୍ପର୍ଦ୍ଧା । ସେ ବାହାରି ଯାଇଥିଲେ ଗଙ୍ଗୁବାଈର କୋଠିକୁ ।

ଦିନପରେ ଦିନ ବିତି ଯାଉଥିଲା । ସୁନ୍ଦରୀ ବିଶାଖା ବହୁତ ବୁଝାଇଥିଲେ ମଦ ନ ପିଇବାକୁ । ଅନ୍ୟ ନାରୀମାନଙ୍କ ପାଖକୁ ଯିବାକୁ ବାରଣ କରୁଥିଲେ । ନିଜ କୁମାରୀତ୍ୱକୁ ଅକ୍ଷୁର୍ଣ୍ଣ ରଖି ଅଚଳ, ମହାମେରୁ ପରି ଜିଦ୍‌ରେ ଅଟଳ ରହିଥିଲେ । ସେ ଦିନ ଥିଲା ପୂର୍ଣ୍ଣମୀର ରାତି । ଝରକା ଫାଙ୍କ ଦେଇ ସୁନ୍ଦର ଜ୍ୟୋତ୍ସ୍ନାର ନିଜର ସୌନ୍ଦର୍ଯ୍ୟକୁ ବିଶାଖା ତଉଲାଉଥିଲେ । ମାଣିଆବନ୍ଧୀପାଟକୁ ଗହଣାଗାଣ୍ଠି, ଚୂଡ଼ି, ସିନ୍ଦୂରରେ ଦେବୀଟିଏ ପରି ଲାଗୁଥିଲେ । ସ୍ୱାମୀଙ୍କ ପଥ ଚାହିଁ ଚାହିଁ ଆଖିପତା ଲାଗି ଆସିଥିଲା । ତାଙ୍କ ଅନ୍ତର କଥା କେବେ କାହା ଆଗରେ ଖୋଲିନାହାଁନ୍ତି ସେ । ହେଲେ ମ୍ଳାନ ବଦନ ସ୍ପଷ୍ଟ ସୂଚନା ଦିଏ ଯେମିତି ଛାତି ଭିତରେ କେଉଁଠି ମୃଦୁ ଭୂକମ୍ପ ସୃଷ୍ଟି ହୋଇଛି । ଦିନସାରା ପରେ ବୋହୂର ଧରାବନ୍ଧା କର୍ତ୍ତବ୍ୟ, ରାତିରେ ନିଜକୁ ରକ୍ଷା କରିବାର ପ୍ରୟାସରେ ଅଣନିଶ୍ୱାସୀ ଜୀବନଟେ କି ଜାଣିଥିଲେ ସେଇ ପୂର୍ଣ୍ଣମୀ ଚାନ୍ଦ ହିଁ ତାଙ୍କ ଅଭିଶପ୍ତ ରାତ୍ରିର ସାକ୍ଷୀ ହୋଇ ରହିଯିବ !

ସେ ଆସିଲେ ସୁରାର ଭରପୂର ନିଶା ଆଉ ସାକୀର ଆଶା ନେଇ । ନିଆଁ ଘିଅ ଢାଳିବା ପରି ବିଶାଖାର ପ୍ରଜ୍ୱଳିତ ରୂପଲାବଣ୍ୟର ଶିଖା ହୁତ୍‌ହୁତ କରି ଜଳିଲା । କାମାଗ୍ନି ତାଙ୍କର ମନ ଓ ଶରୀରରେ । ବିବାହର କେତେମାସ କଟିଗଲାଣି ।

କେତେ କେତେ ଥର ସେ ବିଲେଇ, କୁକୁର ପରି ନେହୁରା ହୋଇଛନ୍ତି । କ୍ରୀତଦାସଟିଏ ହେବାର ଅଭିନୟ କରିଛନ୍ତି । ଅଥଚ କେତେ ଟାଣ, କେତେ ଗର୍ବ, ଛାର ସ୍ତ୍ରୀ ଲୋକଟା ସ୍ୱାମୀକୁ ପୁଣି ଭାଷଣ ଦେଉଛି । ପୂଜା ପାର୍ବଣ କରୁଛି, ମାନସିକ, ହୋମ, ବ୍ରତ କରୁଛି । ହୁଁଃ ! ସ୍ୱାମୀକୁ ସନ୍ତୁଷ୍ଟ ରଖିବା ସ୍ତ୍ରୀର କର୍ତ୍ତବ୍ୟ । ସ୍ୱାମୀତ୍ୱ ଜାହିର କରିବା ପାଇଁ ମନକାମନା ହୋମର ନିଆଁ କ'ଣ ଯଥେଷ୍ଟ ନୁହେଁଯେ ସେ ପୁଣି ତା'ର ଅନୁମତି ନେବେ ? କାହିଁକି ନେବେ ? ବିବାହ ସମୟରୁ ହିଁ ସ୍ତ୍ରୀଟିଏ ସ୍ୱାମୀକୁ ଶରୀର ଦାନ କରିବାକୁ ବାଧ୍ୟ ବୋଲି କ'ଣ ପ୍ରତିଶ୍ରୁତିବଦ୍ଧ ନୁହେଁ ? ସେଦିନ ସେ ପ୍ରତିଜ୍ଞା କରି ହିଁ ଆସିଥିଲେ, ସମସ୍ତ ଅନୁନୟବିନୟ ସତ୍ତ୍ୱେ ସେ ବିଶାଖାଙ୍କର ନାରୀତ୍ୱକୁ ଭୂଲୁଣ୍ଠିତ କରି ନିଜ ପ୍ରବୃତ୍ତିର ଜ୍ୱାଳାକୁ ପ୍ରଶମିତ କରିଥିଲେ । ଗୋଟିଏ ନାରୀର ଅସହାୟତାକୁ ଲୁଟି ନେଇ ପରିତୃପ୍ତିର ନିଦରେ ଶୋଇଯାଇଥିଲେ ।

ହୋହଲ୍ଲାରେ ନିଦ ଭାଙ୍ଗିଲା । ଚତୁର୍ଦିଗରେ ରଟି ଯାଇଥିବା କଥାକୁ ସେ ସମସ୍ତଙ୍କ ଠାରୁ ପଛରେ ଶୁଣିଲେ । ହାତର ଶିରାକାଟି ଶାଖା ଚାଲିଯାଇଛି ଆରପାରିକୁ । ଅଭିମାନୀନି ନାରୀଟିର ଅଭିମାନକୁ ଠିକ୍ କରି ବୁଝି ନପାରି କେତେ ଅନ୍ୟାୟ କଲେ ସେ । ସେଇ ଗ୍ଲାନି ସେଇ ଅପରାଧବୋଧ, ହତାଶା ଭରିଗଲା ତାଙ୍କର ସମଗ୍ର ଜୀବନରେ । ତମାମ୍ ଆୟୁଷ ଝୁରିଲା ସେଇ ନାରୀଟିକୁ । ଯାହାକୁ ଭଲପାଇଛନ୍ତି ବୋଲି ସେ ନିଜେ ବି ଜାଣିପାରିନଥିଲେ ।

ଅନୁପମା ! ସୁନ୍ଦରୀ, ସ୍ମାର୍ଟ, ଶିକ୍ଷିତା ସେକ୍ରେଟାରୀ ତାଙ୍କର । ସେ ବୁଝିଥିଲା ବାହାରକୁ ଇସ୍ପାତ ପରି ଟାଣ ଦେଖାଯାଉଥିବା ମଣିଷଟିର ହୃଦୟଟା ଦୁଃଖ ଓ କ୍ଷୋଭରେ ଖିନ୍‌ଭିନ୍ ହୋଇଯାଇଛି । ଚାହିଁଥିଲା ତାଙ୍କର ଜୀବନସାଥୀ ହୋଇ ଦୁଃଖ ବାଣ୍ଟିବାକୁ । ଅଥଚ ସେ ଆଗେଇ ଯାଇ ତା'ର ହାତଧରିବାକୁ ସାହସ କରିପାରିନଥିଲା । ବିଶାଖାର ଉପସ୍ଥିତିକୁ ସେ ପ୍ରତିକ୍ଷଣରେ ଅନୁଭବ କରିଥିଲା । ମଦକୁ ସ୍ପର୍ଶକଲେ ସେ ବିଶାଖାର ରକ୍ତାକ୍ତ ଦେହ ଦେଖୁଥିଲେ ମଦପିଆଲାରେ । ଅନ୍ୟନାରୀର ଶେଯରେ ସେ ଶୁଣୁଥିଲେ ବିଶାଖାର ଦୀର୍ଘନିଶ୍ୱାସ ଆଉ ଚିତ୍କାର । ସେ ଫେରି ଆସୁଥିଲେ । ରୂପାନ୍ତରିତ ହୋଇଥିଲେ ଭିନ୍ନ ଏକ ମଣିଷରେ ।

ସେ ଭାବୁଥିଲେ ଆହାଃ... ବିଶାଖା ତ ଠିକ୍ ଏମିତି ଚାହିଁଥିଲା ମୋତେ । ଆଖିରୁ ଲୁହଗଡ଼ାଇ ଶୂନ୍ୟ ଘରଟିରେ ଚିତ୍କାର କରୁଥିଲେ- ଫେରିଆସ ବିଶାଖା କେଉଁଠି ଅଛ ତମେ ଫେରିଆସ । ଅଥଚ ପ୍ରତିଧ୍ୱନି କେବଳ ନିର୍ଜୀବ କାନ୍ଥରେ ଧକ୍କାଖାଇ ଆସେ ସିନା, ଫେରେନା ବିଶାଖା । ମଲାଲୋକ କ'ଣ କେବେ ଫେରିପାରେ ? ବୁଝାଇବାକୁ ଚେଷ୍ଟା କରେ ମୂକ ନୂରିଆ । ତା'ର ନୀରବ ଭାଷା ବୁଝନ୍ତି ବାବୁ ! ଏହି ନୂରିଆ ହିଁ ସବୁ ଘଟଣା, ଦୁର୍ଘଟଣା, ସୁଖ, ଦୁଃଖ, ମୋହଭଙ୍ଗ ଓ ଯନ୍ତ୍ରଣାର ସାକ୍ଷୀ । ସେ ଗୀତା, ଭଗବତ ପଢ଼ନ୍ତି । ମନ୍ଦିର ଯାଆନ୍ତି ଅନାଥଶ୍ରମକୁ ଦାନ କରନ୍ତି । କେତେ ପିଲା ତାଙ୍କରି ଦାନରେ ମଣିଷ ହୋଇ ଦୁନିଆଁର ରାଜରାସ୍ତାରେ ମଥା ଟେକି ଚାଲୁଛନ୍ତି । ଅଥଚ ତାଙ୍କର ନଇଁବା ମଥା କେବେ ଆଉ ଉପରକୁ ହୋଇନି । କେବେ କେଉଁଠି ସେ ଶାନ୍ତି ପାଇ ପାରିନାହାଁନ୍ତି ।

ଆଜି ଅବସର ନେଇ ଫେରିଛନ୍ତି ସେ । ଗୋଧୂଳୀ ଲଗ୍ନରେ ଜୀବନର ସାୟାହ୍ନରେ ପହଞ୍ଚି ସେ ବିଶାଖାଙ୍କ ନିକଟରେ ସବୁକିଛିକୁ ସତ୍ୟପାଠ କରି ପ୍ରକାଶ କରୁଛନ୍ତି । ଦେଖ... ବିଶାଖା ଯେପରି ଚାହିଁଥିଲ ସେପରି ହୋଇଛି ମୁଁ । ମୋତେ ତମେ ସ୍ୱୀକାର କରିନିଅ । ମୋ ପାପରୁ କାଣିଚାଏ ଯାଇ ଯଦି ପୂଣ୍ୟରୁ କିଛି ମିଳିଥାଏ ତେବେ ମାତ୍ର ଗୋଟିଏ ଜନ୍ମପାଇଁ ତୁମକୁ ମୁଁ ପତ୍ନୀଭାବରେ ଚାହେଁ । ତୁମର ସ୍ୱାମୀ ହୋଇ ଦିନ ବିତାଇବାକୁ ଚାହେଁ । ଛାତିରେ ଓଜନ ଟିକେ ହ୍ରାସ ହେବା ପରି ଲାଗିଲା ତାଙ୍କୁ । ଲୁହପୂର୍ଣ୍ଣ ଆଖି ଉଠାଇ ସେ ଚାହିଁଲେ । ତାଙ୍କୁ- ମନେହେଲା ଯେମିତି ଛାୟାମୂର୍ତ୍ତିଟିଏ ଧିରେଧିରେ ଅପସରି ଯାଉଛି ।

# ପଥପ୍ରାନ୍ତେ

ଅମାବାସ୍ୟା ରାତି ! ସାଥିହରା ଆକାଶ !

ଝରକା ବାହାରର ରଙ୍ଗମୟ ପୃଥିବୀ ଆଜି କିନ୍ତୁ ଯାତ୍ରା ପେଣ୍ଡାଲ୍‌ର କଳାପରଦା ପରି ଦେଖାଯାଉଛି । ଚଳନ୍ତା ଟ୍ରେନ୍‌ରୁ ବାହାରର ଦଉଡୁଥିବା ଦୃଶ୍ୟରାଜି ଦେଖିବାକୁ ଭାରି ଭଲପାଏ ଚିନ୍ମୟ । ମାତ୍ର ଏବେ ସ୍ଥବିର ହୋଇଯାଇଛି ମନ ! ଭଲ ପାଇବା ନ ପାଇବା ସହ ସଂପର୍କ ନାହିଁ । ଯାହା ଜୀବନରେ ଘଟିଚାଲିଛି ମାନିବାକୁ ବାଧ୍ୟ । ବେଳେ ବେଳେ ମଣିଷ ଏତେ ଅସହାୟ କେମିତି ହୋଇଯାଏ ?

ଖାଲି କର୍ମ୍ପାଟମେଣ୍ଟ । ଏବେ ସେମିତି କିଛି ଛୁଟିର ଦିନ ଆଗକୁ ନାହିଁ କି କିଛି ଛୁଟି ସରିବା ପୂର୍ବଦିନ ବି ନୁହେଁ ତେଣୁ ଏକାଏକା ଯିବାକୁ ହିଁ ହେବ । ହଁ...ସିଏ କାହାସହ ଗପିବାକୁ ବି ତ ଚାହେଁନା । କ'ଣ ବା ଗପିବ । କାହା ବିଷୟରେ । କହିବାକୁ ତ ପୁଣି ଗୋଟେ ବିଷୟବସ୍ତୁ ଦରକାର ! ଦିନେ ସେ ଛଳଛଳ ନିର୍ଝରଣୀଟିଏ ଥିଲା । ଖୁବ୍ ପ୍ରଗଲ୍‌ଭ, ଆତ୍ମହରା, ଅୟୁତରାଗିଣୀର ସୁରଟିଏ । ଝରକା ଦେଇ କିଛି ବୁନ୍ଦା ଆଲୋକ ପ୍ରବେଶ କଲା, ଧିରେଧିରେ ଟ୍ରେନ୍‌ର ଗତି ଧିମେଇ ଆସିଲା, ଇଂଜିନ୍‌ର ସ୍ଥିର ହେବା ଶବ୍ଦ ଶୁଣାଗଲା, କେଉଁ ଏକ ଛୋଟକାଟିଆ ଷ୍ଟେସନ ଆଗକୁ । ସେ ଟିକେ ସଚେତନ ହେଲା, ହାତ ପାଖରେ ଥିବା କଳାବ୍ୟାଗ୍ ଓ ଭ୍ୟାନିଟି ଉପଟେ ଟିକେ ହାତ ବୁଲାଇ ଆଣିଲା । ଅନେକ ବର୍ଷ ଧରି ତା ଆଖିରେ ନିଦ ନାହିଁ । କେତେବର୍ଷ ? ବୋଧହୁଏ କୋଡ଼ିଏ ! ଆଖିରେ ଫ୍ରେମ୍‌ବନ୍ଧା ଚଷମାର କାଚ ମୋଟା ହୋଇଗଲାଣି । ବୟସ କେତେ ହେଲାଣି ତାକୁ ? ସତାବନ । ଦେହରେ ବିତି ଯାଉଥିବା ଆୟୁଷ ଅପେକ୍ଷା ସେ କିନ୍ତୁ ଖୁବ୍ ଅଧିକ ଗମ୍ଭୀର, ବୟସ୍କା, ପରିପକ୍ୱା ଲାଗେ । ସମୟର ଇତିହାସ କଡ଼ ଲେଉଟାଇ ତାକୁ ଅସ୍ତବ୍ୟସ୍ତ କରୁଛି । ଏବେ ବି ମନ ତଳେ ସେଇ ଗୋଟିଏ ପ୍ରଶ୍ନ ତାକୁ ଉଦ୍‌ବେଳିତ କରେ । କାହିଁକି ଅବିନାଶ ତା' ଜୀବନରେ ସୁନାମି ଆଣି ତାକୁ ଛାଡ଼ି ଚାଲିଗଲେ କେଉଁ ଅଦୃଶ୍ୟ ରାଇଜକୁ ?

. ସେ ଥିଲା ଅସାମାନ୍ୟ ସୁନ୍ଦରୀ, ଶିକ୍ଷିତା । ଆଉ ଘରେ ଶାଶୁ, ଶ୍ୱଶୁର, ଦିଅର, ନଣନ୍ଦ ସବୁରି ପ୍ରିୟପାତ୍ରୀ । ଯେଉଁରାତିରେ ପ୍ରଥମେ ତାକୁ ଅବିନାଶ ଭେଟିଥିଲେ ସେ ରାତିରେ ସେ କେବଳ ତାଙ୍କୁ ଆତ୍ମହରା ହୋଇ ଚାହିଁ ରହିଥିଲେ । କହିଥିଲେ "ମୁଁ କବିଟିଏ ନୁହେଁ ଚିନ୍ମୟୀ, ତୁମକୁ ନାନା ଉପମା ଦେଇ କବିତା ଭେଟିଦେବି । ତେବେ ଏତିକୁ କହିବି ମୋତେ ତୁମର ପଣତ କାନିରେ ବାନ୍ଧିରଖ, ମୁଁ ବନ୍ୟାର ଜଳରାଶି ।" କିଛି ବୁଝିପାରିନଥିଲା ସେ । ତାର ଅବୁଝା ଚାହାଁଣୀକୁ ପଢ଼ି ସେ ଆହୁରି ଆହୁରି ବିମୋହିତ ହୋଇଥିଲା । ଆଖିବନ୍ଦ କରି କହିଥିଲେ ତୁମେ ସୁନ୍ଦର ଫୁଲଟିଏ ତୁମକୁ ତୋଳିବା ପାଇଁ ନୁହେଁ ଦେଖିବାପାଇଁ ଭଗବାନ୍ ଗଢ଼ିଛନ୍ତି । ସେ ତାକୁ ସ୍ପର୍ଶ ବି କରି ନଥିଲେ । ତା'ରି କୋଳରେ ଶୋଇଯାଇଥିଲେ ଛୋଟ ଶିଶୁଟିଏ ପରି ଏମିତି କାଟିଥିଲା ବିନିଦ୍ର ରଜନୀ ! କେହିଜଣେ ରିଜର୍ଭ୍ କମ୍ପାଟମେଣ୍ଟରେ ଉଠିଲେ, ତା'ର ତନ୍ମୟତା ଭାଙ୍ଗିଲା । ସେ ମୁଣ୍ଡ ଉଠାଇ ଚାହିଁଲା, ତା' ଦେହରେ ଏକ ବିଦ୍ୟୁତର କମ୍ପନ ଖେଳିଗଲା । ମୁଣ୍ଡ ଝାଇଁଝାଇଁ କରିଗଲା, ଦେହରୁ ଝାଳବାହାରିଗଲା । ସେ କେବେ ଏତେ ଡ଼ରେନାହିଁ । ଆଜି କାହିଁକି ତାର ଏଇ ଅନୁଭବ । ନିଜେ ଆଶ୍ଚର୍ଯ୍ୟ ହୋଇଗଲା । ଯଥାସମ୍ଭବ ନିଜର ଭାବକୁ ଗୋପନୀୟ ରଖି ସଂଜତ ହେବାକୁ ଚେଷ୍ଟାକଲା । ପାଣିବଟଲ୍‌ରୁ ଟିକେ ପାଣି ପିଇବା ବେଳକୁ ଲାଗିଲା ଯେମିତି ତଣ୍ଟିପାଖରେ ଅଟକି ଯାଉଛି । ଛାତି ଭୀଷଣ କଷ୍ଟ ହେଲା । ବହୁତ ସମୟ ପରେ ପାଣି ଢ଼ୋକେ ତା ପେଟ ଭିତରକୁ ଗଲା । ସାମ୍ନାରୁ ଭାସିଆସିଲା ଗମ୍ଭୀର ସ୍ୱରଟିଏ- ମ୍ୟାଡ଼ାମ୍ ଡ଼ରିବାର କିଛିନାହିଁ । ମୁଁ ପାଖରେ ଅଛି । ସେ ଏଥର ପ୍ରବଳ ଭାବରେ ଡ଼ରିଗଲା । ଶଙ୍କୁଚିତ ହୋଇପଡ଼ିଲା । ସେ ମନେମନେ ଭାବିଲା ଏଇ ଭୟଙ୍କର ଚେହେରାର ଲୋକଟି କିପରି ଜାଣିଲା ସେ ବହୁତ ଭୟଭୀତ ହୋଇପଡ଼ିଛି । ସେ କିଏ ? ଡ଼କାଏତ୍‌ଟିଏ ନୁହେଁ ତ । କ'ଣ କରିବ ତାକୁ ଏକାପାଇ । ସେ ନିଜକୁ ବୁଝାଇବାକୁ ଚେଷ୍ଟାକଲା । ତା'ଦେହରେ ଯୌବନର ଅବଶିଷ୍ଟାଂଶ ଟିକେ ବି ରହିଯାଇନି ଯାହାକୁ ଖିନ୍‌ଭିନ୍ କରିବାକୁ ଚାହିଁବ ଲୋକଟି । ସେ କିଛି ମୂଲ୍ୟବାନ୍ ଅଳଙ୍କାର ବି ପିନ୍ଧିନାହିଁ । ହଁ... କିଛି ଟଙ୍କା ତା ପାଖରେ ଅଛି । ସେ ଯଦି ଚାହିଁବ ସେତିକି ନେଇଯାଇପାରେ । ଏତିକି ପ୍ରବୋଧନା

ଦେବାପରେ ଟିକେ ହାଲୁକା ଲାଗିଲା ତାକୁ । ସେ ମୁହଁବୁଲାଇ ଝରକା ଆଡ଼କୁ ଚାହିଁଲା । ବାହାରେ ଗଭୀର ଅନ୍ଧକାର ତା ଜୀବନର ଅମାବାସ୍ୟା ପରି ।

ଲୋକଟି ମୁଣ୍ଡ ପାଖରେ ତାର ହ୍ୟାଣ୍ଡବ୍ୟାଗ୍‌ଟି ରଖି ଗୋଡ଼ ଲମ୍ବାଇ ଶୋଇଗଲା, ତାର ଲମ୍ବାଗୋଡ଼ ସିଟ୍ ତଳକୁ ଝୁଲି ରହିଲା, ସେଥିକୁ ତାର ନିଘା ନାହିଁ ଘୁଙ୍ଗୁଡ଼ି ଶୁଭିଲା ।

ଆଶ୍ୱସ୍ତ ହୋଇପାରୁନି ଚିନ୍ମୟୀ । କାହାକୁ ବିଶ୍ୱାସ କରିବ ? କେମିତି ? ମନ ଭିତରେ ଉତ୍ତାଳ ଉଦ୍ଦଣ୍ଡ ସାମୁଦ୍ରିକ ଝଡ଼ । ଜଳ, ସ୍ଥଳ, ଆକାଶକୁ ଆବୋରି ବସୁଛି କ୍ଷଣକରେ ସେଇ ଝଡ଼ର ପ୍ରକୋପ । ସେ ଶିହରିତ ହେଉଛି, ଆତ୍ମମଗ୍ନ ହେଉଛି, ବିସ୍ମରି ଯାଉଛି ନିଜର ବର୍ତ୍ତମାନ । ଟ୍ରେନ୍‌ର ଗତି ଆଗକୁ ଆଗକୁ, ମନର ତୀବ୍ରତା ପଛକୁ ପଛକୁ । ମଣିଷଟିଏ କେବଳ କ'ଣ ରୂପ, ରଙ୍ଗ, ରସର ସମାହାର ?

ରାତି ପରେ ରାତି ବିତିଯାଇଛି । ସେ ସନ୍ତୁଳି ହେଇଛି । ସ୍ୱାମୀର ସ୍ପର୍ଶ, ଅଧରାମୃତ ପାନ କରିବାକୁ ଅସ୍ଥିର ହେଇଛି ମାତ୍ର ଅବିନାଶ ସ୍ଥିର । କିଛି ଆବେଗ, କିଛି ଉଚ୍ଛ୍ୱାସ, କିଛି ବାସନା କାମନା କିଛି ବି ଯେପରି ତା' ଭିତରୁ ଜନ୍ମୁନାହିଁ । ଯେପରି ମୋକ୍ଷ ପ୍ରାପ୍ତି ହୋଇଯାଇଥିବା ସମାଧିସ୍ଥ ସନ୍ୟାସୀ । ସେ କ୍ଷତାକ୍ତ, ଆହତ ହେଉଛି । କାହାକୁ କହିପାରୁନି, ସହିପାରୁନି । କଡ଼ଲେଉଟାଇ ଶୋଇଯାଆନ୍ତି ସ୍ୱାମୀ, ସେ ଚାହିଁରହେ ସାରାରତି ଦେହରେ ତାତି ଧରି । ଲୋକଟି ହାଇମାରି ଉଠିଲା, ଚମ୍‌କି ପଡିଲା ଚିନ୍ମୟୀ ।

ଥରମ ଫ୍ଲାସରୁ ଚା ଢ଼ାଳି ପିଇବାକୁ ଯାଉଛି, ଅନ୍ୟମନସ୍କରେ ଚାହିଁ ଦେଲା ଚିନ୍ମୟୀ ଆଡ଼କୁ । ଚା ପିଇବେ କି ମାଡ଼ାମ୍ । ସେ କିଛି କହିଲା ନାହିଁ, ମୁଣ୍ଡ ଟୁଙ୍ଗାରି ନାହିଁ କଲା । କ'ଣ ଡ଼ରୁଛନ୍ତି କି ଆଜ୍ଞା ! କିଛି ମିଶାଇଦେଇଥିବି ବୋଲି ? ମୁଁ ଚାହିଁଲେ ଆପଣଙ୍କଠାରୁ ସବୁ ନେଇପାରିବି । ଅଚେତ କରିବା କ'ଣ ଦରକାର । ପୁଣି ଚମକି ପଡ଼ିଲା ସେ । ଆଶ୍ଚର୍ଯ୍ୟ ! ଲୋକଟା ଏମିତି ମନକୁ ପଢ଼ିପକାଉଛି

କେମିତି ? ସେ କେମିତି ଜାଣିଲା ଚିନ୍ମୟୀ ଠିକ୍ ସେଇକଥା ହିଁ ଭାବୁଛି ବୋଲି ? ସେ ଖୁବ୍ ଡ଼ରିଗଲା ଏଥର । ପାଞ୍ଚ ସାତ ମିନିଟ୍‌ରେ ଚା ଢ଼ୋକେ ଢ଼ୋକ କରି ପିଇ ଦେଇ ଲୋକଟା କୁଆଡ଼େ ଗଲା, ବୋଧେ ଟଏଲେଟ୍ । ଚିନ୍ମୟୀ ଭାବିଲା କାହାକୁ ଆଉ ଡ଼ାକିଗଲା ସେ । ଏବେ ସେ କରିବ କ'ଣ ? ମୁସ୍କିଲରେ ପଡ଼ିଲା ସେ । କାହିଁକି ଏକ ଅହେତୁକ ଇଚ୍ଛା ନେଇ ସେ ଘରୁ ବାହାରିଥିଲା, କେତେ ମନରେ ଥିଲା ଆସ୍ଥା । ତାର ଝିଅ ଜିଦ୍ କରି ଆସିଛି ଏକାଏକା ଚେନ୍ନାଇ ।

ସେ ଭୟାଳୁ ଆଖି ଆଉ ମନ ନେଇ ଲୋକଟିର ଫେରିବା ପଥକୁ ଚାହିଁ ରହିଲା । ଚପଲ ଘୋଷାଡ଼ି ଘୋଷଡ଼ି ସେଇ ଭୟଙ୍କର ଚେହେରାର ଲୋକଟି ଆସିଲା । ଯଥା ରିତି ସିଟ୍‌ରେ କିଛି ସମୟ ଘୁମାଇଘୁମାଇ ପୁଣି ଗୋଡ଼ ଲମ୍ବାଇ ଶୋଇପଡ଼ିଲା । ଟିକେ ଆଶ୍ୱସ୍ତ ହେଲା ଚିନ୍ମୟୀ । ଯାହାହେଉ ଲୋକଟି ଯେତେ ଭୟଙ୍କର ଦିଶୁଛି ସେତେ ଖରାପ ନୁହେଁ । ମାତ୍ର ସେ ଆଖି ବନ୍ଦ କରିପାରୁନି । ତା ଶରୀରର ପ୍ରତ୍ୟେକ ନାଡ଼ି ଭୟଗ୍ରସ୍ତ ହୋଇସାରିଛି । ମନ ତ ଚିର ଅନିଦ୍ରା ।

ରାସ୍ତା ସହ ଦଉଡୁଥିବା ବିଲବାଡ଼ି, ଗଛଲତା, ନଦୀନାଳ, ପୋଲବନ୍ଧ କିଛି ଦେଖିପାରୁନି ସେ । ଯାହା ଟ୍ରେନ୍‌ରେ ଗଲେ ସେ ଦେଖିବାକୁ ଭଲ ପାଏ । ଆଜି ନୁହେଁ କୋଡ଼ିଏ ବର୍ଷଧରି ପ୍ରତିବର୍ଷ ସେ ଆସୁଛି ଏଇ ଗୋଟିଏ ସ୍ଥାନକୁ ପାଗଳ ପରି । ଯିଏ ଯେତେ ମନାକଲେ ବି ସେ ଆସେ । ମନରେ ସେଇ ଗୋଟିଏ ପ୍ରଶ୍ନ ଧରି, ସେ ଜାଣେନାଁ ସେ ଉତ୍ତର ସେ କେବେ ପାଇବ କି ନାହିଁ । ଅବିନାଶ ଅଛି ସତରେ କି ମିଳେଇ ଯାଇଛି ମହାଶୂନ୍ୟରେ କେଉଁଠି । ଥିଲେ ବି ସେଇ ନିର୍ଦ୍ଦିଷ୍ଟସ୍ଥାନକୁ ଆଉ କାହିଁକି ବା ଆସିବେ ! ଯେଉଁଠାରୁ ସେ ରାସ୍ତାକୁ ଦୁଇଧାର କରି ଚିନ୍ମୟୀର ବିପରୀତ ଦିଗର ରାସ୍ତାଟିକୁ ବାଛି ନେଇଥିଲା, ଜୀବନସାରା ପାଇଁ ପ୍ରଶ୍ନଟେ ହୋଇ । ତା ଛାତି ମନ୍ଥି ହୋଇ ବାହାରି ଆସୁଛି କୋହମିଶା ଉଚ୍ଛ୍ୱାସ । ଆଖି କୋଣରେ ଜକେଇ ଆସୁଛି କେଇବୁନ୍ଦା ଲୁହ । ଏବେ ବି ମନଗହୀରର ସେଇ ଗଭୀର କ୍ଷତରୁ ରକ୍ତ ଝରୁଛି । ବିବାହର କେଇମାସ କଟିଯାଇଛି । ପ୍ରତିରାତିରେ ସେଇ ଏକାକଥା । କେବେକେବେ ଅବିନାଶ ତାକୁ ମନୁଷ୍ୟ ଜୀବନର ଅସାରତା, କାମନାର ବିନାଶରେ

ଦୁଃଖର ବିନାଶ, ଆଉ ପଞ୍ଚଭୂତରେ ଗଢ଼ା ଏଇ ଶରୀରର ଦିନକୁ ଦିନ ଅବକ୍ଷୟ ହେଉଥିବା ବିଷୟରେ କହେ । ଶରୀରର ଯୌବନ, ସୁନ୍ଦରତା କିଛି ବି ସତ୍ୟ ନୁହେଁ, ସବୁ ମାୟା.... ଏହି ମୋହଗ୍ରସ୍ତ ଅବସ୍ଥାର ମୁକ୍ତି ଦରକାର । ସେ ଜଳଜଳ କରି ଚାହିଁରହେ । ଅଧା ବୁଝା, ଅଧା ଅବୁଝାର ଦୋଦୁଲ୍ୟମାନ ମାନସିକ ସ୍ଥିତି ନେଇ । ତାର ସାଙ୍ଗମାନଙ୍କ ଠାରୁ ଶୁଣିଥିବା ବିବାହ ସମ୍ବନ୍ଧୀୟ ନାନା କଥା, ଫିଲ୍ମରେ ଦେଖିବା ଦୃଶ୍ୟ ତା ନିଜର କଳ୍ପନା ସବୁ ଯେମିତି ମିଥ୍ୟା, ପ୍ରବଞ୍ଚନା ଓ ଅର୍ଥହୀନ ହୋଇ ଯାଆନ୍ତି । ଦିନସାରା ନବବଧୂର କର୍ତ୍ତବ୍ୟ, ରାତିରେ ଯନ୍ତ୍ରଣାର ଜଉ ଘରେ ବନ୍ଦିନୀ କରି ତାକୁ ନିର୍ବାକ୍ ଅସହାୟ ଓ ଅସ୍ଥିର କରିପକାନ୍ତି । ତା' ଶରୀରର କ୍ଷୀଣତା, ଅବିନାଶର ବେପରୁଆ ଭାବ ଉପରେ କୌଣସି ପ୍ରଭାବ ପକାଏନା । ମାତ୍ର ମା' ବୁଝିପାରେ ନିଶ୍ଚୟ କିଛି ଅଘଟଣ ଘଟୁଛି ଚିନ୍ମୟୀ ଜୀବନରେ । ନହେଲେ ନବବଧୂର ଲଜ୍ଜାଶୀଳା ବ୍ୟବହାର, ସ୍ୱାମୀ ସହ ମିଳିତ ହେବାର ଆକାଂକ୍ଷା, ଜୀବନକୁ ଭଲ ପାଇବାର ଆକର୍ଷଣ କିଛି ବି ଲକ୍ଷଣ କେମିତି ପ୍ରକାଶ ପାଉନି । ବାପଘରକୁ ଯିବାର କିଛିଦିନ ପରେ ମା' ହିଁ ପଚାରନ୍ତି କ'ଣ ହୋଇଛି ତୋର ? ଜନ୍ମଦାତ୍ରୀ ସେ । ସେହିଁ ଅଧିକ ଚିହ୍ନନ୍ତି ନିଜର କଲ୍ୟାଣୀ ଆତ୍ମଜାକୁ ! କୋହର ବନ୍ଧଟି ଯେମିତି ଭାଙ୍ଗିଯାଏ ଝିଅର, ଶୋକରେ ଅଭିଭୂତା ଚିନ୍ମୟୀ । କେଉଁ ଭାଷାରେ ପ୍ରକାଶ କରିବ ନିଜର ଯନ୍ତ୍ରଣା । ବଧୂ ଜୀବନର ଆଶ୍ଚର୍ଯ୍ୟ ଘଟଣାବଳୀକୁ ! ସ୍ତବ୍ଧମା' ! କାତର, ଅସ୍ଥିର ପିତା । ବିବାହର ବର୍ଷଟିଏ ବିତିବାକୁ ବସିଛି ଅଥଚ ସ୍ୱାମୀ-ସ୍ତ୍ରୀଙ୍କର କୌଣସି ଦୈହିକ ସଂପର୍କ ନାହିଁ ତେଣୁ ଏସବୁ ଜ୍ୱାଇଁଙ୍କର ସେଇ ବାବା, ମଠ, ମନ୍ଦିର, ପ୍ରବଚନ ଆଦି ଯିବାର ବିକୃତ ଚିନ୍ତାଧାରା । ଏକମାତ୍ର ସମାଧାନ ଏଇ ପରିବେଶରୁ ଦୂରେଇଗଲେ ହୁଏତ ମଥାରୁ ସେସବୁ ଭୂତ ବାହାରି ଯିବ ଆଉ ସ୍ତ୍ରୀ ପ୍ରତି ଆସକ୍ତି ଯାତ ହେବ । ବାପା-ମା ବହୁଚିନ୍ତା କରି ଚିନ୍ମୟୀର ଶାଶୁ, ଶ୍ୱଶୁରଙ୍କୁ ଏକମାସ ପାଇଁ ହନିମୁନ ଯିବାକୁ ଅନୁମତି ଆଣି ଦୁହିଁଙ୍କୁ ଭାରତଭ୍ରମଣରେ ପଠାନ୍ତି । ଖୁବ୍ ଖୁସି ହୋଇ ଚିନ୍ମୟୀ ଓ ଅବିନାଶ ପହଞ୍ଚନ୍ତି ସାଉଥଇଣ୍ଡିଆ ଟୁର୍ ଚେନ୍ନାଇରେ ପ୍ରଥମେ ।

ହାଇ ମାରିମାରି ଉଠିଲା ଲୋକଟି । ସିନ୍ଦୁରା ଫାଟି ଆସୁଛି । ବଡ଼ବଡ଼ ଆଖି ଡ଼ୋଳା ବୁଲାଇ ସେ ଚାହିଁଲା ଚିନ୍ମୟୀ ଆଡ଼େ । ଆଶ୍ଚର୍ଯ୍ୟରେ ତା'ର ଡ଼ୋଳା ବିସ୍ଫାରିତ ହୋଇଗଲା । ଆରେ ମାଡ଼ାମ୍ ଆପଣ ନ ଶୋଇ ରାତିସାରା ଚେଇଁଛନ୍ତି ନାଁ କଣ ? ଆଖି ଗୁଡ଼ା ଲାଲ ଦିଶୁଛି ? ଆହାଃ... ଟିକେ ରେଷ୍ଟ ନେଇଯାଆନ୍ତୁ ଚେନ୍ନାଇ ଆସିଲେ ତ ଦୁହେଁ ଓହ୍ଲାଇବା । ଠାଏ କିନାଁ ଚାପୁଡ଼ାଟେ ମାରିବାକୁ ଇଚ୍ଛା ହେଉଥିଲା ଚିନ୍ମୟୀର, ଲୋକଟିର କଳା ଟାଆଁସିଆ ଦାଢ଼ି ଭର୍ତ୍ତି ଗାଲଟିରେ । ଉଠିଲା ମାତ୍ରେ ବକ୍‌ବକ୍ ଆରମ୍ଭ ହୋଇଗଲା । କେମିତି ଜାଣିଲା କେଜାଣି ମୁଁ ଚେନ୍ନାଇ ଯିବି ବୋଲି ? ଲୋକଟି ଚପଲ ଘୋଷାଡ଼ି ଘୋଷାଡ଼ି ଟଏଲେଟ୍ ଗଲା ହାତରେ ବ୍ରସ ପେଷ୍ଟ ଧରି । ଚିନ୍ମୟୀର କ୍ଳାନ୍ତ ଆଖିପତା ଧିରେ ମୁଦି ହୋଇ ଆସୁଥିଲା । ତା'ମନରୁ ଡ଼ର ଭୟ ଟିକେ କମି ତାକୁ ହାଲୁକା ଲାଗୁଥିଲା । କେତେ ସମୟ ହୋ ସେ ଶୋଇଛି ସେ ଜାଣେନାଁ । କୌଣସି ଏକ ଷ୍ଟେସନରେ ବୋଧେ ଗାଡ଼ି ଅଟକିଛି । ଲୋକଟି ଚା କପ୍‌ଟିଏ ବଢ଼େଇଦେଲା ତାର ହାତକୁ, ବିନା ପ୍ରତିବାଦରେ ସେ କପ୍‌ଟି କେମିତି ଧରିଲା ତା'ର ଉତ୍ତର ସେ ନିଜେ ବି ଜାଣେନା । ମଥା ଭାରାକ୍ରାନ୍ତ, ଶରୀର ଦୁର୍ବଳ ଲାଗୁଛି । ବର୍ଷବର୍ଷର ପ୍ରଶ୍ନ ତା'ର ଭିତରେ ହାଇମାରୁଛି । ଚା ର ତାତି ଭିତରେ ତା ଜୀବନର ତାତିକୁ ଅନୁଭବ କରୁଥିଲଣ । ଏଥର ସେ ଟିକେ ସହଜ ଦୃଷ୍ଟିରେ ଚାହିଁଲା ଲୋକଟି ଆଡ଼େ । ଯିଏକି ଅତ୍ୟନ୍ତ ସ୍ୱାଭାବିକ୍ ଭାବରେ ସମ୍ବାଦପତ୍ରଟିଏ ଧରି ଗୁଣୁଗୁଣୁ ହୋଇ ପଢ଼ିପକାଉଛି । ଅବିନାଶ କେଉଁଠି ଥିବ କି ନଥିବ ସେ କିଛି ବି ଜାଣେନାଁ । ଦୀର୍ଘ କୋଡ଼ିଏ ବର୍ଷ ଧରି ଏଇ ନିର୍ଦ୍ଦିଷ୍ଟ ଦିନରେ ଏଇ ନିର୍ଦ୍ଦିଷ୍ଟ ସ୍ଥାନକୁ ଆସେ ସେ । ଯେଉଁଠରେ ପହଞ୍ଚିଥିଲେ ସେମାନେ ହନିମୁନ୍ କରି । ଆଉ ପହଞ୍ଚିବାର ପ୍ରଥମରାତିରେ ସେ ନବବଧୂର ସମସ୍ତ ବେଶଭୂଷା ନେଇ ମନର ଉଦ୍‌ବେଗ ଆଉ ଲଜ୍ଜା ରକ୍ତିମ ଆଭା ନେଇ ଚାହିଁବସିଥିଲା ଅବିନାଶର ଆସିବା ପଥକୁ । ସେ ନିଷ୍ପତ୍ତି ନେଇଥିଲା ସେଇଦିନ ହିଁ ସେ ଖୋଲିଦେବ ତା ନିଜ ଆଡୁ ମନ ଆଉ ଦେହର ଆବରଣ । ସ୍ୱାମୀ-ସ୍ତ୍ରୀଙ୍କ ଭିତରେ ଲଜ୍ଜା କ'ଣ । କେତେ ଆଡୁ କେତେ କଥା ଶୁଣୁଛି ସେ ଅବିନାଶ ବା କ'ଣ ଜାଣେ ! ତା'ର ମୁନିଜିଣା

ରୂପରେ ତ ଯେକହେି ମୁଗ୍ଧ ହେବ ସେ ନିଜେ ବି ବିମୋହିତା ବିମୁଗ୍ଧା । ମାତ୍ର ତା'ର ପ୍ରତୀକ୍ଷାର ଅନ୍ତ ହୋଇନଥିଲା । ଆଉ କେବେ ବି । ସେ ଅହଲ୍ୟା ହୋଇ ପାରିନଥିଲା ମାତ୍ର ତାର ମନ ପ୍ରସ୍ତର ହୋଇ ସାରିଥିଲା । ଚିଠିଟିଏ ଦେଇଥିଲା ହୋଟେଲ ବୟ ଖାଦ୍ୟସହ । କେବେ ଦେଖାହେବ ଜାଣେନାଁ, ମୁଁ ଯାଉଛି ସେଇ ଅନନ୍ୟ ସତ୍ୟର ସନ୍ଧାନରେ...... ଅବିନାଶ । କେଉଁ ସତ୍ୟର ସନ୍ଧାନରେ ନିଜର ଅସହାୟ ଏକାକୀ ପତ୍ନୀକୁ ପରଦେଶରେ ଛାଡ଼ି ଚାଲିଗଲା ଅବିନାଶ ? ବଞ୍ଚିବାଠୁ ଅଧିକ ସତ୍ୟତା ଆଉ କ'ଣ ଅଛି ? ଏଇ ଗୋଟିଏ ପ୍ରଶ୍ନର ଉତ୍ତର ପାଇଁ ଆସିଛି ସେ ବାରମ୍ବାର ଏଇ ଗୋଟିଏ ସ୍ଥାନକୁ । ଏ ଭିତରେ କେତେ ଉତ୍‌ଥାନ ପତନ ଜୀବନ ନଦୀରେ କେତେ ବନ୍ୟା କେତେ ଶୁଷ୍କତା ! କାହାର କଥା ଶୁଣିନି ସେ । ମା'ର ଲୁହ ଶୁଖିନାହିଁ, ବାପାଙ୍କ ଛାତି ପଥର ହୋଇଡ଼ି । ଅଥଚ ସେ ରହିଛି ଦୃଢ଼ ! ଅନାଥଶ୍ରମରୁ ଆଣିଥିବା ଆସ୍ଥା ତା ଝିଅ ଆଉ ତା'ର ଚାକିରୀ ନୁହେଁ ତା' ଜୀବନର ସାହାରା ପାଲଟି ତାକୁ ଅଧିକରୁ ଅଧିକ ଦୃଢ଼ କରିଛନ୍ତି । ଆଜି ଆସ୍ଥା ଅଠର ବର୍ଷରେ ପହଞ୍ଚିଛି । ସବୁ କିଛି ଶୁଣିଛି, ଅନୁଭବିଛି । ମା'କୁ ଛାଡ଼ି ନଯିବାର ପ୍ରତିଜ୍ଞା କରିଛି ଅନେକବାର । ଚିନ୍ମୟୀ ମୋହଗ୍ରସ୍ତ ହୋଇ ରହିଛି ତଥାପି । ସେ କେବେ ଅବିନାଶ ପରି ଭଗବାନ୍, ପରମାମ ବା' ପରମସତ୍ୟର ଅନୁସନ୍ଧାନ କରିବା ଚେଷ୍ଟା କରିନାହିଁ । ଦେହରେ ସହିଛି ଜୀବନର କଷଣ, ମାତ୍ର ମନରେ ମୋକ୍ଷପ୍ରାପ୍ତିର ଚିନ୍ତା ତା'ର ଆସିନାହିଁ । ଝଣଝଣ ଆଓ୍ୱାଜରେ ଚମ୍‌କିଗଲା ସେ । କିଏ ଜଣେ ଚେନ୍ ଟାଣି ଗାଡ଼ି ଅଟକାଇଛି କାହିଁକି ଜାଣିବାରେ ତା'ର ଆଗ୍ରହ ନାହିଁ । କେମିତି ଗୋଟେ ଦେହଟା ଝିମ୍‌ଝିମ୍ ହୋଇଯାଉଛି । ସେ ଆଖି ବନ୍ଦ କରିବା ଆଗରୁ ଖାଲି ଏତିକି ଦେଖିଛି ସେ ଭୟଙ୍କର ଲୋକଟି ତାକୁ ଦୁଇହାତରେ ଟେକି ନେଉଛି ।

ଡାକ୍ତରଖାନାର ବେଡ୍‌ରେ ଆଖି ଖୋଲିଲା ସେ । ଆଶ୍ଚର୍ଯ୍ୟ ହେଲା । ପାଖରେ ବସିରହିଛି ଲୋକଟି । ଆପଣଙ୍କର କୌଣସି ଜିନିଷ ମୁଁ ଖୋଲି ଦେଖିନାହିଁ ମାଡ଼ାମ୍ ତେଣୁ ଘର ଲୋକଙ୍କୁ ଖବର କରିନାହିଁ । ବ୍ୟସ୍ତ ହେବାର କିଛି ନାହିଁ । ସ୍ଲାଇଡ୍ ହାର୍ଟ ଆଟାକ୍...... ଏମିତି ଚିନ୍ତା କଲେ ଆଉ କ'ଣ ହେବ ? ସତେ ଯେମିତି

ବର୍ଷବର୍ଷର ଚିହ୍ନାଜଣା ସଂପର୍କୀୟ କେହି । ଫ୍ଲାସରୁ ହରଲିକ୍ସ ଢ଼ାଳି କପ୍‌ରେ ଧରିଲା ସେ । ଦୁର୍ବଳ ହାତ ଧରିବାକୁ ମଧ୍ୟ ଉଠୁନାହିଁ । ଧୀରେ ତାକୁ ଧରି ଉଠାଇ ଆଉଜାଇ ବସେଇଲା ସେଇ ପରମଆତ୍ମୀୟଟି । ଆଖିକୋଣରେ ଲୁହଧାର ଆଉ କଥା ମାନୁନାହିଁ । ବହିଯାଉ ଆଜି... ପୋଛିବ ନାହିଁ, ଅଟକେଇବ ନାହିଁ । ତା ମନର ରୁଦ୍ଧ ଆବେଗକୁ । ସେ କହିବାକୁ ଆରମ୍ଭ କଲା ତା'ର ଅଜ୍ଞାତଆତ୍ମୀୟକୁ ତା' ଜୀବନର ନିଶିଦ୍ଧ କାହାଣୀ... । ସେ କିଛି ଜାଣେନାଁ ସେ କାହିଁକି କହୁଛି, କାହାକୁ କହୁଛି, କ'ଣ କହୁଛି, ଖାଲି ମନର ଅଣନିଶ୍ୱାସୀ ଭାବରୁ ମୁକ୍ତିଟିଏ ଲୋଡ଼ିଛି ସେ ଅଜଣା ଦେବଦୂତଙ୍କଠାରୁ ଯାହାକୁ ସେ ପ୍ରଥମ ଦେଖାରୁ ଘୃଣାରେ ନାସିକା କୁଞ୍ଚନ କରିଥିଲା ।

ନିର୍ଦ୍ଦିଷ୍ଟ ହୋଟେଲ୍‌ରେ ପହଞ୍ଚିଲା ଚିନ୍ମୟୀ । ସାଙ୍ଗରେ କିନ୍ତୁ ସେଇ ଭଦ୍ରବ୍ୟକ୍ତି । ସେ ଅସୁସ୍ଥ ଚିନ୍ମୟୀକୁ ଏକୁଟିଆ ଛାଡ଼ିବାକୁ ଅମାନବିକତା ମନେ କରିଛନ୍ତି । ସ୍ୱାମୀ ସ୍ୱରୂପାନନ୍ଦଙ୍କର ସେହିଦିନ ସେଠାରେ ଆଗମନ ! ତାଙ୍କର ଖୋଜିଲା ଆଖି କାହାକୁ ଖୋଜୁଛି ଭକ୍ତମାନଙ୍କ ମନରେ ପ୍ରଶ୍ନ ଉଙ୍କିମାରୁଛି । ହୋଟେଲ୍‌ର ବିରାଟ୍ ଅଡ଼ିଟୋରିୟମ୍‌ର ବଡ଼ ପେଣ୍ଡାଲ ଉପରେ ଲାଲ ତପ୍ତପୋଷ ଅର୍ଦ୍ଧନିର୍ମିଳିତ ମୁଦ୍ରାରେ ବାବା ! ନୀରବ ନିର୍ବିକାର ! ତୀକ୍ଷ୍ଣ ଦୃଷ୍ଟିରେ ଚାହିଁଲା ଚିନ୍ମୟୀ, ଚିହ୍ନିବାକୁ କ୍ଷଣେମାତ୍ର ସମୟ ନେଇନି ସେ । ହାତ ଯୋଡ଼ି ନାହିଁ ବରଂ ଆହତ ସିଂହିରଠାଣୀରେ ସେ ଠିଆ ହେଲା ବାବାଙ୍କର ଏକ୍‌ଦମ୍ ସାମ୍ନାରେ । ବାବା ଦୃଷ୍ଟି ଆନତ କଲେ । ପ୍ରସ୍ଥାନ କଲେ ନିଜ ରୁମ୍‌କୁ । ସଙ୍ଗେ ସଙ୍ଗେ ଡ଼କରା ଆସିଲା ଚିନ୍ମୟୀକୁ । ବାୟୁ ନୀରବ, ପୃଥିବୀ ନୀରବ, ଚିନ୍ମୟୀ ଆଉ ବାବା ମଧ୍ୟ ନୀରବ । ତମେ ବିବାହ କରିଛ ଚିନ୍ମୟୀ, ସାଥିରେ ତୁମର ସ୍ୱାମୀ ସନ୍ତାନ ମଧ୍ୟ ଥିବେ । ତଥାପି ଯେଉଁ ପ୍ରଶ୍ନର ଉତ୍ତର ପାଇଁ ତମେ ଏହି ସ୍ଥାନକୁ ଆସିଛ ବାରବାର ଆଜି ଶୁଣ ! ମୋର ପୌରୁଷହୀନତା, ମୋର ନପୁଂସକତା ର ଆବରଣ ପାଇଁ ଆଉ କିଛି ରାସ୍ତା ନଥିଲା ଚିନୁ ତୁମକୁ ସନ୍ତାନର ଜନନୀ କରିବାର ଯୋଗ୍ୟତା ମୋର ନଥିଲା । ବାସ୍.... ଆଉ କିଛି ଜାଣିବାର ନଥିଲା ଚିନ୍ମୟୀର । ସେ କିଛି କହିବାକୁ ଚାହିଁବି କହିପାରିଲାନି । ସେ

କହିପାରିଲାନି ଯେ ସେଇ ବ୍ୟକ୍ତିଟ ତାର ସ୍ୱାମୀ ନୁହଁନ୍ତି । ପଥପ୍ରାନ୍ତେ ଭେଟିଥିବା ଅଜ୍ଞାତ ମଣିଷଟିଏ ମାନବିକତାର ମଶାଲଟିଏ ଜାଳି ତାର ସାଥି ଦେଇଛନ୍ତି ମାତ୍ର । ସେ ମନେମନେ ଉଚ୍ଚାରିଲା ତମେ ହିପୋକ୍ରାଟ୍ ଅବିନାଶ ! ତମେ ଜଣେ ହିପୋକ୍ରାଟ୍...... !! ତୁମେ କ'ଣ ସତରେ ମିଥ୍ୟାର ଆଢୁଆଳରେ ସତ୍ୟର ଅନୁସନ୍ଧାନ କରିପାରିଲା ? କାହିଁକି ଏଇ ଗୋଟିଏ କଥା ସେତେବେଳେ କହିଲନି ? ଦେହ କ'ଣ ପ୍ରେମର ଏକମାତ୍ର ମାଧ୍ୟମ ? ପ୍ରେମର କ'ଣ ଅସ୍ତିତ୍ୱ କେବଳ ପ୍ରେମକୁ ଆଧାର କରି ହୋଇ ପାରିନଥାନ୍ତା ?

ନିରବରେ ଧିରେଧିରେ ଚିନ୍ମୟୀ ବାହାରି ଆସିଲା । ଟ୍ରେନ୍‌ର ଗତି ଯେତେ ବଢୁଥିଲା, ତା ମନରେ ଅସ୍ଥିରତା ବି ବଢୁଥିଲା ସେତିକି । କାହିଁକି ସେ ଆସିଲା । ଅବିନାଶର ନିଷ୍ଠୁର ସତ୍ୟ କ'ଣ ସତରେ ତା' ପ୍ରଶ୍ନର ଉତ୍ତର ଯାହାକୁ ପାଇ ସେ ଜନ୍ମଜନ୍ମ ପାଇଁ ଶାନ୍ତି ପାଇବ ଭାବି ବାରମ୍ବାର ଆସୁଥିଲା ? ଏବେ ତା'ର ଅଜୋନୀସମ୍ଭୁତା କନ୍ୟା ବି ବଞ୍ଚିବାର ଆଶ୍ରା ହୋଇ ରହିପାରିବ କି ନାଁ ଏଥିନେଇ ସେ ସନ୍ଦିହାନ ହୋଇ ପଡୁଥିଲା । ତାର ଅଚେତନ ଶରୀର ଢ଼ଳିଢ଼ଳି ପଡୁପଡ଼ୁ ସେ ପୁଣି ଅନୁଭବ କଲା ଦେବଦୂତଙ୍କର କାହାରି କୋମଳସ୍ପର୍ଶ । ବିଶ୍ୱାସର ମୂଳଦୁଆ ଭୁଷୁଡ଼ି ପଡୁପଡୁ ସେ ମନେମନେ ଉଚ୍ଚାରିଲା– ଜୀବନ ହିଁ ସବୁ ସତ୍ୟର ଉର୍ଦ୍ଧ୍ୱରେ ଶାଶ୍ୱତ ଚିରନ୍ତନ । ବଞ୍ଚିବା ହିଁ ଏକମାତ୍ର ସତ୍ୟତା । ମିଛର ଆଲମ୍ବନରେ ସତ୍ୟର ଅନ୍ୱେଷଣ ସବୁଠୁ ବଡ଼ ଧକ୍କା !



# କାମକଲାବାଲୀ ଝିଅ

କାମକଲାବାଲୀ ଝିଅ !

ତୁ କ'ଣ କେବେ ସ୍ୱପ୍ନରେ ବି କଳ୍ପନା କରିଥିବୁ ଯେ ତୋତେ ନେଇ କେହି କେବେ କବିତ୍ୱର କଳ୍ପଲୋକରେ ଭାସିପାରିବ ! ତୁ କ'ଣ କେବେ ବି ଚିନ୍ତା କରିପାରିବୁ ଯେ ତୋ ସୌନ୍ଦର୍ଯ୍ୟର ସୀମା ସରହଦ କେତେ ଦୂର ବ୍ୟାପ୍ତ ! ତୁ କ'ଣ ଦେଖିଥାନ୍ତେ ତୋର ସେଇ ନିଟୋଳ ଧାରଟିଏ ହସକୁ ନେଇ ନିଶ୍ଚୟ ବିଖ୍ୟାତ ଛବିଟିଏ ଆଙ୍କିଥାନ୍ତେ, ହୁଏତ ସେଇ ଛବିଟି ସାରା ବିଶ୍ୱବ୍ରହ୍ମାଣ୍ଡ ଟପି ଅନ୍ତରୀକ୍ଷ, ମହାଶୂନ୍ୟ ଭୂଲୋକରୁ ଦ୍ୟୁଲୋକ ଯାଏ ବି ପ୍ରସିଦ୍ଧି ଲଭିଥାନ୍ତା ! ଆଉ ମୋନାଲିସାର ହି ସ୍ଥାନରେ ହୁଏ 'କାମକଲାବାଲୀ ଝିଅର ହସ' ଶିରୋନାମାର ଚିତ୍ରଟିପାଇଁ କେତେ ତର୍ଜମା ଚର୍ତୁଦିଗରେ ହେଉଥାନ୍ତା । ନାଁ.......... ଏସବୁ କିଛି ବି ହୋଇନି ହେବନି । କାରଣ ସେତିକି ଚିନ୍ତା କରିବାର ମାନସିକତା ତୋର ନାହିଁ । ତୋର ଟଣାଟଣା ଫାଳ ପୋଟଳର ଆଖି, ନୀରବ ସରୁ ମୁହଁ, ଧାରେ ସୁନ୍ଦର ହସ ଆଉ କାମ କରିବା ସ୍ତ୍ରୀ ଲୋକର ଷ୍ଟାମ୍ପ ଲଗାଇ ପାଦର ଇଞ୍ଚ୍ ଲମ୍ବ ଉପରକୁ ଉଠାଇ ଶାଢ଼ି ପିନ୍ଧିବାର ତନ୍ମୟତା ଭିତରେ ତୁ ବିମୁଗ୍ଧା, ଆତ୍ମବିସ୍ମୃତା । ତୋତେ ନେଇ କିଏ କ'ଣ ଭାବୁଛି । କାହିଁକି ଭାବୁଛି, ସେସବୁ ପାଇଁ ତୋର ସମୟ କିମ୍ବା ସ୍ପୃହା କିଛି ହେଲେ ନାହିଁ ।

ତୁ କ'ଣ ଭାବୁଛୁ ତାର ଏଇ ନୀରବତା ତୋତେ ଦିନେ କେବେ ବିଶ୍ୱବିଖ୍ୟାତ ଦାର୍ଶନିକର ଆସନକୁ ନେଇ ମହତ୍ତ୍ୱ ଦେବ ? ତୁ ଜାଣିଛୁ କି ନୀରବତା ଭିତରେ ଆଧ୍ୟାତ୍ମିକ ଶକ୍ତିର ରହସ୍ୟ ଲୁଚି ରହିଛି ? ନୀରବରେ କର୍ମ କରିଗଲେ ଯେ ଫଳ ନିଶ୍ଚୟ ମିଳିବ ତୁ କେମିତି ଜାଣିବୁ ? ତୁ 'ଗୀତା' ପଢ଼ିଛୁ ? ତୁ ଅରବିନ୍ଦ କି ଆରିଷ୍ଟଟଲ୍ କାହାରି ନା ଶୁଣିନଥିବୁ ତ ! ତାହେଲେ ଏତେ ଶକ୍ତି କେଉଁଠୁ ପାଉଛୁ ଯେ ସବୁକୁ ଏକ୍‌ଦମ୍ ପ୍ରତିବାଦହୀନ ଭାବରେ ସହ୍ୟ କରିଯାଉଛୁ । ତୁ କ'ଣ

ଜାଣିଯାଇଛୁ ଯେ ନୀରବତା ଭିତରେ ଆଣବିକ ବୋମାର ବିଶାଳ ଶକ୍ତି ଠୁଳ ହୋଇ ରହିଛି ? କେମିତି ଜାଣିଲୁ ? ତୋ ଡ୍ରଇଁ ରୁମ୍‌ରେ ପୋତର୍ସଲିନ୍ ଆର୍ଟର ଦାମିକିଆ ଫ୍ଲାୱାରଭେସ୍ ନାହିଁ । ତୋ ଘରେ ପୃଥିବୀର ନାମୀଦାମୀ ଆର୍ଟିଷ୍ଟଙ୍କର ରହସ୍ୟ ରୋମାଞ୍ଚ ଭରା ଆଧୁନିକ ତୈଳଚିତ୍ରଟିଏ ବି ନାହିଁ । ତୁ କର୍ଲନ ଗଦି ଉପରେ ଶୋଉନା । ତୋ ପିଲାମାନେ ବଡ଼ବଡ଼ ଇଂରାଜୀ ସ୍କୁଲରେ ପାଠ ପଢ଼ନ୍ତି ନାହିଁ । ତୋ ସ୍ୱାମୀ ଚୋରାରେ ମଦ ରଖି ରାତିରେ ବିକେ । ତେଣୁ ତମାମ୍ ରାତି ତୋର ଅର୍ଦ୍ଧଶାୟିତ ଅବସ୍ଥାରେ ହିଁ କଟେ । ତୋ ଏଇ ଅର୍ଦ୍ଧନିଦ୍ରା, ଅଦ୍ଧଚେତନ ଅବସ୍ଥା ସକାଳେ କାମ କରିବାକୁ ଆସି ମାଲିକାଣୀଠାରୁ ଗାଳି ଶୁଣିବା ପରେ ହିଁ ତୁ ସଂପୂର୍ଣ୍ଣ ଚେତନାକୁ ଆସୁ । ଆଉ ତୁ କାମ କରୁଥିବା ଘରମାନଙ୍କର ମାଲିକାଣୀମାନଙ୍କୁ ହିଁ ଅଧିକ ଭୟକରୁ ସମ୍ମାନ ଦେଉ ଆଉ ଭଲପାଉ । କାହିଁକି ନାଁ ସେଇମାନଙ୍କ ପାଇଁ ତୋ ଭିତରର ଜୀବନ ନାମକ ଈଶ୍ୱରକୁ ତୁ ବଞ୍ଚେଇପାରୁ- ବୋଲି ତୁ ଜାଣୁ । ତୋ ସ୍ୱାମୀ ଯେତିକି କମାଏ ତାଠୁ ଅଧିକ ମଦରେ, ଜୁଆରେ ଅନ୍ୟ ମାଇକିନିଁଆରେ ଉଡ଼ାଏ । ତୁ ସବୁ ଜାଣୁ, କିନ୍ତୁ ତୁ ଖୁବ୍ ବେପରୁଆ । ତୋ ପାଇଁ ତୋ ସ୍ୱାମୀ କେବଳ ଏକ ଆତ୍ମିକ ବିଳାସ ବ୍ୟତୀତ ଆଉ କିଛି ନୁହେଁ, ଯିଏ କି ଜନନୀ ହେବାର ମଧୁର ଅନୁଭବଟିକୁ ଅକାତରେ ଅଜାଡ଼ି ଦେଇଛି ତୋ ଆବେଗମୟ ପଣତକାନିରେ । ତୁ କାଳେ ଅପ୍ରାପ୍ତ ବୟସରେ ଧର୍ଷିତା ହୋଇଥିଲୁ ଆଉ ତୋ ଅପରୂପ ସୌନ୍ଦର୍ଯ୍ୟରେ କଳଙ୍କର କାଳିମା ଧୋଇବାକୁ ତୋ ସ୍ୱାମୀ ଚନ୍ଦ୍ରସେଣାଟିଏ ହୋଇ ଉଭାହୋଇଥିଲା । ତୁ ତା ପ୍ରତି ବିଶ୍ୱସ୍ତ ଆଉ କୃତଜ୍ଞ ରହିବାକୁ ସ୍ଥିର କରିଥିଲୁ । ତୁ ନିଜକୁ ଈଶ୍ୱରୀଟିଏ ବୋଲି ଭାବୁ କି ? ତୁ କ'ଣ ଭାବୁ କି ହୋଲକାର ବଂଶର ପାଟରାଣୀମାନଙ୍କ ପରି ତୋ ନାଁରେ କିମ୍ବଦନ୍ତୀଟିଏ କି ଇତିହାସର କିଛି ନୂଆପୃଷ୍ଠା ଲେଖାହେବ ? ଯଦି ତୋ ଭିତରେ ସେତିକି ଅହଂକାର ନାହିଁ ତେବେ ତୁ ନିଦ୍ୱନ୍ଦରେ ଏତେ ତ୍ୟାଗ କେମିତି କରିପାରୁ ? କେମିତି ପିଇଯାଉ ଏତେ ଜ୍ୱାଳା ଓ ଯନ୍ତ୍ରଣାକୁ ? ତୁ ଦେହକୁ କେବେ ଗୁରୁତ୍ୱ ଦେଇନୁ ବରଂ ପ୍ରେମମୟୀ ରାଧାଟିଏ ସାଜି ନିଜକୁ ଦ୍ରୌପଦୀଙ୍କ ପରି ସଂପୂର୍ଣ୍ଣ ସଅଁପି ପାରିଛୁ ତୋର ସ୍ୱାମୀ ଦେବତା ପାଖରେ !

ସ୍ୱାମୀର କେଉଁ ରାତି କାହା ପାଖରେ କଟୁଛି ସେ ଚିନ୍ତା ତୋ ଚେତନାର ଗଭୀରତାକୁ ପ୍ରବେଶ କରାଇ କଷ୍ଟ ପାଉନାଁ । କିନ୍ତୁ- କାହିଁକି ଆଉ କେମିତି ? ତୁ କ'ଣ ତୋ ସ୍ୱାମୀର ବ୍ୟବହାର ଦ୍ୱାରା ନିଜକୁ କେବେ ନିର୍ଯ୍ୟାତୀତା ଭାବୁନାଁ ? ତୁ କ'ଣ ବଡ଼ବଡ଼ ସ୍ଲୋଗାନ୍, ଭାଷଣ କିଛି ହେଲେ ଶୁଣୁନାଁ ? ତୁ ପୁରୁଷର ଏଇ ସ୍ୱଭାବକୁ ଏତେ ସହଜ, ଏତେ ସ୍ୱାଭାବିକ ଭାବେ ଗ୍ରହଣ କେମିତି କରୁ ? ତୁ କ'ଣ ଜାଣିଛୁ ଏଇ ଗୁଣ ଆକାଶଠୁ ବଳ ମହାନ୍ ହୃଦୟର ପରିଚୟ ଦିଏ ? ଯାହାକୁ ନେଇ ହୁଏତ 'ଇଲିଆଡ୍' କି 'ଓଡ଼େଶୀ' ପରେ ମହାକାବ୍ୟ ରଚନା ହୋଇପାରିଥାନ୍ତା । ତୋତେ ନେଇ ହୋମର୍ କି ଦାନ୍ତେ ନିଶ୍ଚୟ କିଛି ଲେଖିଥାନ୍ତେ । ହୁଏତ ଯୁଦ୍ଧକ୍ଷେତ୍ରରେ ତୋତେ ଭେଟିଥିଲେ କିଟ୍‌ସ୍‌ଙ୍କର ରୋମାଣ୍ଟିକ ସନେଟ୍‌ର ତୁ ନାୟିକା ସାଜି ପାରିଥାନ୍ତୁ । ତୋ ଭିତରେ ବାହାରେ ଅୟୁତ ସୌନ୍ଦର୍ଯ୍ୟର ରାଗିଣୀ ! ଅଥଚ ତୁ କେତେ ନିର୍ବିକାର । ତୁ ଶରୀରର ବଳ ଖଟାଇ ପଇସା ରୋଜଗାର କରୁ, ଶରୀର ଖଟାଇ ନୁହେଁ ? ତୁ ଯଦି ଗୋଟେ କମ୍ପାନୀର ବ୍ରାଣ୍ଡ ଆମ୍ବାସାଡ଼ାର କି ନହେଲେ ମଡ଼େଲଟିଏ ହୁଅନ୍ତୁ ଏକକାଳୀନ ଏତେ ଟଙ୍କା ପାଆନ୍ତୁ ସେକଥା କେବେ ବି ଚିନ୍ତା କରି ପାରିବୁନି । ତୁ ମୂର୍ଖଟା ନିହାତି ବୋକୀଟା । କେତେ ବଡ଼ବଡ଼ ଲୋକଙ୍କ ଆଖିଠାର କୁ ତୁ ପଦାରେ ଠେଲି ଦେଇଛୁ । କାଳୀମୂର୍ତ୍ତିର ରୌଦ୍ରତା ଦେଖାଇ ସମସ୍ତଙ୍କୁ ଭୟଭୀତ କରିଛୁ ।

ତୁ ଜୁଡ଼ାରେ ମଲ୍ଲୀ, ଗୋଲାପ, ଜୁଇ, ଇଟଲୀ ଫୁଲର ମାଳଖୋସୁ ତୋ ଖୁସି ପାଇଁ । ତୋର ଲମ୍ବା ଗହଳ ଘନ କେଶର ବେଣୀକୁ ଖୁବ୍ ସାଜେ ଫୁଲ ମାଳଗୁଡ଼ା । ତୋ ସ୍ୱାମୀ କାଳେ ତୋ ଜୁଡ଼ାରେ ଫୁଲମାଳ ଦେଖିଲେ ତୋ ପାଖ ଛାଡ଼େନାଁ । ତୁ ସ୍ୱୟଂ ସଂପୂର୍ଣ୍ଣା ପ୍ରେୟସୀଟିଏ । ତୋ ଠାଣୀରେ ଏତେ ସମ୍ଭ୍ରାନ୍ତୀୟ ଗମ୍ଭୀରତା କେମିତି ଫୁଟିଉଠେ ? ତୋ ବଂଶର କେଉଁ ଇତିହାସରେ ବି ତ ଲେଖାନାହିଁ ତୁ ଗୋଟେ ବଡ଼ଘରର ହଜିଯାଇଥିବା ଝିଅଟେ ବୋଲି ? ତୋ ବାପା ମଦୁଆ ରିକ୍ସାବାଲା, ତୋ ମା' କାମକଲାବାଲୀଟିଏ ଥିଲା । ତାହେଲେ ବୈଜ୍ଞାନିକ ଜିନ୍

ଥିଓରୀ ତୋ ପାଖେ ଭୁଲ୍ କେମିତି ହେଲା । ତୁ ପବିତ୍ର ଗଙ୍ଗାଟିଏ । ତୋ ଔଜଲ୍ୟତାର ତୁଳନା ନାହିଁ ।

କାମକଲାବାଲୀ ଝିଅ !!

ତୋ ମନରେ ଦରଦର ପ୍ଲାବନୀ ବହେ ଗରୀବ, ଦୁଃଖୀ, ରଙ୍କିକିପାଇଁ । ତୁ ଘରୁ କାମପକେଇ ମୋଟା ଚାଉଳ ମୁଠେ କି ପାଣି ଗ୍ଲାସ୍‌ଟିଏ ନେଇ ଧାଇଁଆସୁ ସେମାନଙ୍କ ପାଟି ଶୁଣିଲେ । ତୁ ଏଇ ପୃଥିବୀରେ ଜନ୍ମନେଇ ମୋକ୍ଷ ଲଭିପାରୁନଥିବା ଅଭିଷପ୍ତା ଗନ୍ଧର୍ବଟିଏ ନୁହେଁ ତ ? ତମାମ୍ ଜୀବନ ଯନ୍ତ୍ରଣାରେ ଜଉଘରେ ଜଳିବାକୁ ଜନ୍ମକ !

ଦୀପରୁ ସରିଯାଏ ସଳିତା, ଦେହରୁ ବି ବୟସ !!

ତୋ ଦେହରୁ ସମୟ ଆୟୁଷ ଖସାଇ ନେଉଛି ଧିରେଧିରେ । ବଳବି ସରିଆସୁଛି । ତୁ ଏବେ କ୍ଳାନ୍ତରାଣୀ ମହୁମାଛିଟି ପରି ଲାଗିଲୁଣି । ସ୍ୱାମୀ ତୋର ସ୍ୱାମୀତ୍ୱ ଜାହିର୍ କରିସାରି ଚାଲିଗଲାଣି ଆଉ କେଉଁ ପଣତକାନିର ମାୟାରେ । ତୁ ତା'ର ବାଟ ଚାହିଁଛୁ । ତୋର ମନର ଆକ୍ତାମାକ୍ତା କୋହକୁ କିନ୍ତୁ ତୋ ନୀରବତାର ଶବ୍ଦରୁ ବାରିହୁଏନା ତୁ କ୍ଷମାମୟୀ । ତୋ ପିଲାମାନେ ଜୁଆନ୍ ବୟସରେ ପାଦଦେଇ ଖଣ୍ଡିଉଡ଼ା ଦେଲେଣି । ସେମାନେ ବି ତୋ ପାପୁଲି ମମତାର ଉଷ୍ମତାକୁ ଭୁଲିଲେଣି । କେତେଦିନ ପରେ ତୋ ନୀଡ଼ ଏକଦମ୍ ଖାଲିହୋଇଯିବ । ତୁ ହୋଇଯିବୁ ବାସ୍ତୁହରା ! ତୁ ଭଲକରି ଜାଣୁ ତୁ ଦିଗ୍‌ଦର୍ଶୀଟିଏ । ତୁ ତୋ ଭାଗ୍ୟକୁ ଏମିତି ସ୍ୱୀକାରିବାକୁ କାହାଠୁ ଶିଖିଛୁ କହିବୁ ? ତୋର କ'ଣ କେବେ ଇଚ୍ଛା ହୁଏନି ତୋ ଭାଗ୍ୟପଣ ସହ ଲଢ଼ି ଜିତିବାକୁ ଥରଟିଏ ପାଇଁ । ତୁ ଭଗବାନଙ୍କୁ ବି କିଛି କେବେ ମାଗିନୁ । କି ପଚାରିନୁ । ଭୂମିଠୁ ଭୂମାଯାଏ ବ୍ୟାପ୍ତ ତୋର ଚେତନାକୁ ତୁ କେବେ ଅନୁଭବି ପାରିଛୁ ? ଦୁଃଖଗୁଡ଼ାଙ୍କୁ ଆପଣେଇ ନେବାବେଳେ ତୁ କେବେ ନିଜକୁ ମହାନ୍ ବୋଲି ଭାବି ଆତ୍ମହରା ହୋଇନୁ । ତୁ କେବେ ନିର୍ବାଣ ଖୋଜିନୁଁ । ତୁ କେବେ

ମୋକ୍ଷ ଚାହିଁନୁ, ତୁ କେବେ ପଳାତକ ସାଜିବକୁ ପସନ୍ଦ କରିନୁ । ତୁ ଜାଣୁ ତୋ ମୃତ୍ୟୁ ଯାଏ ସଂଗ୍ରାମ କରି ବଞ୍ଚିବାକୁ ହେବ । ତୁ ନାରଉଇନ୍‌ଙ୍କର ବିବର୍ତ୍ତନବାଦ ତ ପଢ଼ିନୁ, ତଥାପି ବଳଶାଳୀ ହିଁ ବଞ୍ଚିପାରେ ବୋଲି ତୁ ଜାଣୁ । ତୁ ଅନିର୍ବାଣ ଦୀଶିଖାଟିଏ ଯିଏ କି କେବଳ ଜଳେ ଅନ୍ୟକୁ ଆଲୋକିତ କରିବାକୁ ।

ତୁ ରାତିହେଲେ ଅନ୍ଧାରର ଉହାଡ଼ରେ କେବେ ଗୁମୁରି କାନ୍ଦୁ ତାହା କେହି ଜାଣେନା, ତୁ ତ ମଣିଷଟେ । ହେଲେ ବି ତୋ ନିଜ ଭିତରେ ତୋ ମନକୁ ବନ୍ଦୀ କରି ରଖିବାର କୌଶଳ ତୁ ଜାଣୁ । ତୁ କାହା ସହ ତୋ ନିଜସ୍ୱ ମୂହୁର୍ତ୍ତମାନଙ୍କର ଶୋକଙ୍କୁ ବାଣ୍ଟିବାକୁ ଚାହିଁନୁ । ବରଂ ରକ୍ତନଦୀତୀରେ ନିଜ ଶବ ନିଜେ କାନ୍ଧେଇ ପାରିବାର ଅପୂର୍ବ ଶକ୍ତି ତୋ ପାଖରେ ।

ତୁ ଏଇ ପୃଥିବୀର ଶ୍ରେଷ୍ଠ ଦାର୍ଶନିକ ଯିଏ କି ନିଜ ବିଷୟରେ ପୃଥିବୀର ମାନବସଭ୍ୟତା ବିଷୟରେ ସବୁ ନିଗୂଢ଼ ତତ୍ତ୍ୱ ଜାଣୁ । ତୁ ଜାଣୁ କେବଳ ଏମିତି ନିର୍ବିକାର, ନିସ୍ପୃହ, ନିରହଙ୍କାର ହୋଇ ନିରବଚ୍ଛିନ୍ନ ଭାବେ ଧାଇଁ ଚାଲିବାର ଶାଶ୍ୱତ ଆନନ୍ଦ ହିଁ ଜୀବନ !!



# ମା'ର ଇଚ୍ଛା

ଆଖି ଲମ୍ବାଇ ଦୂରଦିଗନ୍ତକୁ ଚାହିଁଚାହିଁ କେତେ କ'ଣ ଭାବିଯାଉଥିଲା କମଳିନୀ । ଜୀବନର କିଛି ପଥ ଅତିକ୍ରାନ୍ତ କରିବାପରେ ସେ କିଛିଟା ଅଭିଜ୍ଞତା ହାସଲ କରିଥିବାରୁ ଜୀବନଯେ ସହଜ, ସ୍ୱଚ୍ଛନ୍ଦ ଓ ସୁଖମୟ ନୁହଁ ଏକଥା ବେଶ୍ ଜାଣିଯାଇଥିଲା । ଶାଶୂଘରର ବଡ଼ବୋହୂ, ବାପଘରର ସାନଝିଅର ଭୂମିକା ଭିତରେ ସମତୁଲ ରକ୍ଷା କରିବାକୁ ଲାଗିଥିଲା । ସେଥିରେ କୃତକାର୍ଯ୍ୟ ହୋଇଥିଲା । ଶ୍ୱଶୂର ଘରର ସର୍ବମୟ କର୍ତ୍ତୀ ଶାଶୂ ହେଲେ ମଧ୍ୟ ତା'ର ପ୍ରଭାବ ବି କିଛି କମ୍ ନଥିଲା । ବିରାଟ ପରିବାରର ପ୍ରତ୍ୟେକ ସଦସ୍ୟଙ୍କ କଥା ଆନ୍ତରିକଭାବରେ ବୁଝୁବୁଝୁ ସେ ବି ଏକ ଗୁରୁତ୍ୱପୂର୍ଣ୍ଣ ଅଂଶ ହୋଇଯାଥିଲା ସବୁରିପାଇଁ । ସକାଳୁ ସଞ୍ଜ ପୁଣି ସଞ୍ଜଠୁ ରାତି ଯାଏ ଘଣ୍ଟା ପରି ଟିକ୍‌ଟିକ୍ ଚାଲୁଚାଲୁ ସବୁ କାମ ତୁଲାଇ ସେ ଯେତେବେଳେ ରାତ୍ରିରେ ପାଏ କିଛି ନିଜସ୍ୱ ମୁହୂର୍ତ୍ତ, ସେତିକି ବେଳେ ହିଁ ମନେପଡ଼ିଯାଏ ସେଇ ବୁଢ଼ୀ ମଣିଷଟା । ଯିଏ କୋଳେଇ କାଖେଇ ତାର ସବୁ ଅଳିଅର୍ଦ୍ଦଳି ବୁଝି ତାକୁ ମଣିଷ କରିଛି । ଖାଲି ଜନ୍ମ କରିଦେଲେ ତ ମା' ହୋଇ ହୁଏନା । ସ୍ନେହଭିଜା ମାତୃତ୍ୱ ଆଉ ନିଜ ଲହୁଲୁହ ଦେଇ ଯିଏ ପିଲାକୁ ମଣିଷ କରେ ସେ ହିଁ ମା' । ଏକଥା କିନ୍ତୁ ଘରେ ଥିବାବେଳେ ବୁଝିନଥିଲା କମଳିନୀ । ନିଜର ପିଲାଟିଏ ହେବାପରେ, ଶାଶୂଘରେ ବର୍ଷପରେ ବର୍ଷ ଗଡ଼ିଯିବା ଭିତରେ ବେଳକୁ ବେଳ ବେଶିବେଶି ବୁଝିବାକୁ ଲାଗିଲା ମା' ଶବ୍ଦଟିକୁ । ଆଉ ସେତିକି ବେଳେ ହିଁ ଆଖି ଆଗରେ ଠିଆହେଲା ମା' । ସମ୍ପର୍କର ସଂପ୍ରସାରିତ ବଳୟ ଭିତରେ ତା' ମା' ତେଜସ୍ୱିନୀ ବିନ୍ଦୁଟିଏ ପରି ତାକୁ ମନେହୁଏ । ଯାହାପାଇଁ– ସେ ପୃଥିବୀକୁ ଆସିପାରିଛି, ମଣିଷଟିଏ ହୋଇ ବଢ଼ି ପାରିଛି, ସେଇ ମା' ଆଜି ବୟସର ଶେଷ ପାହାଚରେ ପହଞ୍ଚି ଖୁବ୍ ଦୁଃଖରେ ଦିନ କାଟୁଛି । ଏକଥା ଭାବି କମଳିନୀର ଛାତି ଭିତରଟା କିପରି ମନ୍ଥି ହୋଇଯାଏ, ଆଖିକୁ ଲୁହ ଚାଲିଆସେ । ଏମିତି କାହିଁକି ହୁଏ ? ସେଇ ମଣିଷଟି ଯିଏ ତମାମ୍ ଜୀବନ ଅନ୍ୟପାଇଁ ଭାବେ ତା' କଥା କେହି ଭାବନ୍ତି ନାହିଁ କାହିଁକି ? ଦୁଇପୁଅ ଦୁଇଝିଅର ପରିପୂର୍ଣ୍ଣ ସଂସାର ମା'ର । ବାପା ରିଟାୟାର୍ଡ଼

କଲାପରେ ଧିରେଧିରେ କିନ୍ତୁ ସବୁ କ୍ଷୁର୍ଣ୍ଣ ହେବାକୁ ଲାଗିଲା । ବର୍ତ୍ତମାନର ଦୁନିଆରେ ପଇସା ହିଁ ଈଶ୍ବର ଆଉ ତା ବିନା ସୁଖ କିଣିବା ଅସମ୍ଭବ ଏକଥା ବୁଝିବାକୁ ଡ଼େରି ନଥିଲା । ଦୁଇଝିଅଙ୍କୁ ବାହାକରିଦେବା ବେଳେ ମା' କହିଥିଲା- "ଝିଅଲୋ ମୁଁ ତ ପାଠଶାଠ ପଢ଼ିନାହିଁ, ମୂର୍ଖ ଲୋକଟାଏ । ଖାଲି ଜୀବନର ଅଭିଜ୍ଞତାରୁ ଏତିକି ଜାଣିଛି- ପଥର ହେଲେ ରହିବ, ପତର ହେଲେ ଉଡ଼ିଯିବ- ନାରୀ ଜୀବନ ହିଁ ଏହା । ବାସ୍ ମା'ର ସେତିକି କଥାକୁ ପୁଞ୍ଜି ଓ ପାଥେୟ କରି ଦୁଇଝିଅ କମଳିନୀ, ସୁହାସିନୀ ଶାଶୂଘରେ ଦିନ କାଟିଛନ୍ତି । ଦୁଃଖ ଆସିଛି, ଯାଇଛି ସେମାନେ ଛାତିପାତି ସହିଛନ୍ତି, ରହିଛନ୍ତି । ହେଲେ ମା' ? ବଡ଼ପୁଅ ବାହାକରି ମା' ଆଣିଥିଲା ବୋହୂଟିଏ । ସାନପୁଅର ବଡ଼ ଚାକିରୀ । ବଡ଼ପୁଅର ବିଜିନେସ୍ । ମା' କିଛିଦିନ ସୁଖରେ ଥିଲା ହେଲେ ସବୁରି ଉପରେ ନିୟତି । ବଡ଼ପୁଅ ବିଜିନେସ୍‌ରେ ତିଳିତଳାନ୍ତ ହୋଇଯିବା ସହ ସାନପୁଅ ବାହା ହୋଇ ଅଲଗା ରହିବ । ସତେ ଯେମିତି ମା' ମୁଣ୍ଡରେ ଦୁଃଖର ପାହାଡ଼ ଭାଙ୍ଗି ପଡ଼ିଥିଲା । ମା' କିନ୍ତୁ ହାରି ଯାଇନଥିଲା । ମା' ଲଢ଼ିଥିଲା ଭାଗ୍ୟ ସହ । ଦୁଇଝିଅଙ୍କୁ ବୁଝାଇ ଚିଠି ଲେଖୁଥିଲା, ବୋହୂକୁ ବୁଝାଇ ନାତି ଖେଳାଉଥିଲା । ' ବର୍ଷରେ ଥରେ ଘରକୁ ଗଲେ କମଳିନୀ ମା'ର ସେଇ ହସହସ ମୁହଁ ଭିତରେ ଛପିରହିଥିବା ଲହୁଭିଜା ମୂହୂର୍ତ୍ତମାନଙ୍କମୁ ବେଶ୍ ଦେଖିପାରେ । ମା' କୋଳରେ ମୁହଁ ଗୁଞ୍ଜି ଶୋଇବା ବେଳେ ମା' ଝିଅ ଗୁମୁରି ଗୁମୁରି କାନ୍ଦନ୍ତି । ମା' ଦୁଃଖ କହେ ନାହିଁ, ଦୁଃଖ କହି କାହାକୁ ଦୁଃଖ ଦିଏ ନାହିଁ । କମଳିନୀ ବୁଝିପାରେ ଦିନକୁ ଦିନ ଘରର ଆର୍ଥିକ ଅବସ୍ଥା ଖରାପ ହେଉଛି । ଜୀବନସାରା ହାଡ଼ଭଙ୍ଗା ପରିଶ୍ରମ କରି ବି ବାପା ଘର ଖଣ୍ଡେ କି ସେମିତି କିଛି ବ୍ୟାଙ୍କ ବାଲାନ୍‌ସ ରଖି ପାରିନାହାଁନ୍ତି । ବୟସୀ ମା'ଟା ଭିତରେ ଥିବା ସହିବା ଶକ୍ତିରେ ବି ଭୂମିକମ୍ପ ହେଲାଣି । କିନ୍ତୁ କ'ଣ କରିପାରିବ କମଳିନୀ, ସେ ତ ବିବାହିତା ଝିଅଟାଏ ? ଏତେଗୁଡ଼ାଏ ବୋଝକୁ ବାପାଙ୍କ ପେନ୍‌ସନ ଗଣ୍ଡାକ ଯେ ନିଅଣ୍ଟ ।

ଥରେ ମା'କୁ ପଚାରିଲା ସେ- ମା' ଲୋ ତୋ ଦୁଃଖ, ଘରର ଅବସ୍ଥା ତ ମୁଁ ସୁଧାରି ପାରିବି ନାହିଁ ତେବେ ତୋର ଇଛାଟିଏ ମୋତେ କହ ଯଦି ପାରିବି ମୋ ସାଧ୍ୟମତେ ପୂରଣ କରିବାକୁ ଚେଷ୍ଟା କରିବି । କ'ଣ କହିବ ମା' ? ମା' କିନ୍ତୁ ନିରୁତ୍ତର ଥିଲା ।

ଶାଶୂଘରେ ରହିରହି ମନେପଡ଼େ ମା । ମା'ର ସେଇ ପଣତକାନି ଯେ ସତରେ ଆକାଶଠାରୁ ବି ଅଧିକ ପରିବ୍ୟାପ୍ତ, ଯିଏ କି ଜୀବନଯାକ ଦୁଃଖ ସାଉଁଟି ସୁଖ ଦିଏ ଏକଥା ବୁଝିପାରେ କମଳିନୀ । ସେ ଭାବେ ନିଜ ଛୁଆଟିକୁ ସେ କେତେ ମାଡ଼, ଗାଳି ଦେଉଛି ହେଲେ ମା' ? ସତରେ ସେ କେତେ ଉଦାର, ଶାନ୍ତ, ନମ୍ର ଆଉ ବିଶାଳ ! କେତେକେତେ ଅପରାଧରେ ମା' ତାକୁ କ୍ଷମା ଦିଏ । ମାଡ଼ ତ ଦୂରର କଥା କେବେ ବଡ଼ ପାଟିରେ ଗାଳିଦେବା ଜାଣିନାହିଁ ମା' । ମା' ତୁ ଏମିତି କେମିତି ହେଲୁ ? ସେତେବେଳେ କ'ଣ ସବୁ ମା' ଏମିତି ଥିଲେ ? ମନେପଡ଼ିଯାଏ ମା'ର ଛୋଟିଏ ଇଚ୍ଛାଟି ଯାହାକି ପୂରଣ କରିବାର ସଂକଳ୍ପ କରିଛି କମଳିନୀ ।

ସେଥର ଘରକୁ ଗଲା ବେଳେ ସେ ଅନୁରୋଧ କଲା ଶୁଭେନ୍ଦୁକୁ ମୋର କଥାଟାଏ ରଖିବ ? ବାହାଘରର ଏତେବର୍ଷ ପରେ ଶୁଭେନ୍ଦୁ ଆଶ୍ଚର୍ଯ୍ୟ ହେଲେ କମଳିନୀ କଥା ଶୁଣି । କେବେ କିଛି ମାଗିନଥିବା ତାଙ୍କର ସ୍ତ୍ରୀ ଆଜି କ'ଣ ଚାହୁଁଛନ୍ତି ? ସବୁ ଝଡ଼ଝଞ୍ଜାକୁ ମଥାପାତି ସହିଥିବା ମୋ ମା'କୁ ଥରେ ପୁରୀ ନେଇ ଜଗନ୍ନାଥଙ୍କୁ ଦେଖାଇ ଆଣିପାରିବ ?

ପୁରୀ ମନ୍ଦିରର ଅସମ୍ଭବ ଗହଳି ଭିତରେ ଅଣନିଶ୍ୱାସୀ ହୋଇପଡୁଥାଏ କମଳିନୀ । ନିଜ ଛୁଆଟିକୁ ସ୍ୱାମୀଙ୍କ ପାଖରେ ଛାଡ଼ି ସେ ମା'ର ହାତ ଟାଣିଟାଣି ଭିଡ଼ ଠେଲି ଆଗେଇ ଚାଲିଲା । ଠିକ୍ ତିନିମୂର୍ତ୍ତିଙ୍କ ଆଗରେ ମା'କୁ ପହଞ୍ଚାଇ ସେ କାହାକୁ ଚାହିଁବ ବୁଝିପାରିଲାନି, ଠାକୁର ଝାପ୍‌ସା ଦିଶୁଥିଲେ, ମା'ର ଲୁହବତୁରା ମୁହଁଟି ହିଁ ସ୍ପଷ୍ଟ ଦେଖାଯାଉଥିଲା ତାକୁ । ଦୁଇ ଉଜ୍ଜ୍ୱଳ ଆଖିରେ ମା' ନିର୍ନିମେଷ ନୟନରେ ଚାହିଁ ରହିଥିଲା ରତ୍ନ ସିଂହାସନର ଚତୁର୍ଦ୍ଧାମୂର୍ତ୍ତିଙ୍କୁ । ଜଗାର ଆୟତ ଆଖି ଆଉ ମା'ର ଦୁଇ ଆଖିର ସେଇ ମହାମିଳନର ସାକ୍ଷୀ ଥିଲା କମଳିନୀ । ଜୀବନ ତାର ଧନ୍ୟ ହୋଇ ଯାଇଥିଲା । ମା' ଆଖିରୁ ବହିଯାଉଥିଲା ଧାରଧାର ଲୁହ । ପଣ୍ଡାଟିଏ ମୁଠାଏ ତୁଳସୀ ଓ ଦୟଣା ମା'ର ହାତକୁ ବଢ଼ାଇ ଦେଲେ । ଥର ଥର ହାତରେ ମା' ଖୋଲିଲା ସଯତ୍ନେ ସାଇତା ତାର ଗଣ୍ଠିପକା ରୁମାଲକୁ । ମଇଳା

ଶହେଟଙ୍କା ନୋଟଟାଏ ବଢ଼ାଇ ଦେଲା ପଣ୍ଡାଙ୍କ ହାତକୁ । ଲମ୍ୱ ହୋଇ ମା' ତଳେ ଶୋଇପଡ଼ିଲା । କମଳିନୀ ବ୍ୟସ୍ତ ହୋଇ ପଡ଼ି ମା'କୁ ଉଠାଇବାକୁ ଚେଷ୍ଟା କଲା, ହେଲେ ମା' ଉଠିଲା ନିଜେନିଜେ ଆସ୍ତେ କରି । ମା' ମୁହଁ ପ୍ରଫୁଲ୍ଲ ଦିଶୁଥିଲା । ତୋଫା ଜହ୍ନପରି ଝଟକୁ ଥିଲା । ବର୍ଷାପରର ଆକାଶ ପରି ମା' ନିର୍ମଳ ଦିଶୁଥିଲା । କଷ୍ଟରେ ଭିଡ଼ରୁ ବାହାରି ସେମାନେ ଲକ୍ଷ୍ମୀମନ୍ଦିର, ବିମଳା ମନ୍ଦିର, ହନୁମାନ, ଶିବ, ପତିତପାବନ, ଗଣେଶ, କଳ୍ପବଟ ଆଦି ସବୁ ଦେଖିସାରିଲେ । ମା'ର ହାତ ଧରି ଧରି ନେଲା କମଳିନୀ କୋଇଲି ବୈକୁଣ୍ଠକୁ । ମା' କିଣିଲା ତା' ନାତିପାଇଁ ଗୋଟାଏ ଢ଼େଉଁରିଆ । ଯେଉଁଥିରେ ଠାକୁରଙ୍କର ପାତାଳଗାମୀ ହୋଇଥିବା ସ୍ଥାନର ମାଟି ସହ ମା'ର ମୁଠାମୁଠା ବିଶ୍ୱାସ ମିଶି ରହିଥିଲା । ସମୁଦ୍ରର ନୀଳ ଲହରୀ ମାଳାରୁ ଲୁଣିପାଣି ମୁଣ୍ଡରେ ଛିଞ୍ଚିଛିଞ୍ଚି ମା' ଆଖିରେ ଲହୁ ଧାର ବି ସମୁଦ୍ର ପାଣିର ଉତ୍ତାଳ ତରଙ୍ଗରେ ମିଶିଯାଉଥିଲା । ବହୁଦିନ ପରେ କମଳିନୀ ଅନୁଭବ କରୁଥିଲା ସେଇ ପିଲାବେଳର ମା'ଟା ଯେମିତି ଫେରି ଆସିଛି । ଯିଏ କି ଦୁଃଖରେ ନ କାନ୍ଦି ଖୁସିରେ କାନ୍ଦେ ! ମା'ର ମୁହଁଟା ପୃଥିବୀର ସର୍ବଶ୍ରେଷ୍ଠ ସୁନ୍ଦରୀଠାରୁ ବି ଅଧିକ ସୁନ୍ଦର ଦିଶୁଥିଲା । କେମିତି ଏକ ଅଦ୍ଭୁତ ପ୍ରଶାନ୍ତିରେ ଭରି ଯାଉଥିଲା ଜଗାକୁ ଦେଖି ମା' । ମନ ପୂରି ଯାଇଥିବା ବେଳେ ମା'ର ଖୁସିରେ ସେ ବି ଆତ୍ମହରା ହୋଇ ଉଠୁଥିଲା । ତାର ଅଭାବୀ ସଂସାରର ସବୁ ଅଭାବ ଭିତରେ ବି ସେ ତା' ମା'ର ଏକମାତ୍ର ଇଚ୍ଛାଟିକୁ ଯେ ପୂରଣ କରିପାରିଛି ଏହା ଭାବି ଆତ୍ମା ତା'ର ପରିତୃପ୍ତ ହୋଇ ଉଠୁଥିଲା ।

'ଅଭଡ଼ା' ପାଇଁ ଯାଇଥିଲା ସ୍ୱାମୀ ତା'ର । ମା'ର ଦୁଇ ଆଖିରୁ ଝରିଆସୁଥିବା ଆଶୀର୍ବାଦ ଯେ ଜୀବନର ବନ୍ଧୁର ରାସ୍ତାରେ ଚାଲିବାକୁ ତାକୁ ଅଜସ୍ର ଶକ୍ତି ଯୋଗାଇବ ଏଥିରେ ତାର ସନ୍ଦେହ ନଥିଲା । ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ହାତ ଯୋଡୁଯୋଡୁ ସେ କହିଉଠିଲା ଲୀଳାମୟ ହେ ସବୁ ତୁମରି ଲୀଳା !



# ବାଲିଘର

କଥା କହୁକହୁ କଣ୍ଠ ତାଙ୍କର ରୁଦ୍ଧ ହୋଇ ଉଠୁଥିଲା । କୋହରେ ଭାଙ୍ଗି ପଡୁଥିଲା ଛାତି ଏଇ ଯେମିତି ସଙ୍ଗେ ସଙ୍ଗେ ଟପ୍‌ଟପ୍ ହୋଇ ଲୁହ କେଇବୁନ୍ଦା ଖସିପଡ଼ିବ ଆଖି ପରଦା ସେପଟୁ । ଅଥଚ ସେ ଚାପିନେଇ ପିଇଯିବାକୁ ଚାହୁଁଥିଲେ ଦୁଃଖ ଆଉ କ୍ଷୋଭର ଅନନ୍ତ ଜ୍ୱାଳାକୁ । ପୁଅପିଲା ଆଖିରେ ଲୁହ ଦେଖିଲେ ଦୁନିଆ ହସିବ, କହିବ ମାଇଚିଆ । ସତକଥା ତ ! ସେ ମାଇଚିଆ ନ ହେଲେ ବି ଦୁର୍ବଳ ହୃଦୟର ସଙ୍କୁଚିତ, ସନ୍ତ୍ରସ୍ତ, ସରଳ, ନିରୀହ ମେଣ୍ଢାଛୁଆ ପରି ପୁରୁଷ ପିଲା ବୋଲିତ ନିଜ ଶରୀରର, ଆତ୍ମାର, ଅର୍ଦ୍ଧେକ ବୋଲି ଯାହାକୁ ଅଗ୍ନି ଚର୍ତୁଦିଗରେ ବୁଲି ଦଶଦିଗପାଳ ସାକ୍ଷୀ ରଖି ଜୀବନସାରା ସାଥି ହେବାର ଶପଥ କରି ଘରକୁ ଆଣିଥିଲେ, ସ୍ତ୍ରୀ' ବୋଲି ସମାଜ ଆଖିରେ ପରିଚିତ କରିଥିଲେ, ସେ ଆଜକୁ ବର୍ଷବର୍ଷ ଧରି କୋର୍ଟର କାଠଗଡ଼ାରେ ଠିଆ କରି ଦଣ୍ଡ ଦେଉଛି ।

ରୁନୁ ସହ ବାହାଘର ଠିକ୍ ହେଲାବେଳେ ଘରେ ସମସ୍ତେ କେତେ ଖୁସି ହୋଇନଥିଲେ ସତେ ! ଇଂଜିନିୟର ପୁଅକୁ ଏମ୍.ବି.ଏ ପାଶ୍ କରିଥିବା ସୁନ୍ଦରୀ, ଉଚ୍ଚଶିକ୍ଷିତା ଝିଅଟିଏ । ବେଶ୍ ମାନିବ । ତାଙ୍କ ସବୁଦିନ ଇଚ୍ଛାଥିଲା ସୁନ୍ଦରୀ, ଶିକ୍ଷିତା, ଘରକରଣା ଝିଅଟିଏ । ପ୍ରଥମ ଦୁଇଟିକୁ ଦେଖି ସେ ଓ ତାଙ୍କ ଘରଲୋକ ଖୁସିରେ ବିବାହ ପାଇଁ ସମ୍ମତି ଦେଇଥିଲେ । ମାତ୍ର ତୃତୀୟ ଗୁଣଟି ଗୋଟିଏ ଝିଅ ପାଖରେ ଅଛି କି ନାହିଁ ବିବାହ ଆଗରୁ କିଏ ବା ଜାଣିପାରିବ ? ଝିଅଟିଏ ବୋହୂ ହେବା ପରେ ଚାହିଁଲେ ଘର ଯୋଡ଼ିପାରେବ । ଚାହିଁଲେ ବି ଘର ଭାଙ୍ଗି ଖଣ୍ଡଖଣ୍ଡ କରିଦେବ । ଆଜିର ନାରୀ ବେଶ୍ ସବଳ । ଆଦୌ ଦୁର୍ବଳ ନୁହେଁ ।

ବିବାହ ବାସରର ପ୍ରଥମରାତିରୁ ହିଁ ରୁନୁର ପ୍ରକୃତି ସ୍ୱରୂପ ଜଣାପଡ଼ି ଯାଇଥିଲା । ଇଂଜିନିୟର ବାପାଙ୍କର ଅଲିଅଳି ଶିକ୍ଷିତା ସୁନ୍ଦରୀ ଝିଅ । ସେ କିଛି କାମ ଜାଣେନା । ତେଣୁ ଶାଶୂଘରର ସମସ୍ତେ ସେଇଆ ଭାବି ତାକୁ ଯୋଡ଼ହସ୍ତ ହୋଇ ରହିଲେ । ଆଠଟା ନ ବାଜିଲେ ତାର ନିଦ ଭାଙ୍ଗେନା । ସେତେବେଳେକୁ ତାଙ୍କ ବାପା

ଅଫିସ୍, ଭାଇ ଦୁହେଁ କଲେଜ, ଭଉଣୀ ସ୍କୁଲ ଯିବାକୁ ପ୍ରସ୍ତୁତ ହେବା ବେଳେ ବୋଉ ବିଚାରୀ ରୋଷେଇ ଘରେ ନୟାନ୍ତ ହୋଇ ପଡୁଥିବାର ଦେଖି ତାଙ୍କୁ ଭାରି ବ୍ୟସ୍ତ ଲାଗେ । ସେ ଖାଲି ଏପଟସେପଟ ହେଉଥାନ୍ତି । ମାତ୍ର ପ୍ରାଣପ୍ରିୟା ପତ୍ନୀ ତାଙ୍କର ଉଠି ମୁଣ୍ଡରେ ତେଲ ମାଲିସ୍ କରି ପୁଣି ଅଧଘଣ୍ଟା ବସି ସାମ୍ପୋ କରି ଏହିପରି ଗାଧୋଇ ପାଧୋଇ ସଜ ପେଣ୍ଟି ହୋଇ ଖୋଜନ୍ତି ଚା' ଆଉ ସେତକ ମଧ ବୋଉକୁ ଦେବାକୁ ହୁଏ । ଶାନ୍ତଶିଷ୍ଟ ସ୍ୱାମୀଟିଏ ସେ । ମାତ୍ର ଏମିତି କେତେଦିନ ସହିବେ ସେ । ଯେତେଥର ସେ କିଛି କହିବାକୁ ଚାହାଁନ୍ତି ବୋଉ ତାଙ୍କର ହାତ, ଓଠ ଧରି ବୁଝାଏ । ବାପାରେ ଏତେଦିନ ଯାଏ ତ ମୁଁ କରି ଆସୁଥିଲି, ତୁ କାହିଁକି ଏତେ ବ୍ୟସ୍ତ ହେଉଛୁ ? ସେ ବଡ଼ଲୋକ ଘରର ଝିଅ, କାମ କରି ଶିଖିନି । ବଳେ କାନ୍ଧରେ ଜୁଆଳି ପଡ଼ିଲେ ଶିଖିଯିବନି ? ପିଲା ଛୁଆଟିଏ ହୋଇଯାଉ । ସେ ନିଶ୍ଚୟ ସଂସାର ଜଞ୍ଜାଳ କଥା ବୁଝିବ । ସେ ବାଧ୍ୟରେ ଅଫିସ୍ ଯାଆନ୍ତି ଭାରି ମନ ନେଇ । ଖାଇବା ସମୟରେ ବୋଉ ଯାଇ ବୋହୂଙ୍କୁ ସସମ୍ମାନେ ଡ଼ାକି, ଗେହ୍ଲରେ ପାଖରେ ବସି ଖୁଆଏ । ଅଦ୍ଭୁତ ଝିଅଟା କେଜାଣି ସବୁଥିରେ ତା'ର ବିରକ୍ତି, ଅଶାନ୍ତି, ମୁହଁ ଛିଞ୍ଚଡ଼ାକଥା । ଖାଇବା ମନକୁ ନ ପାଇଲେ ଉଠି ଯାଇ ମୁହଁମାଡ଼ି ଶୋଇବ ଯେ ଡ଼ାକିଡ଼ାକି କବାଟ ଖୋଲିବନି । ବହୁତ ଚେଷ୍ଟାକରି ଦିନେ ସେ ମୁହଁ ଖୋଲିଲେ । ପ୍ରକୃତ କଥା କ'ଣ ପଚାରିଲେ ସ୍ତ୍ରୀଙ୍କୁ ! ସଫାକଥା ସ୍ତ୍ରୀଙ୍କର । ଏଇ ଲୋ ଷ୍ଟାଟସ୍ ଲୋକମାନଙ୍କ ସହ ଶାଶୁଘରେ ସେ ରହିବାକୁ ଚାହାନ୍ତିନାହିଁ । ତାଙ୍କୁ ଅଣନିଶ୍ୱାସୀ ଲାଗୁଛି । ସେ ଚାହାନ୍ତି ସ୍ୱାଧୀନତା । କିନ୍ତୁ ଏକଥା କିପରି ସମ୍ଭବ ? ଘରର ବଡ଼ପୁଅ । ସବୁ ଦାୟିତ୍ୱ ଯେ ତାଙ୍କର । ଯେଉଁ ବାପା, ମା' କେତେ ସ୍ୱପ୍ନ ଦେଖି ତାଙ୍କୁ ପେଟରୁ କାଟି ମଣିଷ କଲେ । ନିଜେ ଭଲ ଗଣ୍ଡେ ନଖାଇ, ଭଲ ଖଣ୍ଡେ ନ ପିନ୍ଧି ତାଙ୍କୁ ଇଂଜିନିୟର କରି ସମାଜରେ ଠିଆକଲେ, ଆଜି ପର ଲାଗିଯିବା ପରେ ସେ ଡ଼େଣା ମେଲାଇ ଦୂର ଆକାଶକୁ ଉଡ଼ିଯିବେ । ଆଉ କେଉଁଠି ଯାଇ ଏକୁଟିଆ ସୁଖି ସଂସାର କରିବେ ? ସେଇ ବୁଢ଼ାବୁଢ଼ୀ ଦୁଇଟା ଆଉ ଛୋଟ ଭାଇ ଭଉଣୀମାନଙ୍କୁ ପରକରି ନିଃସହାୟ, ବେସାହାରା କରି ଜୀବନ

ସମୁଦ୍ରର ମଝିରେ ଛାଡ଼ି ସେ ଚାଲିଯିବେ ? ଛାତି ତାଙ୍କର କୁରି ହୋଇଗଲା କ'ଣ କରିବେ ସେ ?

ବୋଉ ତାଙ୍କୁ ସେଦିନ ରାଣ ପକାଇଲା । ତୁ ବୋହୂକୁ ନେଇ ବଦଳି ହୋଇ ଚାଲି ଯା । ଘରେ ଶାନ୍ତି ରହୁ । ପେନ୍‌ସନ୍ ଗଣ୍ଡାକ ତ ମିଳିବ । ଚିନ୍ତା କ'ଣ ? ମଧ୍ୟବିତ୍ତ ପରିବାରରେ ବଡ଼ବୋହୂର ଭୂମିକା ମା'ଠାରୁ କମ୍ ନୁହେଁ । ଯାହାକୁ ଗର୍ବ କରି କୂଳବଧୂର ସମ୍ମାନ ଦେଇ ବାପା ବୋଉ ଆଣିଥିଲେ ସେ ଏମ୍.ବି.ଏ. ପଢ଼ିଥିବା ଉଚ୍ଚଶିକ୍ଷିତା ଝିଅଟିଏ ହୋଇ ରହିଗଲା ସିନା, ବୋହୂ, ସ୍ତ୍ରୀ, ଭାଉଜଟିଏ ହୋଇପାରିଲାନି । ମହାପାତ୍ର ବଂଶର କୁଳମର୍ଯ୍ୟାଦାକୁ ପୁରୁଣାକାଳିଆ ମାନ୍ଧାତା ଅମଳର କହି ନାକ ଟେକିଲା । ତା'ର ଗର୍ବ, ଅହଙ୍କାର, ଅଭିମାନ ତାକୁ କେବେହେଲେ ସ୍ନେହ, ମମତା, ପ୍ରେମ ଓ ଭଲପାଇବାର ପରିଭାଷା ଜାଣିବାକୁ ଦେଲାନି । ମାସକୁ ହଜାର ହଜାର ଟଙ୍କାର ଶାଢ଼ୀ, ଗହଣା, କସ୍‌ମେଟିକ୍‌ସ ଦରକାର । ହୋଟେଲରେ ଖାଇବା, ପାର୍ଟି, ପିକ୍‌ନିକ୍ ଦରକାର । ମାତ୍ର ସେ ତ ସଧାସିଧା ଲୋକଟିଏ ଏସବୁ ତ ସେ ଭାବି ନଥିଲେ ? କିପରି ଓଲଟିଗଲା ପୃଥିବୀ ତାଙ୍କର ? କ୍ଷଣକେ ଚୂନା ହୋଇଗଲା ତାଙ୍କର ସ୍ୱପ୍ନର ନିଳୟ । ଯାହାକୁ କେତେ ଯତ୍ନରେ ଗଢ଼ିବାକୁ ଚାହିଁଥିଲେ ସେ । ମଦ ପିଇବା, ପାର୍ଟି, ପିକ୍‌ନିକ୍ ଯିବା, ଅନ୍ୟ ନାରୀଙ୍କ ସହ ସମୟ ବିତାଇବା ଏ ସବୁ ଚଳଣିରେ ଅଭ୍ୟସ୍ତ ନହେବା କ'ଣ ତାଙ୍କର ଭୁଲ ଥିଲା ? ସମୁଦ୍ର କୂଳର ବାଲିଘର ପରି ଭାଙ୍ଗିଗଲା, ପାଣିରେ ଧୋଇଗଲା ତାଙ୍କର ସୁନ୍ଦର ଘରଟି ? ଏସବୁ ହାଇଟେଟସ୍ ତାଙ୍କ ସ୍ତ୍ରୀଙ୍କର ପସନ୍ଦ ।

ଝିଅ ଜନ୍ମପରେ ଆଉ ଗୋଟିଏ ବଡ଼ କମ୍ପାନୀରେ ଚାକିରୀ ପାଇ ସେ ଦୂରକୁ ଚାଲିଯାଇଥିଲେ । ତଥାପି ସ୍ତ୍ରୀଙ୍କର ମନପସନ୍ଦର ସ୍ୱାମୀ ସେ ହୋଇପାରେଲେନି । ପାର୍ଟି ଯିବା, ଆୟା ରଖି ଛୁଆ ପାଳିବା; କ୍ଲବ ଯିବା ଏସବୁ ତାଙ୍କ ଦ୍ୱାରା ସମ୍ଭବ ହେଲା ନାହିଁ । ସବୁଠୁ ବଡ଼ କଥା ହେଲା ତାଙ୍କ ବାପା ମା', ଭାଇ-ଭଉଣୀ ସବୁ ହାଇସୋସାଇଟିର ହୋଇ ନଥିବାରୁ ସେମାନେ ତାଙ୍କ ଘରକୁ ଆସି ପାରିବେନି କିମ୍ବା ସେ ମଧ୍ୟ ଘରକୁ କୌଣସି ଭାବରେ ଟଙ୍କା ପଇସା

ଦେଇପାରିବେନି ର ହୁକୁମ୍ ହେଲା । ଯାହାତ ଦରମା ଘର ଚଳେଇବାକୁ ଅଣ୍ଟୁନି ଆଉ ଫାଲତୁରେ ଏମାନଙ୍କୁ ପୋଷି ଲାଭ କ'ଣ ? ହଁ,... ସ୍ତ୍ରୀଙ୍କର ବାପା, ମା' ଭାଉ ଭଉଣୀ ଏମାନଙ୍କ କଥା ଅଲଗା । ଦାମୀକିଆ ଗିଫ୍ଟ ପୁଣି ଏ:ସି କାରରେ ଯିବା ଆସିବା ସହ ଆସିଲେ ବି ସେମାନେ ଘରେ ରହନ୍ତି ନାହିଁ । ହୋଟେଲରେ ରହନ୍ତି । ଅଗତ୍ୟା ସ୍ତ୍ରୀଙ୍କର ପ୍ରେଷ୍ଟିଜ୍ ପାଇଁ ତାଙ୍କୁ ହିଁ ହୋଟେଲ୍‌ରେ ରହିବା, ଖାଇବା ଆଜି ବିଲ ଦେବାକୁ ହୁଏ । ସେ ତ ନାରୀଟିଏ ନୁହଁନ୍ତି ଯେ ସୀତା ହୋଇ ପୃଥିବୀ ମା'କୁ ଫାଟି ଯା' କହିବେ । ଏ ସମାଜରେ ପୁରୁଷ ନିର୍ଯ୍ୟାତନା ଶବ୍ଦ କେହି ଶୁଣିନଥିବେ । ତେଣୁ ଆଇନ୍ ତ ସ୍ତ୍ରୀଲୋକଙ୍କ ସପକ୍ଷରେ ହୋଇଛି । ସାମାଜିକ ବ୍ୟବସ୍ଥା ବି ଏପରି ଯେ ତାଙ୍କୁ କେହି ବିଶ୍ୱାସ କରିବେନି । କହିବେ କାହାକୁ କହିଲେ କୂଳକୁଟୁମ୍ବଙ୍କୁ ଲାଜ, ନ କହିଲେ କୂଳ ଭାସିଯାଉଛି ! ଅଫିସ୍‌ରୁ ଫେରିବାକୁ ଇଚ୍ଛା ହୁଏନି । କୌଣସି କାମରେ ମନ ଲାଗେନି । ସବୁବେଳେ ଚିନ୍ତା, ଚିନ୍ତା, ଚିନ୍ତା । କେତେ ଶାନ୍ତଶିଷ୍ଟ ଲୋକଟିଏ, ଶୁଖି କଳାକାଠ ପଡ଼ିଗଲେନି । କ'ଣ ତାଙ୍କର ବୁଢ଼ା ବାପା, ମା'ଙ୍କର ଦୋଷ ଥିଲା । ସୁନ୍ଦରୀ ଶିକ୍ଷିତା ବୋହୂଟିଏ କରିବା କ'ଣ ଭୁଲ୍ ? ଯାହାର ଶାସ୍ତି ତାଙ୍କୁ ଯୁଗପତ୍ ମିଳୁଛି ? ଦିନେ ସେ ମୁହଁ ଖୋଲିଲେ । ଝିଅ ସ୍କୁଲ ଗଲାଣି । ତା' ଉପରେ ଖରାପ ପ୍ରଭାବ ପଡ଼ିବ । ଏସବୁ ପ୍ରହସନ ବନ୍ଦକର । ମୋ ବାପା, ମା' ଭାଇଭଉଣୀଙ୍କ ଆଖିରେ ଲୁହ ଦେଇ ଏମିତି ମୁଁ ତୁମକଥାରେ ଚାଲିପାରିବିନି । ବାସ୍... ଆରମ୍ଭ ହେଲା ମହାଭାରତ । ଦିନ ଦିନର ଅଖିଆଅପିଆ ରାଗ, ଅଭିମାନ, ଘରଛାଡ଼ିବା ଆଉ ଓକିଲ ନୋଟିସ୍ !

ବଜ୍ରକଣ୍ଠରେ ପ୍ରାଣପ୍ରିୟା ପତ୍ନୀ ତାଙ୍କର ଜଜ୍‌ଙ୍କ ସାମ୍ନାରେ ଘୋଷଣ କରୁଛନ୍ତି ଏପରି ଅଯୋଗ୍ୟ ସ୍ୱାମୀ ମୋର ଆବଶ୍ୟକ ନାହିଁ । ଯିଏ ମୋର ଇଚ୍ଛାକୁ ସମ୍ମାନ ଦେଇ ଜାଣେନା, ମୋର ଚାହିଦା ମେଣ୍ଟାଇ ପାରେନାଁ, ସେପରି ସ୍ୱାମୀ ଥାଇ ଲାଭ କ'ଣ ? ମୋର, ଝିଅର ମେଣ୍ଟେନାନ୍‌ସ୍ ପାଇଁ ଦରକାର ଦଶ ଲକ୍ଷ ଟଙ୍କା ଓ ଡ଼ାଇଭୋର୍ସ । କୋର୍ଟ ପରିସର ଲୋକାରଣ୍ୟ, ଜଜ୍ ସ୍ତବ୍ଧ ! ମା'ରେ ଘରଟିଏ ଭାଙ୍ଗିଦେବା ଖୁବ୍ ସହଜ, କିନ୍ତୁ ଯୋଡ଼ିବା କଷ୍ଟ ଆଉଟିକେ ଚିନ୍ତା କର ।

ଲୋକ ଅଦାଲତରେ ମ୍ରିୟମାଣ ହୋଇ କହୁଛନ୍ତି ନିଜେ ଜଜ୍ ସାହେବ । ମାତ୍ର ପତ୍ନୀ କିଛି ବୁଝିବାକୁ ପ୍ରସ୍ତୁତ ନୁହଁନ୍ତି । ଆଧୁନିକ ନାରୀ ସେ । ଏବେ ଚାକରୀ ବି କଲେଣି । ସାମାଜିକ ବ୍ୟବସ୍ଥାକୁ ଭୃକ୍ଷେପ କରନ୍ତି ନାହିଁ । ଶଂଖା, ସିନ୍ଦୂର କେବଳ ମାତ୍ର ଫେସନ । ଚାହିଁଲେ ପିନ୍ଧିବେ, ନହେଲେ ନାହିଁ । ସ୍ୱାମୀ କେବଳ ଯୌନ ଆବଶ୍ୟକତା ଓ ଛୁଆର ବାପା ପରିଚୟ ପାଇଁ ଦରକାର ବାସ୍ । ସ୍ୱାମୀ-ସ୍ତ୍ରୀର ସଂପର୍କ କେବଳ ବୋଗସ କଥା, ସବୁଠୁ ବଡ଼ (ଭଲ ଭାବରେ ବଞ୍ଚିବା ପାଇଁ) ଆବଶ୍ୟକତା ହେଉଛି ଟଙ୍କା ଆଉ କିଛି ନୁହେଁ । ଜଜ୍ ଆପୋଷ ଆଲୋଚନା ସମାଧାନ ଚାହିଁଥିଲେ ହେଲା ନାହିଁ ।

କୋର୍ଟର ଆଗ ତାରିଖରେ ଭାଗ୍ୟର ଫଇସଲା ହେବ ସ୍ୱାମୀଙ୍କର । ଏବେ ବି ଅବୁଝା, ଜିଦିଆ ସ୍ତ୍ରୀର ବାଟ ଚାହିଁ ବସିଛନ୍ତି । ଏବେ ତ ଭାଇ ଭଉଣୀ ମଣିଷ ହୋଇଗଲେଣି । ଆଉ କିଛି ବର୍ତ୍ତନ ନାହିଁ । କାଳେ ଅଭିମାନ ଭାଙ୍ଗି ପୁଣି ଗଢ଼ି ବସିବ ଘରଟିଏ । ଯେଉଁଠି ସେମାନେ ସୁଖିଦାମ୍ପତ୍ୟ ଜୀବନ ବିତାଇବେ । ଯେଉଁଠି ଟଙ୍କା, ପଇସା, ଷ୍ଟାଟସ୍‌ର ଗର୍ବ ନଥିବ । ସ୍ୱାମୀ-ସ୍ତ୍ରୀ ସଂପର୍କରେ କେବଳ ଥିବ ପ୍ରେମ- ଭଲପାଇବା, ବୁଝାମଣାର ନିଛଳ ପ୍ରତିଛବିଟିଏ । ଆଃ.... ଝିଅ ତାଙ୍କର କେତେ ବଡ଼ ହୋଇଯିବଣି । ପିତାର ଆତ୍ମାଟା ବିକଳରେ କେତେ ଛଟପଟ ହୁଏ । ବର୍ଷବର୍ଷ ଧରି ନଅବର୍ଷ ଧରି ସେ ଅପେକ୍ଷା କରି ବସିଛନ୍ତି ପାପା, ପାପା......... ମୁଁ ଆସିଛି । ଏଇ.........ଶୁଣୁଛ..........ମୁଁ ଫେରିଆସିଛି ତାଙ୍କ ଦୁଇଟି ପାଇଁ । ଉତ୍‌କୀର୍ଣ୍ଣ ହୋଇ ରହିଛନ୍ତି ସେଇ ସୁନ୍ଦର ସକାଳଟି ପାଇଁ । ସେ ଜାଣନ୍ତିନି ସେ ଘରଟା ବାଲିଘର ହୋଇ ସମୁଦ୍ର ଲହଡ଼ିରେ ଭାସିଯିବ କି ନାହିଁ ।

ଅଭିଶପ୍ତ ଆୟୁଷ ନେଇ ଦୁଃଖମାନଙ୍କୁ ଆପଣେଇ ନେବା ପରେ ସ୍ୱପ୍ନ ହିଁ ତ ବଞ୍ଚିବାର ସାହାରା ।



# ଅଧାଲେଖା ଇତିହାସ

ନିଜ ଧୂନ୍‌ରେ ନିଜେ ବ୍ୟସ୍ତ ଖିଆଲିଆ ମଣିଷଟି ହୁଏତ ହୋଇପାରନ୍ତି ମହାଜ୍ଞାନୀ, ମାତ୍ର ସମ୍ପୂର୍ଣ୍ଣ ଅଜ୍ଞ ତେଲଲୁଣ ସଂସାରର ଜଞ୍ଜାଳିଆ ବୁଦ୍ଧିରେ । ନିରୀହ ଶିଶୁର ଚପଳମନ ନେଇ ଦୁନିଆକୁ ଦୃଷ୍ଟି ପକାଇଲେ ତାଙ୍କୁ ଦିଶେ ଇନ୍ଦ୍ରଧନୁର ରଙ୍ଗମଖା ମହାର୍ଘଜୀବନ । କାନ୍‌ଭାସ୍, ରଙ୍ଗ ତୁଳୀକୁ ନେଇ ବ୍ୟସ୍ତ ମନ, ହାତ ଓ ଆଖି । ଚିତ୍ରକରଟି ବୁଝେନା ବଞ୍ଚିବାର ଆବଶ୍ୟକତା, କେବଳମାତ୍ର ରଙ୍ଗତୁଳୀର ବ୍ୟତିବ୍ୟସ୍ତ ଅଙ୍କାବଙ୍କାଗାରର ସମାହାରରେ ଭୋକକୁ ଖାଦ୍ୟ, ଦେହକୁ ବସ୍ତ୍ର, ମୁଣ୍ଡ ଉପରେ ଛାତ, ରୋଗକୁ ଔଷଧ କଥା ମନେପକାଇ ପାରେନା ! ତାକୁ ଖାଲି ଦିଶିଯାଏ ବେଳାଭୂମିର ବସ୍ତୀର୍ଣ୍ଣ ବାଲୁକାରାଶି, ସମୁଦ୍ରର ଫେନିଳ ଜଳରେ ଅଯୁତ ଲହଡ଼ିର ନୀଳିମାର ରଙ୍ଗ, ତା' ଭିତରେ ପୁଣି ସପ୍ତରଙ୍ଗରେ ରଙ୍ଗୀନ ଦୁନିଆ । କେବେକେବେ ଆକାଶର ବିଶାଳବକ୍ଷରେ ଉଡ଼ିଯାଉଥିବା ନାମହୀନ ପକ୍ଷୀଙ୍କ ଠିକଣା ଖୋଜିବା ଖିଆଲରେ ଡୁବି ଯାଉଯାଉ ମନ ତା'ର ଖୋଜେ ପ୍ରିୟ କାନ୍‌ଭାସ୍‌ଟିକୁ ଯିଏ ହୁଏତ ସେଇ ହଜିଲା ବିହଙ୍ଗଙ୍କର ଠିକଣା ଖୋଜି ଦେଇପାରେ । ସକାଳ, ସନ୍ଧ୍ୟା ଓ ଗୋଧୂଳି ଲଗ୍ନରେ ସୂର୍ଯ୍ୟର ଆଭା । ଜଙ୍ଗଲର ସାବୁଜା ଗଛଲତା ଓଃ... କି ସୁନ୍ଦର ଏଇ ପୃଥିବୀ । ମନଖାଲି ଦଉଡ଼ିବୁଲେ ସେଇମାନଙ୍କ ଭିତରେ । ଜୀବନଟା କି ମଧୁର ସତେ ! ଛୋଟ ଏଇ ଆୟୁଷର ସୀମିତ ସମୟ ଭିତରେ ଏତେ ସବୁ ଚିତ୍ର, ପୁଣି ଚିତ୍ରକରର ଏକାନ୍ତ ଭାବନାକୁ ନେଇ ଆହୁରି ଅନେକ । ତାକୁ ଲାଗେ ଏ ପୃଥିବୀଟା ଏକ ଚିତ୍ରଶାଳା । ଯେଉଁ ଆଡ଼େ ଚାହିଁବ ଖାଲି ପେଣ୍ଟିଂ, ପେଣ୍ଟିଂ, ଆଉ ପେଣ୍ଟିଂ । ଚିତ୍ରକର ତା'ର ଅସ୍ତିତ୍ୱକୁ ହରେଇ ବସନ୍ତି ସେଇମାନଙ୍କ ଭିତରେ । ତାହା ହିଁ ତାଙ୍କୁ ଦିଏ ଅନନ୍ୟ ଅନୁଭୂତି । ଜୀବନର ଥିଓରି ତାଙ୍କ ସ୍ୱପ୍ନମୟ ପ୍ରାଣରୁ ଆନନ୍ଦମୟ ଭାବେ ଉଦ୍ଭୁତ ହୁଏ । ମଗ୍ନ ଶିଳ୍ପୀଟିଏ, ସେ କେବଳ ବ୍ୟସ୍ତ ତାଙ୍କ ଶିଳ୍ପକୁ ନେଇ । ଚିରଦିନ ଶାନ୍ତଶିଷ୍ଟ ଅବୁଝା କବିର ଖିଆଲି ପ୍ରାଣଟି କାହାପାଇଁ କିଛି ଭାବିପାରେନା' ନିଜ ପାଇଁ ବି । କେବଳ ଅଏଲ୍ କଲର, ୱାଟର କଲର, ନାନା

ରଙ୍ଗର ତୁଳୀ, କାଗଜ, କାନ୍‌ଭାସ୍‌, ପିକାଶୋ, ହୁସେନ୍‌ଙ୍କୁ ତା'ର ଛାତିର ଗଭୀରତାରେ ରଖିଜାଣେ । ବାସ୍ ! ସେ ଭଲପାଏ ଧରିତ୍ରୀ ମା'ର ପ୍ରତ୍ୟେକଟି ଚିଜ୍‌କୁ । ସେମାନଙ୍କୁ ରୂପଦିଏ ଗୀତ, କବିତାରେ, ତୁଳୀ ଓ ରଙ୍ଗରେ ।

ସେ ଦୁନିଆ ବଢ଼ଦାଣ୍ଡରେ ପ୍ରତିଷ୍ଠିତ କବି ବା ଚିତ୍ରକରଟିଏ ହୋଇପାରିଥାନ୍ତା ପୁରସ୍କାରରେ ପୋତି ହୋଇ ଆବକ୍ଷ ପୁଷ୍ପମଣ୍ଡିତ ହେଉଥାନ୍ତା, ମାତ୍ର ସେଥିକୁ ତା'ର ନଜର ନାହିଁ ବା ସ୍ପୃହା ବି ନାହିଁ । ସେ କବି ହେବାକୁ ଇଚ୍ଛା କରି କବିତା ଲେଖେନା, ଚିତ୍ରକର ହେବାର ନିଶା ବି ତାଙ୍କୁ ଘାରି ନଥିଲା । ମନର ନିରୁଦ୍‌ବେଗ ଉତ୍ତାଳ ତରଙ୍ଗକୁ ବନ୍ଧ ବାନ୍ଧି ନ ପାରି ସେ ଖୋଜନ୍ତି କାଗଜ ବା କାନ୍‌ଭାସ୍ ନିଜକୁ କେବଳ ପ୍ରକାଶିବା ପାଇଁ । ତେଣୁ ପୃଥିବୀଯାକର ମଣିଷମାନଙ୍କ ପାଖରେ ନିଜର ସ୍ୱତନ୍ତ୍ର ଅଭିବ୍ୟକ୍ତି ଗୁଡ଼ାଙ୍କୁ ଲଙ୍ଗଳା କରି ବିକ୍ରି କରିବାର ପ୍ରୟାସ ତାଙ୍କର ଆଦୌ ନଥିଲା । ଜୀବନକୁ ବ୍ୟବଚ୍ଛେଦ କରି ଯାହା କିଛି ଅବଶିଷ୍ଟାଂଶ ରହୁଥିଲା ତାହା ହିଁ ତାଙ୍କର କଳାକୃତି ବହନ କରେ । ଏଇ ନିଆରା ମଣିଷଟି ତୁତ ପୋକ ପରି ନିଜ ଖୋପ ଭିତରେ ନରମରେଶମ ସୂତା ବୁଣିବାରେ ବ୍ୟସ୍ତ । ଅପ୍ରକାଶିତ ରାଶିରାଶି କବିତା, ଗଦାଗଦା ପେଣ୍ଟିଂ, କାହାଣୀ, ରାତିରାତି ରୋମାଣ୍ଟିକ ଅନୁଭବ ବା ଭୀକାରୁଣୀଟିର ସ୍ମୃତି ଅଥବା ଅନ୍ୟାନ୍ୟ ଜୀବନ ଅଙ୍କର ଭଗ୍ନାଂଶ ବହନ କରେ ତା'ରି ଭିତରେ । ଆନନ୍ଦରେ ଅଣନିଶ୍ୱାସୀ ହେଉଥିବା ସନ୍ୟାସୀଟିଏ ସେ । ପ୍ରାଣରେ ବ୍ୟାଥା ବା ବେଦନାର ସଂଘାତରେ ଯାହାକିଛି ଭୃଣହୋଇ ସଞ୍ଚରୁଥିଲା ତାହାକୁ ହିଁ ସେ ଜନ୍ମ ଦେଉଥିଲେ ତୁଳୀ ବା ଲେଖନୀମୂନରେ । ମାତ୍ର ଏଇ ସ୍ୱପ୍ନଜୀବୀ ମଣିଷଟିର ପ୍ରତ୍ୟେକଟି ଇଚ୍ଛାକୁ ପୂରଣ କରୁଥିବା ବାପା ନାମକ ଲୋକଟିର ବୟସ ଯେ ଦିନକୁ ଦିନ ସରିଯାଉଛି, ସରକାରୀ ଚାକିରୀର ସମୟ ବି ସରିଆସୁଛି ଏକଥା ପ୍ରତି ତା'ର ଆଦୌ ଖିଆଲ ହିଁ ନଥିଲା ।

ବହୁ କଷ୍ଟରେ ପ୍ରଦର୍ଶନୀ ପାଇଁ ରାଜି ହୋଇ ଆୟୋଜନ କରିଥିଲେ । ମାତ୍ର ନିଜର ଚିତ୍ର ସବୁକୁ ଅନାୟାସାରେ ଅନ୍ୟକୁ ବିକ୍ରି କରିବାକୁ ତାଙ୍କର ଆତ୍ମାକୁ ଏତେ କଷ୍ଟ ହୁଏ ଯେ ସେ ବିକ୍ରି କରନ୍ତି ନାହିଁ । ବାପା ପଚାରିଲେ କହନ୍ତି, ବାପା ଆପଣ କ'ଣ ମୋତେ କେବେ ବିକ୍ରି କରି ପାରିବେ ? ମୁଁ କେମିତି ମୋ ସୃଷ୍ଟ ସନ୍ତାନମାନଙ୍କୁ

ବିକ୍ରି କରିବି ? ମୋର ଭାବନା, ମୋର ଅଯୁତ ସଂର୍ପକ ସେମାନଙ୍କ ସହ । ମୋତେ କ୍ଷମା କରନ୍ତୁ । କିଏ ଏଇ ପାଗଳ ପିଲାକୁ ବୁଝାଇବ ? ଧୀରେଧୀରେ ବାପାଙ୍କର ସମ୍ବଳ ସରିଆସୁଛି । ରିଟାୟାର୍ଡ଼ କଳାପରେ ଦରମା ଅଧା ହୋଇଗଲାଣି । ବାପା, ମା'ଙ୍କର ଇଚ୍ଛାକୁ ସମ୍ମାନ ଦେଇ ଚିତ୍ରକର ଶକୁନ୍ତଳାଙ୍କ ସହ ସଂସାର ବନ୍ଧନରେ ବାନ୍ଧିହେବାକୁ ବାଧ ହେଲେ ସିନା, କିନ୍ତୁ ସମାଧିସ୍ଥ ସନ୍ୟାସୀ ପରି ସଦା ନିଜ ସଂସାର ପ୍ରତି ଉଦାସୀନ ଓ ବୀତସ୍ପୃହ ।

ପିଲାଟିଏ ହେବାପରେ ପତ୍ନୀଙ୍କର ସହିବା ଶକ୍ତି ଉପରେ ପ୍ରଶ୍ନବାଚୀ ସୃଷ୍ଟି ହୋଇଛି । ବୁଢ଼ା ଶ୍ୱଶୁର ଘରର ଆର୍ଥିକବୋଝକୁ ଲାଘବ କରିବାକୁ ପୁଣି ଗୋଟିଏ ଚାକିରୀ କରିଛନ୍ତି । ବହୁ ବାଧବାଧକତା, ଅଭାବର ତୀବ୍ରତା, ଜଞ୍ଜାଳର ବାସ୍ତବିକତାରେ ଚିତ୍ରକର ରାଜିହେଲେ ଚାକିରୀଟିଏ କରିବାପାଇଁ । ଏଥର ଘରୁ ଗୋଡ଼ କାଢ଼ି ବାହାରିଲେ ସଂଘର୍ଷର ରାଜରାସ୍ତାକୁ । ପେଣ୍ଟିଂର ରଙ୍ଗ, କାନ୍‌ଭାସ୍, କବିତା ଲେଖିବାକୁ କାଗଜ କଲମ, କଳରେ ଜାକିବାକୁ ପାନଟିଏ, ସବୁପାଇଁ ଲୋଡ଼ା ଟଙ୍କା । ଟଙ୍କା ହିଁ ସବୁଠୁ ବଡ଼ ଆବଶ୍ୟକତା ଓ ବାସ୍ତବିକତା ଆଉ ସବୁ ସ୍ୱପ୍ନ । କେତେବେଳେ ଯେ ବୟସଟା ସମୟର ଚୋରାବାଲି ଭିତରକୁ ଖସିଯାଇଛି ସେ ବିଷୟରେ ସେ ଅଜ୍ଞ । ସରକାରୀ କଲେଜ୍‌ରୁ ଚିତ୍ରକଳାରେ ଉପାଧିପ୍ରାପ୍ତ ସ୍ନାତକ ହେଲେ ମଧ୍ୟ ସରକାରୀ ଚାକିରୀର ସମୟ ଆଉ ନାହିଁ । ଧରାଧରିର ମାରାଥାନ୍ ରେସ୍‌ରେ ସେ ସାମିଲ୍ ହୋଇ ପାରିନଥିବା ଅଯୋଗ୍ୟ ଖେଳାଳୀଟିଏ । ଅଗତ୍ୟା ବେସରକାରୀ ସଂସ୍ଥାରେ ଅନ୍ନସଂସ୍ଥାନର ପ୍ରଚେଷ୍ଟା । ମାତ୍ର ସେ କରିବେ କ'ଣ ? ରଙ୍ଗ, ତୂଳୀ, କାଗଜ, କଲମ, କବିତା, ଚିତ୍ର ଏସବୁ ଭିନ୍ନ ସେ ତ ଆଉ କିଛି ଜାଣି ନଥିବା ନିରିହ ପ୍ରାଣୀଟିଏ । ଏଥର ତାଙ୍କ ଆଗରେ ସଂସାର ନାମକ ମହାକାଳ ଫଳର ଅସଲ ସ୍ୱରୂପଟି ଧୀରେଧୀରେ ମୁକୁଳିତ ହେବାକୁ ଲାଗିଲା । ସେ ବ୍ୟସ୍ତ ହେବାକୁ ଆରମ୍ଭ କଲେ । ବୁଦ୍ଧଦେବଙ୍କର ଜରା, ମରଣ, ବ୍ୟାଧି ଦେଖି ଗୃହତ୍ୟାଗ କରିବା ପରି ସେ ବି ଖୋଜିଲେ ପଳାୟନର ପଥ । ମାତ୍ର ସେ ଯିବେ କୁଆଡ଼େ ? କଲେଜ୍ ବେଳେ କେତେ ପୁରସ୍କାର, କେତେ ସମ୍ମାନ ଏବେ ବୟସର କୃଷ୍ଣଚୂଡ଼ା ଧୂସର ହେବା ସହ ଏସବୁ ସାର୍ଟିଫିକେଟ୍ ବି ହୋଇଛି ମୂଲ୍ୟହୀନ ।

ନିଛକ କଳାକରର ଦୁସ୍ଥ ଜୀବନ ସତରେ ଭାରି ଦୁର୍ବିସହ । ଶେଷରେ ବହୁକଷ୍ଟରେ ଗୋଟିଏ ଫଟୋ ଷ୍ଟୁଡ଼ିଓରେ କାମ ମିଳିଲା । ମାତ୍ର କଳାକାରଙ୍କ ସର୍ତ୍ତ ସେ ଶନିବାର, ରବିବାର କାମ କରିବାକୁ ଯିବେନାହିଁ । କିଛିଦିନ ଭଲରେ କଟିଲା ମାତ୍ର ଶନିବାର ଷ୍ଟୁଡ଼ିଓରୁ କାମ ପାଇଁ ଡ଼କରା ଆସିବାରୁ କ୍ରୋଧରେ ଚିତ୍ରକରଙ୍କର ମୁଡ୍ ଗରମ ହୋଇଗଲା । ପାଞ୍ଚଦିନ ହେଲା ସେ ତୁଳୀ ଧରିନାହାନ୍ତି, କବିତାଟେ ଲେଖିନାହାନ୍ତି ଚାକିରୀକୁ ଲାତମାରି ସେ ଆସି ଘରେ ହାଜର । ପୁଅ ବଡ଼ ହେଉଚି, ସ୍କୁଲ ଗଲାଣି । ବାପା ବୁଢ଼ା ହେଉଛନ୍ତି, ମା'କୁ ରୋଗ ମାଡ଼ିବସୁଛି, ପତ୍ନୀଙ୍କୁ ଚିନ୍ତାରେ ହାଇ ବି:ପି । ଔଷଧ, ଡାକ୍ତର, ସଉଦା, ପରିବା, କୁଣିଆ, ମଇତ୍ର ଓଃ ଅସ୍ୱସ୍ତି କର ପଇସା, ପଇସା, ପଇସା, ସତେକି ଜୀବନର ଅନ୍ୟ ନାମ ପଇସା । ଘାଣ୍ଟି ହୋଇଗଲେ ସେ । ଯନ୍ତ୍ରଣାରେ କାତର ମନ ଆଖିରୁ ବହିଯାଏ ଧାରଧାର ଲୁହ । ତାଙ୍କର ପ୍ରିୟଚିତ୍ରମାନଙ୍କ ଗହଣରେ ବସିବସି ସେ ସେମାନଙ୍କୁ ଦେଖନ୍ତି ଭାବନ୍ତି ଆହାଃ..... ସମସ୍ତେ କହୁଛନ୍ତି ଏମାନଙ୍କୁ ବିକ୍ରି କରିଦେଲେ ଆମ ଘରର ସବୁ କଷ୍ଟ ଦୂର ହୋଇଯିବ । ଏମ୍. ଏଫ୍. ହୁସେନ୍‌ଙ୍କ ଠାରୁ ଆରମ୍ଭ କରି କେତେକେତେ ଚିତ୍ରକର ବିଖ୍ୟାତ ହୋଇଛନ୍ତି ଟଙ୍କା କମେଇଛନ୍ତି ଆଦିର ଉଦାହରଣ ସବୁରି ପାଖରେ । ମାତ୍ର ତାଙ୍କର ହୃଦୟତଳର ଦ୍ରବୀଭୂତ ଶୋକ ଯନ୍ତ୍ରଣା କାତ କାହିଁକି କେହି ବୁଝନ୍ତି ନାହିଁ ? ଆତ୍ମାର ଶୃଙ୍ଖଳ ଯେ ସେମାନଙ୍କ ସହ ଯୋଡ଼ି ହୋଇ ରହିଛି ସେ ସେଥିରୁ ବିମୁକ୍ତ ହେବେ କେମିତି ? ଥରେ ଗୋଟିଏ ହୋଟେଲର ମାଲିକ ଏଇ ଛୁଆଟି ମା' ଠାରୁ କ୍ଷୀର ଖାଇବା ଅଏଲ୍ ପେଣ୍ଟିଂଟିକୁ କେତେ ହଜାର ଟଙ୍କାରେ ମାଗୁଥିଲେ । ସେ ଚିହିଁକି ଉଠିଲେ । ରକ୍ତଗୁଡ଼ା ଲାର୍ଭା ପରି ଟକମକ ହୋଇ ଫୁଟିବାକୁ ଲାଗିଲା । ହୋଟେଲ୍‌ର ବାରରେ ଟାଙ୍ଗିବାକୁ ଚିତ୍ରଟିକୁ ମାଗିଲା କ'ଣ ଭାବି ? କେତେ ବ୍ୟଭିଚାରୀ ଏମାନେ ? ଗୋଟିଏ ପବିତ୍ର ଦୃଶ୍ୟକୁ ବ୍ୟବସାୟ କରିବା ପାଇଁ ଯୌନତାର ପ୍ରତୀକ ଭାବିଲେ ? ଗୋଟିଏ ମମତା ବିଧୂରା ଜନନୀର ନଗ୍ନବକ୍ଷରୁ ଝରୁଥିବା ଅମୃତ ଶିଶୁଟିଏ ପାନ କରୁଥିବାର ଦୃଶ୍ୟ କ'ଣ କାହାରି ମନରେ କେବେ ଯୌନତାର ଆବେଗ ଫୁଟାଇ କାମନାର ଅଗ୍ନିରେ ଘିଅ ଢ଼ାଳି ପାରିବ ? ମିଥୁନରତ କ୍ରୌଞ୍ଚପକ୍ଷୀର ଶରବିଦ୍ଧ ଯନ୍ତ୍ରଣାୟିତ ଦୃଶ୍ୟଟିକୁ ବାଲ୍ମୀକିଙ୍କର ଅନ୍ତରଦେଇ ଅନୁଭବି ଆଙ୍କୁଥିବା ଶିଳ୍ପୀରଚିତ୍ରର ଉଦ୍ଦେଶ୍ୟ କ'ଣ ଏମାନେ ବୁଝି

ପାରନ୍ତି ନାହିଁ । ସରି ଆସୁଛି ରଙ୍ଗ ତୁଳୀ ସ୍ଥବିର, ଦ୍ୱବଳ ହାତ । ସେ କେବେ କଂସେଇ ସାଜି ତାଙ୍କର ଆତ୍ମାକୁ ବିକି ପାରିବେନି । ମାତ୍ର କରିବେ କ'ଣ ? ଗଦାଗଦା ସାର୍ଟିଫିକେଟ୍, ସମ୍ମାନ ପେଟରଭୋକକୁ ତ ବୁଝାଇ ପାରିବେନି ? ମଣିଷ ନାମକ ଗ୍ରହଟି ଟଙ୍କା ନାମକ ଅକ୍ଷ ଚର୍ତୁଦିଗରେ ଘୁରୁଛି ଅହଃର୍ନିଶି । ଏହା ହିଁ ଜୀବନର ସତ୍ୟ । ସ୍ୱାଭିମାନୀ ମଣିଷଟିର ଅନ୍ତରରେ କୋହ ଓ ଯନ୍ତଣା । ପତ୍ନୀଙ୍କର ତାଡ଼ନା, ସଂସାରର ଅଭାବ ପିତାମାତାଙ୍କର ବିନା ଚିକିତ୍ସାରେ ରୋଗଗ୍ରସ୍ଥ ଶରୀର ଇତ୍ୟାଦି ଦିନକୁ ଦିନ ବଢୁଥିବା ଆବଶ୍ୟକତା କାହା ସହ ସାଲିସ୍ କରିବେ ଏଇ ରଙ୍ଗ, ତୁଳୀ, କବିତା କଲମକୁ ପ୍ରେମ କରି ସେ କେତେ ଭୁଲ୍ ନ କରିଛନ୍ତି ! ପ୍ରେମର ପରାକାଷ୍ଠା ଭାଙ୍ଗିଗଲେ ପ୍ରେମିକ ମନରେ ଆସେ ହତାଶାବୋଧ । ଅଥଚ ସେ ଆଉ ପଛକୁ ଫେରାଇପାରେନା' ପାଦ । ଠିକ୍ ସେହି ମୋହଭଙ୍ଗ ଅସହାୟ ଯନ୍ତଣା ଚିତ୍ରକରଙ୍କ ମନରେ । ସେ ଆଉ କାହା ମୁହଁ ଚାହିଁବେ ନାହିଁ । କୋହରେ ଛାତି ରୁନ୍ଧି ହୋଇଯାଉଛି । ରାସ୍ତାରେ ଅନାମନା ହୋଇ ଚାଲିଚାଲି ଯାଉଛନ୍ତି । ଦିଗହରା, ପଥହରା, କ୍ଳାନ୍ତ ପଥିକର ଅବସନ୍ନ ଶରୀର । ପୁଅର ସ୍କୁଲରେ ଫିସ୍‌ବନ୍ଧା, ପତ୍ନୀଙ୍କର ଲମ୍ବାଲିଷ୍ଟ, ବାପାଙ୍କ ଚଷମା, ମା'ର ଔଷଧ ଓଃ.....ଭଉଁରୀ ପରି ଚକ୍ରାକାରରେ ଘୁରୁଛଇ ପୃଥିବୀ ଚର୍ତୁଦିଗ ଅନ୍ଧକାର, ମୁଣ୍ଡଟା ଝିମ୍‌ଝିମ୍ କରୁଛି ଲଥିକିନା ରାସ୍ତା ମଝିରେ ବସି ପଡ଼ିଲେ ସେ । ଗାଡ଼ିଗୁଡ଼ା ଦୁଇପଟେ ଅଟକି ରହିଛି । ଅଶ୍ରାବ୍ୟ ଭାଷାର ଗାଳି ତାଙ୍କ ଉପରେ । ଦାଢ଼ୀ ଭର୍ତ୍ତି ମୁହଁ ଦେହରେ ମଇଳା ପୋଷାକ, କାନ୍ଧରେ ଖଦୀ ବ୍ୟାଗ । କିଏ ଗୋଟେ ତାଙ୍କୁ ଘୋଷାଡ଼ି ଘୋଷାଡ଼ି ଆଣି ରାସ୍ତା କଡ଼ରେ ପକାଇଦେଲା, ବୋଧହୁଏ ଟ୍ରାଫିକ୍ ପୋଲିସ୍ । ଶଳା ମରିବାକୁ ଇଚ୍ଛା ତ ନଈ ପୋଖରୀକୁ ଡ଼ିଆଁମାରି, ବିଷ ଖାଅ, ଆମ ଚାକିରୀ ଖାଇବାକୁ ଆସୁଛୁ କିଆଁ ? ସେ ଉଠିବାକୁ ଚେଷ୍ଟା କଲେ । ଦେହରେଂ ତାତି ଭର୍ତ୍ତି, ଦୁଇଦିନ ହେଲା ଅନ୍ନଜଳ ସ୍ୱର୍ଶ କରିନାହାଁନ୍ତି । ଦୁର୍ବଳ ଶରୀର, ଆତ୍ମା ସହ ବିଦ୍ରୋହ କରି ସତ୍ୟାଗ୍ରହ କରିଛନ୍ତି । ଆଖିର ଲୁହ ଗାଲ ଦେଇ ବହିଯାଉଛି । ସେ ଆଜି ଏକ ଅସ୍ପୃଶ୍ୟ ମଣିଷ ସତେ ଯେମିତି ଅନ୍ୟଗ୍ରହର ଅବାନ୍ତର ଜୀବଟିଏ । ପଇସାବିନା ମଣିଷଟିଏ ପଶୁ ହୋଇଯାଏ ଏକଥା ସେ ବୁଝିଲେ ଢ଼େର ଡ଼େରିରେ । ଭିଡ଼ଠେଲି ଆଗେଇ ଆସୁଛି କୁନି ପିଲାଟିଏ । କାନ୍ଧରେ ବ୍ୟାଗ, ହାତରେ ପାଣି ବଟଲ । ବିଟୁ..... ତାଙ୍କର

ଧ୍ରୁବତାରା ! ହାତବଢ଼ାଇ ଉଠାଇଲା ତା'ର ଯୋଗଜନ୍ମା ଜନ୍ମଦାତାଙ୍କୁ ପିଲାଟି । ଯେଉଁ ଶିଶୁଟିକୁ ଦାନାଗଣ୍ଡିଏ ଦେବାକୁ ଅସମର୍ଥ ତା'ର ପିତା ସେ ହିଁ ସାହାରା ଦେଇ ରାସ୍ତା କଢ଼େଇ ନେଉଛି । ସେ ଉଠି ଠିଆ ହେଲେ, ସଂକଳ୍ପ ନେଲେ, ନାଃ.....ମୁଁ ନୁହେଁ ନପୁଂସକ । ମୋର ଯୋଗ୍ୟତା ଅଛି । ମୋତେ ବଦଳିବାକୁ ହେବ । ନିଜର ସିଦ୍ଧାନ୍ତକୁ ଯିଦ୍ କରି ମୁଁ ବଞ୍ଚେଇ ପାରିବନି । ସଂସାର ଦୁନିଆଁର ସବୁ ମଣିଷ ଯେଉଁ ଲମ୍ବା ଚୌଡ଼ା ସଳଖ ରାସ୍ତାରେ ଧାଇଁ ଚାଲିଛନ୍ତି ମୋତେ ବି ଧାଇଁବାକୁ ହେବ ସେଇ ଗତି । ବିକ୍ରି କରିବାକୁ ହେବ ନିଜ ଆତ୍ମାର ପକ୍ଷୀମାନଙ୍କୁ ନିଜର ଏଇ ସନ୍ତାନଟି ପାଇଁ, ସେଇ ସନ୍ତାନମାନଙ୍କୁ ସେ ନିଜଠୁ ଦୂରେଇ ଦେବେ । ସେ ବିଟୁର ହାତ ଧରି ଶୀଘ୍ରଶୀଘ୍ର ପାଦ ପକାଇଲେ ଘର ଆଡ଼େ । ମନ ଭିତରେ କିପରି ଏକ ଅଦ୍ଭୁତ ଅସହାୟ ନିଷ୍ଠୁର ଆନନ୍ଦ । ମା'ଟିଏ ଶିଶୁର ଜନ୍ମିବାର ମୁହୂର୍ତ୍ତ ପରି । ଗର୍ଭବେଦନା ସହ ଶିଶୁର କୁଆଁକୁଆଁ ରାବ ଯାହା ଅନୁଭବ ଦିଏ, ଠିକ୍ ସେଇ ସମାନ ଅନୁଭବ ।

ଚର୍ତୁଦିଗ ଧୂଆଁମୟ । ଅଗ୍ନିର ଲେଲିହାନ ଶିଖା ସତେ ଯେମିତି ଗ୍ରାସିଯିବ ସମଗ୍ର ପୃଥିବୀ । କ'ଣ ସବୁ ଜଳି ଯାଉଛି । କିରାସିନିର ତୀବ୍ରଗନ୍ଧ । ପାଖରେ କାଳୀମୂର୍ତ୍ତିର ରୌଦ୍ର ଭୟଙ୍କର ରୂପନେଇ ପତ୍ନୀ । ଚଣ୍ଡି ଚାମଣ୍ଡୀର ଅବତାର ନେଇ ନୃତ୍ୟରତା । କାକୁସ୍ଥବୃଦ୍ଧ ପିତାମାତା ଅସହାୟ । ସ୍ତମ୍ଭୀଭୂତ ଚିତ୍ରକର, ଚକିତ ବିଟୁ । ଆଖି ଆଗରେ ସ୍ୱପ୍ନର ସବୁଜ ଅରଣ୍ୟ ଧ୍ୱଂସ ହୋଇଯାଉଛି । ଧୂଆଁର କୁଣ୍ଡଳୀ ଉଠୁଛି ଆକାଶକୁ । ବ୍ୟାପ୍ତ ହୋଇଯାଉଛି ମହାଶୂନ୍ୟକୁ । ଗୋଟିଏ ଗୋଟିଏ ଚିତ୍ର ଫିଙ୍ଗି ଚାଲିଛନ୍ତି ପତ୍ନୀ ଅଗ୍ନିର ଆବର୍ତ୍ତ ଭିତରକୁ । ଦଉଡ଼ିଗଲେ ଚିତ୍ରକର । ଶେଷଚିତ୍ରଟି ପତ୍ନୀଙ୍କ ହାତରେ । ରୁହ ଶକୁନ୍ତଳା......ଏଇ ଗୋଟିକ ହିଁ ଆମକୁ ଜୀବନ୍ୟାସ ଦେବ !



# ଫୁଲ ଟାଇମ୍ ୱାଇଫ୍

ସୁନ୍ଦରୀମାନଙ୍କ ସ୍ୱପ୍ନର ଆରମ୍ଭ ବା ଶେଷ ନଥାଏ । ସେମାନେ ଖାଲି ସ୍ୱପ୍ନରେ ମସ୍‌ଗୁଲ୍ ରହି ଜୀବନ ଜୀଇଁବାକୁ ପସନ୍ଦ କରନ୍ତି । ସେମାନେ ଭାବନ୍ତି ଏଇ ଯେଉଁ ମନଲୋଭା ଚେହେରାଟି ଭଗ୍‌ବାନ୍ ଦେଇଛନ୍ତି ତା'ଦ୍ୱାରା ଅସାଧ୍ୟ ସାଧନ ଓ ଅସମ୍ଭବ ସମ୍ଭ ହୋଇପାରେ, ହୁଏ ମଧ୍ୟ ! ରଞ୍ଜିତା ବି ତନୁପାତଳୀ, ଚମ୍ପାକଢ଼ି ଅଙ୍ଗୁଳି, ଚାନ୍ଦ ପରି ମୁହଁଟିଏ ଥିବା ଗୋରୀ ସୁନ୍ଦରୀଟିଏ । ତେଣୁ ସ୍ୱପ୍ନର ଅସୁମାରୀ ଉଚ୍ଚମୀନାର ଉପରେ ବସିବା ତା ପାଇଁ ସ୍ୱାଭାବିକ ଥିଲା । ପିଲାଟି ଦିନରୁ ସେ ଜାଣିଥିଲାଯେ ଅନ୍ୟମାନଙ୍କ ଠାରୁ ଦେଖିବାକୁ ନିଶ୍ଚିତ ଭାବରେ କିଛି ଭିନ୍ନ । ନଚେତ୍ ଅନ୍ୟମାନଙ୍କଠାରୁ ଏତେ ପ୍ରଶଂସା, ଏତେ ମନଲୋଭା ଚାହାଁଣୀ ତା' ଉପରେ ନିବଦ୍ଧ ହୁଅନ୍ତା କାହିଁକି । ବାପା ମା'ଙ୍କର ଗର୍ବକୁ ଆହୁରି ବଢ଼ାଇ ସେ ଖୁବ୍ ଭଲ ବି ପଢ଼ିଲା । ବିଭିନ୍ନ ପ୍ରତିଯୋଗୀତାରେ ପ୍ରାଇଜ୍ ମଧ୍ୟ ପାଇଚାଲିଲା । ସମସ୍ତେ କହୁଥିଲେ ଲକ୍ଷ୍ମୀ, ସରସ୍ୱତୀ ଯେପରି ଗୋଟିଏ ଦେହରେ ଅବସ୍ଥାନ କରିଛନ୍ତି । ଗ୍ରାଜୁଏସନ୍ ସାରି ଏମ୍.ବି.ଏ ପଢ଼ିବା ବେଳକୁ ପାତ୍ରମାନଙ୍କ ଦ୍ୱାରା ବିବାହ ପ୍ରସ୍ତାବମାନ ଆସିବାକୁ ଲାଗିଥିଲା । ମାତ୍ର ତା'ର ଗୋଟିଏ ଯିଦ୍ ସେ ଚାକିରୀ କରି ସାରିଲେ ବାହା ହେବ । ଅଥଚ ଝିଅିଘିଅ, ରହିଲେ ରହଣିଆ ବାସିବ । ଆଜିକାଲିକା ଯୁଗ ଯାହା ହେଲଣି ଏତେ ସୁନ୍ଦର ଝିଅକୁ ଘରେ ସାଇତି ରଖିବା ବି କେଉଁ ବିପଦରୁ କମ୍ କି ? ଏମ୍.ବି.ଏ. ଶେଷବର୍ଷ ରେଜଲ୍ଟ ନ ବାହାରିବା ଆଗରୁ ହିଁ ତାକୁ ଛନ୍ଦି ଦିଆଗଲା, ତାକୁ ମାନିବାପରି ଯୋଗ୍ୟତମ୍ ବରଟି ସହ । ଗୋଟିଏ ବଡ଼ କମ୍ପାନୀର ଡେ଼ପୁଟି ମ୍ୟାନେଜର ଅତନୁ ଯେଉଁଦିନ ତାକୁ ଦେଖିଁବାକୁ ଆସିଥିଲା, ରଞ୍ଜିତାର ସବୁ ଯିଦ୍, ଇଚ୍ଛା ସେହିଦିନ ହିଁ ମିଳେଇ ଯାଇଥିଲା । କବାଟ ଫାଙ୍କରେ ଭାଉଜଙ୍କ କାନ୍ଧ ପଛପଟୁ ସେ ପରଦା ଆଢୁଆଳରେ ଅତନୁକୁ ଦେଖି ହିଁ ମୁଗ୍ଧ ହୋଇଯାଥିଲା । ଅଳ୍ପ କଥାକୁହା, ହାଇ ପର୍ସନାଲିଟିର ସୁନ୍ଦର ଯୁବକ ଅତନୁ ପାଇଁ ତ ଲକ୍ଷେ ଚମ୍ପାଫୁଲ

ଶିବଙ୍କ ମୁଣ୍ଡରେ ଚଢ଼ାଉଥିବେ କେତେ ଝିଅ ! ବାଜି କିନ୍ତୁ ମାରିନେଲା ରଞ୍ଜିତା । ସେଦିନ ଅତନୁ ଆଖିର ଚାହାଁଣୀରେ ବି ଭରି ରହିଥିଲା ରଞ୍ଜିତା ପ୍ରତି ମୋହଗ୍ରସ୍ତ ଭାବଟିଏ । ଦୁହେଁ ଦୁହିଁଙ୍କ ପାଇଁ ହିଁ ଗଢ଼ା ଏହା ହିଁ ସମସ୍ତଙ୍କ କଥା ଥିଲା । ଯୋଡ଼ିଟି ଖୁବ୍ ସାଜିବ । ଦୁହେଁ ଲାଜେଇ ଯାଇଥିଲେ । ମାତ୍ର ଅତନୁ ବି ତାକୁ ଅନ୍ୟମାନଙ୍କ ପରି କିଛି କହିବାକୁ ଚାହିଁଥିଲା । ଭାଉଜ ଚିଡ଼େଇଥିଲେ ଦେଖ ନଣନ୍ଦରାଣୀ ଏବେଠୁ ଜୋଇଁ ଏକେଲା ଭେଟିବାକୁ ଚାହିଁଲେଣି ଆଗକୁ ଆଉ କ'ଣ ନ ହେବ ! ଡ଼ରିଯାଇ ଛାତି ଥରିଥିଲା ରଞ୍ଜିତାର ।

ନୀରବ ହୋଇ ତଳକୁ ମୁହଁ ପୋତି ବସି ରହିଥିଲା ସେ । ଆଗ ସୋଫାରେ ଅତନୁ । ବାୟୁମଣ୍ଡଳ ସ୍ତବ୍ଧ ! କ'ଣ କହିବ ! ଆରମ୍ଭ କରିଥିଲେ ଗଳାଝାଡ଼ି ଅତନୁ । ଏକଦମ୍ ସ୍ପଷ୍ଟ ଓ ଦୃପ୍ତ କଣ୍ଠରେ ଯାହାକି ପରଦାଭେଦି ଘରର ଅନ୍ୟମାନଙ୍କ କାନରେ ମଧ୍ୟରେ ପଡୁଥିଲା । ସେ ସବୁଦିନ ଏମିତି । ଚୁପ୍‌ଚାପ୍ କଥା ତା'ର ପସନ୍ଦ ନୁହେଁ । ମୁଁ ଗୋଟିଏ ଫୁଲଟାଇମ୍ ୱାଇଫ୍ ଚାହେଁ । ଯିଏକି କେବଳ ମୋର ହୋଇ ରହିବ ମୋ ପୃଥିବୀର ମାଲିକାଣୀ । ଚାକିରୀରେ ଅଧାଗୋଡ଼, ଘରେ ଅଧାଗୋଡ଼ ଥିବା ପାର୍ଟଟାଇମ୍ ୱାଇଫ୍ ମୋର ଦରକାର ନାହିଁ ? କ'ଣ ରାଜି ତ ? ସେ ଆଖି ଉଠାଇ ଚାହିଁଥିଲା, ଆଖିରୁ ତା'ର ଠପ୍‌ଠପ୍ ଲୁହ ଗଡ଼ି ପଡ଼ିଥିଲା । ବେଶ୍ କିଛି ବୁଝି ଯାଇଥିଲା ଅତନୁ । ଦେଖ ଯେଉଁମାନେ ଚାକିରୀ କରନ୍ତି ସେମାନେ ଅଫିସ୍‌ର ସ୍ତ୍ରୀ ଅଧା ଓ ଘରର ସ୍ତ୍ରୀ ଅଧା ହୁଅନ୍ତି । ସେମାନଙ୍କର ମନଟା ସବୁବେଳେ ବିଭକ୍ତ ହୁଏ । ତେଣୁ ଘରେ ସ୍ୱାମୀକଥା ପୁରାପୁରି ବୁଝିପାରିବାର ମାନସିକତା ବା ଧୈର୍ଯ୍ୟ ସେମାନଙ୍କର ନଥାଏ । ତା'ପରେ ଚାକିରୀ କରିବା ଦରକାର କ'ଣ । ମୋର ରୋଜଗାର ଏତେ ବେଶୀ ଯେ ମୋର ସ୍ତ୍ରୀ ଯାଇ କେଉଁଠି ଚାକିରୀ କରିବାର ଆବଶ୍ୟକତା ବି ନାହିଁ । ଆରାମ୍‌ରେ ଘରେ ରହି ଖାଇ-ପିଇ, ଟି:ଭି ଦେଖି, ମ୍ୟାଗାଜିନ୍ ପଢ଼ି ସମୟ କାଟି ଅଯଥାରେ ବାହାର ଟେନ୍‌ସନ୍ ଘରକୁ ଆଣିବା କ'ଣ ଦରକାର । ସେଯେ ଗୋଟିଏ ପ୍ରାଇଭେଟ୍ କମ୍ପ୍ୟୁଟର୍ ଟ୍ରେନିଂ ସେଣ୍ଟରରେ କମ୍ପୁଟର କୋର୍ସଟିଏ କରୁଛି ଏକଥା ଜାଣିଥିଲା ଅତନୁ । ବାହାଘର ସରିଯାଇଥିଲା ।

ସବୁ ଖୁସି ଭିତରେ କେଉଁଠି ଗୋଟେ କ'ଣ ଛାତି ପଛପଟେ ଛପିରହିଥିଲା, ମଝିରେ ମଝିରେ ତାହା କଷ୍ଟ ଦେଉଥିଲା ରଞ୍ଜିତାକୁ । ଏକୁଟିଆ ଏତେବଡ଼ ଘରଟା, ଯେତେ ସଜେଇଲେ ବି ସମୟ ଆହୁରି ରହୁଛି । ଲୋକ ବହୁତ କାମ କରିବାକୁ । ସେ କ'ଣ କରିବ ? ବସିବସି ବିଭିନ୍ନ ରୋଷେଇ ବହିପଢ଼ି ସେ ଅତନୁ ପାଇଁ ଭଲଭଲ ଆଇଟମ୍ ସବୁ ରାନ୍ଧେ । ବାହାଘର ତିନିବର୍ଷ ଯାଏ ପିଲା ଦରକାର ନାହିଁ ବୋଲି ଅତନୁ କହିଥିଲା । ତାକୁ ବୁଣାବୁଣି ଭଲ ଲାଗେ ନାହିଁ । କିଛି ଦିନ ପଢ଼ାପଢ଼ି କଲା, ଧୀରେଧୀରେ ସେ ଅଭ୍ୟାସ ବି ଚାଲିଗଲା । ସମୟ ପାଇଲେ ସେ ଶୋଇପଡ଼େ । ଫୋନ୍‌ରେ କେତେ କାହା ସହ ଗପିବ । ଅତନୁର ଅଫିସ୍‌ରେ ବହୁତ କାମ ପ୍ରାୟତଃ ସମୟର ଠିକ୍ ଠିକଣା ନଥାଏ । ଭାରି ଖରାପ୍ ଲାଗେ ରଞ୍ଜିତାକୁ । ଏତେ ବଡ଼ ଘର, ବଗିଚା ସବୁ ଯେପରି ଅତୃପ୍ତ ପ୍ରେତାତ୍ମା ପରି ଲାଗନ୍ତି ତାକୁ । ବେଶି କାହାସହ ମିଶିବା ଅତନୁର ପସନ୍ଦ ନୁହେଁ । ସେ ଚାହେଁ ସେ ଖାଲି ତା'ରି ପାଇଁ ସାଜୁ, ତା'ରି ପାଇଁ ରାନ୍ଧିବାଢ଼ି ତା'ରି ପ୍ରତୀକ୍ଷା କରୁ, ବାସ୍ ଖାଲି ତା'କୁ ହିଁ ପ୍ରେମ କରିଚାଲୁ । ପୃଥିବୀରୁ ବିଚ୍ଛିନ୍ନ ହୋଇପଡ଼େ ରଞ୍ଜିତା । ଏବେ ଖାଲି ଭଲଭଲ ରାନ୍ଧି ଖାଇବା ଖୁଆଇବା ହିଁ ତାର କାମ । ଦୁହିଁଙ୍କର ଭଲପାଇବା ଦେଖି ଅନ୍ୟମାନେ ବି ଆଶ୍ଚର୍ଯ୍ୟ ହୋଇଯାଆନ୍ତି । ବାହାରେ କାମ ନଥିଲେ ରହେ ନାହିଁ ଅତନୁ । ତା' ସ୍ତ୍ରୀର ପ୍ରଶଂସା କରିବାକୁ ତାକୁ ଖୁବ୍ ଭଲ ଲାଗେ । ମନଲାଖି ପତ୍ନୀଟିଏ ଭଗବାନ୍ ତାକୁ ଦେଇଛନ୍ତି ବାସ୍ ଆଉକିଛି ଦରକାର ନାହିଁ । ସତେ ଯେମିତି ତାଙ୍କ ପ୍ରେମର ପୃଥିବୀରେ ଆଉ କାହାରି ପାଇଁ ତିଳେ ହେଲେ ସ୍ଥାନ ନାହିଁ । ସେଇ ପୃଥିବୀଟା ସବୁଦିନ, ସୁନ୍ଦର, ସତେଜ ଓ ସବୁଜ ! ସବୁବେଳେ ସମୟ କିନ୍ତୁ ସମାନ ନଥାଏ । ଧୀରେଧୀରେ ଅତନୁ ଲକ୍ଷ୍ୟ କଲା ରଞ୍ଜିତା କେମିତିଟିକେ ଅନାମନା ଲାଗୁଛି । କଥାବାର୍ତ୍ତା କମିଯାଇଛି, ଭିନ୍ନ ମଣିଷଟିଏ ପରି ରୂପାନ୍ତରିତ ହେଉଛି । କେତେଥର ପଚାରିଲେ ବି ମଧ୍ୟ ମାତ୍ର କ'ଣ ନାଇଁ କ'ଣ କହି ଆଡ଼େଇ ଯାଏ । ଅତନୁର ଇଚ୍ଛାର କଣ୍ଢେଇଟିଏ ରଞ୍ଜିତା । ଯେତେବେଳେ ଯାହା ସ୍ୱାମୀଙ୍କର ଇଚ୍ଛା ତାହା ହିଁ କରେ । ତାହା ହିଁ ତାଙ୍କ ବିବାହାର

ପ୍ରଥମ ଓ ଶେଷ ସର୍ତ୍ତଥିଲା । ଅତନୁ ଜୀବନଭରି ଭଲପାଇବ ରଞ୍ଜିତାକୁ । ରଞ୍ଜିତା ଜୀବନ ଦେଇ କଥା ରଖିବ ଅତନୁର । ବାସ୍ ତାହେଲେ ଏଇ ନୀରବତା, ଏତେ ସ୍ତବ୍‌ଧତା ଏତେ ଭିନ୍ନତା କାହିଁକି ସୃଷ୍ଟି ହେଉଛି ସଂର୍ପକରେ । କାହିଁକି ଗତାନୁଗତିକ ଜୀବନଟା ଆଉ ଭଲ ଲାଗୁନାହିଁ । ଛୁଆଟିଏ ଖୋଜୁଛି କି ରଞ୍ଜିତା ? ଚିରଦିନ ରଞ୍ଜିତା ଏଇମିତି । ଅନ୍ୟର ମନ ରଖିବାକୁ ଯାଇ ନିଜ ମନଟିକୁ ଚାପି ପକାଏ । କାହାରି ଆଗରେ କିଛି କହେନାହିଁ । ସବୁ ସ୍ତ୍ରୀ କ'ଣ ଏମିତି ? ବ୍ୟାଙ୍କ୍ ଲକର୍‌ରେ ରଖିବା ପରି ନିଜମନ କଥା ଗୁଡ଼ା ଚାପି ପକାନ୍ତି ? ନିଜର ଇଚ୍ଛା, ଅନିଚ୍ଛା, ଅଭିମାନ, ଅଭିଯୋଗ କିଛି ପ୍ରକାଶ କରନ୍ତିନି ସ୍ୱାମୀ ପାଖରେ ? ନାଁ ରଞ୍ଜିତା ହିଁ ଅନନ୍ୟା ସଭିଙ୍କଠୁ । ଅତନୁର ଇଚ୍ଛା ଓ ରଞ୍ଜିତାର ଆବଶ୍ୟକତାକୁ ନେଇ ସୁନ୍ଦରୀ ଗୁଲୁଗୁଲିଆ ଝିଅ "ଆଦ୍ୟାଶା ଆସିଲା ତାଙ୍କ ପୃଥିବୀରେ ନୂତନତ୍ୱ ନେଇ । କେତେ ସକାଳ ସଞ୍ଜ, ରାତି ଚାଲିଗଲା, ତା'ର ଦରୋଟି କଥା, ଥରଥର ଚାଲି, ପାପା ମାମା ଡ଼ାକରେ । ମାତ୍ର ଅତନୁ ଲକ୍ଷ୍ୟ କଲା ପୁଣି ସେଇ ଗୁମ୍‌ସୁମ୍ ଭାବ, ଅନ୍ୟମନସ୍କ ଭାବନା ଗ୍ରାସ କରିଯାଇଛି ରଞ୍ଜିତାକୁ । ଝିଅ ସ୍କୁଲ ଯିବା ପରେ ପରେ ହିଁ କିପରି ଗୋଟିଏ ମାନସିକ ରୋଗ ଯେପରି ଆକ୍ରମଣ କରିଛି ରଞ୍ଜିତାକୁ । ବହୁତ ଭଲ ଭାବରେ ଜାଣେ ଅତନୁ ତା'ର ପ୍ରାଣପ୍ରିୟା ସ୍ତ୍ରୀକୁ । ତା'ର ପ୍ରତିଟି ଆବଶ୍ୟକତାକୁ ଅନୁଭବ କରି ପୂରଣ କରିଛି । ତେବେ ରଞ୍ଜିତା ଚାହେଁ କ'ଣ ? କ'ଣ ପାଇଲେ ସେ ତୃପ୍ତ ହେବ ? ସେ ଦେଖେ ଟି:ଭିରେ ସିରିଏଲ୍ ଦେଖି ଖୁସିହୁଏ ରଞ୍ଜିତା । ସେଇ ଗୋଟିଏ ହିଁ ଖୁସି ତାର । ହଠାତ୍.ଥରେ ଅତନୁର ଭାରି ଦାନ୍ତବିନ୍ଧା ହେଲା ଦାନ୍ତ ଓପାଡ଼ିବାକୁ ଯାଇ ସରିଏସ୍ ହୋଇପଡ଼ିଲା ସେ । ଏଣେ ରଞ୍ଜିତାର ଚିନ୍ତା ତେଣେ ଦେହ ଖରାପ । ଭାରି ବ୍ୟସ୍ତ ହୋଇପଡ଼ିଲା ସେ । ଡ଼ାକ୍ତର କହିଲେ ଆପଣଙ୍କୁ ଡ଼ାଏବେଟିସ୍ ! ଆକାଶରୁ ଖସିପଡ଼ିଲା ଯେପରି ଅତନୁ । ଡ଼ାଏଟ୍‌କଣ୍ଟ୍ରୋଲ ଆଉ ମେଡ଼ିସିନ୍ । ବହୁତ ରିଚ୍‌ଫୁଡ଼ ଖାଇ ଏପରି ଅବସ୍ଥା ହୋଇଛି । ହଁ ଫୁଲ୍‌ଟାଇମ୍ ୱାଇଫ୍‌ଟିଏ ଖୋଜିଥିଲା ଅତନୁ । ଆଉ ତାକୁ ବି ନିରାଶ କରି ନଥିଲା ରଞ୍ଜିତା । ବେଶ୍ ଭଲଭଲ ରାନ୍ଧି ମନଭରି ଖୁଆଉଥିଲା ତାକୁ । ସେଇଥିପାଇଁ ତ ସାଙ୍ଗମାନେ

ଚିଡ଼ାଉଥିଲେ । ଅତନୁର ଓଜନ ବଢ଼ିଯାଇଥିଲା ବହୁତ ବୋଲି ଏବେ ଏ ରୋଗ କଥା ଶୁଣି ଆହୁରି ବ୍ୟସ୍ତ ହେବ ରଞ୍ଜିତା । ଆହୁରି ଚିନ୍ତାଗ୍ରସ୍ତ ହୋଇପଡ଼ିବ । କ'ଣ କରିବ ସେ ?

କବାଟ ଖୋଲିଲା ରଞ୍ଜିତା । ଆଶ୍ଚର୍ଯ୍ୟ ହୋଇଗଲା ଏ ଅସମୟରେ ଅତନୁ ଯେ ! କ'ଣ ହୋଇଛି ? ଶୀଘ୍ର ବାହାର, ଶିଘ୍ର ବାହାର ତୁମର ଗୋଟିଏ ଇଣ୍ଟରଭ୍ୟୁ ଅଛି । ସେଠୁଯାଇ ଫେରିବାବେଳକୁ ଝିଅକୁ ସ୍କୁଲରୁ ନେଇ ବାହାରେ ଖାଇ ଫେରିବ । କିଛି ବୁଝିପାରୁନି ରଞ୍ଜିତା । ଅବାକ୍ ହୋଇ ଖୁଣ୍ଟଟା ପରି ଠିଆ ହୋଇଛି । ଆରେ ବାବା ! ତୁମେ ତ ବେଶ୍ କ୍ୱାଲିଫାଏଡ୍ । ପୁଣି ଘରେ ବସିବସି ବୋର ହେଉଛ । ସେଥିପାଇଁ ମୁଁ ଗୋଟିଏ କମ୍ପାନୀରେ ଆପ୍ଲାଏ କରିଥିଲି । ସେମାନେ ତମକୁ ଡ଼ାକିଛନ୍ତି ତ । ଶୀଘ୍ର ପ୍ରସ୍ତୁତ ହୁ ବାବା । କିନ୍ତୁ ରଞ୍ଜିତାର କଥା ଛଡ଼ାଇ ନେଲା ଅତନୁ । ମୁଁ ମୋର ସର୍ତ୍ତ ଫେରାଇ ନେଲି ରଞ୍ଜୁ । ତୁମେ ଆଜିଠୁ 'ଫୁଲଟାଇମ୍ ଓ୍ୱାଇଫ୍' ବନ୍ଧନରୁ ମୁକ୍ତ । ଖାଲି ରାନ୍ଧିବାଢ଼ି ସମୟ କାଟିବା ଯୁଗ ଯେ ନୁହଁ, ସେଥିରେ ବେକାର ଟେନ୍‌ସନ୍ ବଢ଼େ, ରୋଗବଢ଼େ । ସମୟର ସଦ୍‌ଉପଯୋଗ ହିଁ ସମୃଦ୍ଧିର ପଥ ଖୋଲେ । ଖାଲି ଟଙ୍କା ପାଇଁ ନୁହେଁ, ସୋସାଇଟି ପାଇଁ କିଛି କରିବା ପାଇଁ ହିଁ ଚାକିରୀ କରିବା ଦରକାର । ବୁଝିଲ ତ ! ହଁ ଫେରିବା ବେଳେ ସୋରୁମ୍‌ରୁ ତୁମ ପାଇଁ ସ୍କୁଟିପେପ୍ ଗୋଟେ କିଣି ଆଣିବ ।



# ଲାଭା

ସମୟ !!

ନିର୍ବିକାର, ନୀରବଦ୍ରଷ୍ଟା, କେବଳ ଦେଖେ କିଛି କହେନି । ସବୁ ପ୍ରଶ୍ନ ଶୁଣେ ତଥାପି ରହେ ନିରୁତ୍ତର । ତା'ର ନୀରବତା ହିଁ ଉତ୍ତର ଦିଏ ସବୁ ପ୍ରଶ୍ନର ଆପେଆପେ । ହେଲେ ସେ ? ସେତ ନିରିହ ମେଣ୍ଢାଛୁଆଟିଏ ସମୟ ପରି ବଳିଷ୍ଠ କିପରି ହୋଇପାରିବ ?

ସେ କାନ୍ଦୁରୀ !

ମାଲକାନ୍‌ଗିରିର ଏମ୍.ଭି.୪୨ ଗ୍ରାମର ଛୋଟିଆ ବାସିନ୍ଦାଟିଏ । ତାର ପତ୍ରକୁଡ଼ିଆର ଚତୁଃପାର୍ଶ୍ୱରେ କେବଳମାତ୍ର ସବୁଜ ଜଙ୍ଗଲ । ସମୁଦ୍ରରେ ଲହଡ଼ି ଯେତିକି ଯେତିକି ଜଙ୍ଗଲରେ ଗଛ ଆଉ ପତ୍ରବି ସେତିକି । ସେଇ ଭିତରେ ଏଇ ଆଦିବାସୀ ଜନବସତି ଦୁଃଖ ଓ ସୁଖ ଭିତରର ସୂକ୍ଷ୍ମ ରେଖାଟି ହୁଏତ ସେମାନେ ଚିହ୍ନି ଶିଖି ନଥିଲେ । ଦିନ ଭରି ଜଙ୍ଗଲରୁ ଚିଜ ସଂଗ୍ରହ କରିବା, ସପ୍ତାହିକ ହାଟରେ ତାକୁ ବିକାକିଣା କରିବା, କିଛି ଟଙ୍କାରେ ଘର ପାଇଁ ଜିନିଷ କିଣି ଆଉ କିଛିରେ ଦେଶୀ କି ହାଣ୍ଡିଆ ପି ଆସି ଗାଁ ମୁଣ୍ଡ ଠାକୁରାଣୀ ବରଗଛ ପାଖେ ଏକାଠି ହୋଇ ଗୀତନାଚ କରିବା ହିଁ ଥିଲା ଜୀବନରେ ସୁଖର ସର୍ବବୃହତ ସଂଜ୍ଞା । ଅନାବୃତ ଶରୀରକୁ ଢ଼ାଙ୍କିବା ପାଇଁ ଗଛର ବକଳ କି ପତ୍ରକୁ ଗୁନ୍ଥି ସିଲାଇ କରି ପିନ୍ଧିବାର ଯୁଗ ଚାଲିଯାଇ କସ୍ତା ଶାଢ଼ୀ ଓ ମୋଟା ଲୁଗା ପିନ୍ଧିବା ହିଁ ସଭ୍ୟ ମଣିଷ ଭାବେ ସେମାନଙ୍କୁ ଚିହ୍ନାଇବାକୁ ଆରମ୍ଭିଥିଲା । ହେଲେ ସଭ୍ୟ ହେବାର ପ୍ରୟାସରେ ସେମାନେ ଯାହା କିଛି ହରାଇ ଚାଲିଥିଲେ ତାକୁ ହିଁ ପାଇବା ପାଇଁ ଯେ ସେମାନଙ୍କୁ ସଂଘର୍ଷ କରୁବାକୁ ହେବ ଏକଥା କ'ଣ ସେମାନେ ଜାଣିଥିଲେ ?

ସେଇ ମୁଣ୍ଡିଆ ପାହାଡ଼ଟା ହିଁ ସେମାନଙ୍କ ଗାଁର ସୀମାରେଖା ଥିଲା । ଯାହା ଭିତରେ ସୁଖ ଦୁଃଖର ସାଥି ହୋଇ ସେମାନେ ଚଳି ଆସୁଥିଲେ । ନୂଆନୂଆ ଗାଁରେ ସ୍କୁଲ୍ ଖୋଲିଥିଲା, ପ୍ରାଇମେରୀ ସ୍କୁଲ । ସେଠି ପାଠ ଶିଖିବାକୁ ଯାଉଥିଲା କାନ୍ଦୁରୀ । ବା' ତାକୁ କହୁଥିଲା କାନ୍ଦୁରୀ ଲୋ, ଏଇ ମୁଣ୍ଡିଆ ପାହାଡ଼ରେ ଦେବତା ରହନ୍ତି ସେ ଆମର ଦୁଃଖର ସାହା । ଯେତେବେଳେ ତୋତେ କିଛି କଷ୍ଟ ହେବ ତୁ ପାହାଡ଼ ଖୋଲରେ ରହୁଥିବା ଠାକୁରାଣୀକୁ ଦୁଃଖ ଜଣେଇବୁ । ସେଇ ଠାକୁରାଣୀ ଯିଏ ଫି ସନ ମେରିଆବଳି ନେଉଥିଲା ହେଲେ ଏବେ ସରକାର ମନା କରିବାରୁ ମହିଷବଳୀରେ ସନ୍ତୁଷ୍ଟ ହେଉଛି ।"କାନ୍ଦୁରୀ ତା' ବା'ର ସବୁକଥାକୁ ସତ ଭାବୁଥିଲା । ସେମାନେ ସମସ୍ତଙ୍କ କଥା ସତ ଭାବନ୍ତି । ଏବେ ନୂଆକରି କେତେ କେତେ ବାବୁଭୟା ଗାଁକୁ ଆସନ୍ତି । କ'ଣ ସବୁ ବଡ଼ମାଇକ୍‌ରେ ଭୁଟ୍‌ଭାଟ୍ କରନ୍ତି । ଅଧାକଥା କାନ୍ଦୁରୀ ବୁଝିପାରେନାହିଁ । ତାକୁ କେତବେଳେ ନାଲି ଲୁଗାଟିଏ ମିଳିବ ଏଇ ଆଶାରେ ସେ ବା'ର ହାତଧରି ସଭାରେ ବସି ରହିଥାଏ । ଢୁଲେଇ ପଡ଼ି ଗଡ଼ି ଯାଉଯାଉ ବା' ତାକୁ ଧରି ହଲେଇଦିଏ । ଧିର ପାଟିରେ ସଚେତନ କରେ ବାବୁ ରାଗିବେ । ରାଗିଲେ ଚାଉଳ କିଛି ବା ଲୁଗା ବି ମିଳିବ ନାହିଁ । ପୁଣି ଜଗିବାକୁ ହେବ କେତେ ବରଷ । ଧୈର୍ଯ୍ୟଧରି ବସିରହନ୍ତି ସେମାନେ । ସଭା ସଇଲେ କରମାସାନି ନାଁରେ ସମସ୍ତେ ସେଇବାବୁଙ୍କୁ ଭୋଟ୍ ଦେବାର ଶପଥ କରି ଲୁଗା, ଟଙ୍କା, ଚାଉଳ ନେଇ ଫେରନ୍ତି ଖୁସି ମନରେ । କାଗଜ ଖଣ୍ଡକରେ ଟିପଚିହ୍ନରେ ବାବୁ ଦେଖାଇଥିବ । ଚିହ୍ନରେ ମାରିଦେଲେ କାମ ସଇଲା । ଏତିକି ଟିକେ ପାଇଁ ବାବୁ ବିଚରା କେତେ କଷ୍ଟ କରୁଛନ୍ତି, ଆହାଃ......ବା' କହେ । ସାତବର୍ଷର କାନ୍ଦୁରୀ ତ ନାଲି-ଗୋଲାପି କସ୍ତାଶାଢ଼ୀ ପାଇଁ ଅସମ୍ଭବ ଦୁର୍ବଳତା । ପିଲାଟି ଦିନରୁ ମା'କୁ ଦେଖିନଥିବା ଝିଅଟାକୁ ବା'ର ଶରଧା ସରଗର ଚାନ୍ଦଠୁ ବି ଅଧିକ ମଧୁର ଲାଗେ । ବା'କୁ ଜ୍ୱର ହେଲେ ସେ ମୁଣ୍ଡିଆ ପାହାଡ଼ ପାଖୁ ଦଉଡ଼ିଯାଏ । ଆଖିରୁ ଲୁହ ଗଡ଼ାଏ ଆମ୍ଭ ଗୋଟେ ଭୋଗଦେବାକୁ ମାନସିକ କରେ । ବଇଦ ପାଖରୁ ଓଷଦ ଆଣି ବା'କୁ ପିଆଇବାକୁ ଗଲେ ଦେଖେ ବା'ଟା ହାଣ୍ଡିଆ ପିଇ ମଶିଣା

ଘୋଡ଼ି ଶୋଇ ପଡ଼ିଛି । ଘରର ଚାରିଆଡ଼େ ଆଖିବୁଲାଏ କାନ୍ଦୁରୀ । ବା'ଟା ଏଡ଼େ ଅବୁଝା ଯେ ରୋଗ ବଇରାଗରେ ବି ନାଲି ପାଣି କି ହାଣ୍ଡିଆ ଖୋଜେ ହେଲେ ଓଷଟିକେ ଖାଏ ନାହିଁ । ହଁ.....ବା'ଟା ତ ମୁରୁଖ ମଣିଷଟା ସେ ବା ଏସବୁ ଜାଣିବ କେମିତି । କାନ୍ଦୁରୀ ସିନା 'କ', 'ଖ' ପାଠ ଶିଖିଲାଣି ଯେ କେତେକଥା ଜାଣିଲାଣି । ଦେଶୀମଦ, ହାଣ୍ଡିଆ ଏସବୁ ଖରାପ କଥା ।

'ପାଠପଢ଼ିବା, ମଧୁବାବୁ ସଙ୍ଗେ ଲଢ଼ିବା' ଏଇକଥା ବା କେବେବି ବୁଝିପାରିବ ନାହିଁ । ଛୋଟ କାନ୍ଦୁରୀ ବୟସ୍କା ନାରୀଟି ପରି ନିଜ ମନକୁ ବୁଝାଏ । ମୁଁ ବଡ଼ ହୋଇଗଲେ ମୋ ଗାଁର ସମସ୍ତଙ୍କୁ ବୁଝାଇବି । ସମସ୍ତେ ପାଠ ପଢ଼ିବେ, ବଡ଼ ମଣିଷ ହେବେ, ଏମିତି ପଶୁପରି ଜୀବନ ଜୀଇଁ ଲାଭ କ'ଣ ? ସ୍କୁଲରେ ପାଠ ଶିଖାଉଥିବ । ଆଜ୍ଞା କେତେକେତେ କଥା କହନ୍ତି । ସେ ସହରରୁ ଆସିଛନ୍ତି । ଜଳକା ମାରି ଚାହିଁ ରହେ କାନ୍ଦୁରୀ । ତାଙ୍କ କଥାଗୁଡ଼ା ତା ମଗଜରେ ପଶେନାଇଁ । ଆଦିବାସୀ ଭାଷା ଜାଣନ୍ତିନି ଆଜ୍ଞା, ଓଡ଼ିଆଭାଷା ଜାଣେନି କାନ୍ଦୁରୀ ହେଲେ ଦୁହିଁଙ୍କର ଅବୁଝା ପଣିଆ ଭିତରେ ବହୁତ କିଛି ବୁଝିଯାଏ ସେ ! ଧୀରେଧୀରେ ଗାଁ ସ୍କୁଲର ପାଠ ସରିଗଲା । ମାଇନର୍ ପାଠ ପଢ଼ିବା ପାଇଁ ସହରକୁ ଯିବାକୁ ଚାହେଁ ସେ ।

ବୟସ ତାକୁ ବାଆର ବା' ରାଜି ହେଉନାହିଁ ।

ସହରରେ ମଣିଷ ରହନ୍ତିନାଇଁ । ବାଘ, ଭାଲୁଙ୍କ ଠାରୁ ଅଧିକ ହିଂସ୍ର ପଶୁ ରହନ୍ତି । ଝିଅମାନଙ୍କୁ ଖିନ୍‌ଭିନ୍ କରି ଖାଇ ଦିଅନ୍ତି, ବା' କହେ । ସେଠି ଆଦିବାସୀ ଝିଅମାନଙ୍କ ପାଇଁ ରହିବାକୁ ବଢ଼ିଆ ହଷ୍ଟେଲ ଅଛି । ପାଠ ପଢ଼ିଲେ ଖାଇବା ରହିବା ମାଗଣା ପୁଣି ତା'ଉପରେ ପ୍ରତିମାସକୁ ମିଳିବ ଶହେଟଙ୍କା । ଆଜ୍ଞାଙ୍କଠାରୁ ଏସବୁ ଖବର ସଂଗ୍ରହ କରି ବା'କୁ ବୁଝାଉଥିଲା କାନ୍ଦୁରୀ ।

ଅବୁଝା ବା'ଟା 'ଶହେ ଟଙ୍କା' ଶୁଣି ଖୁସି ହୋଇଥିଲା । ଏକକାଳୀନ ଶହେଟଙ୍କା ଦେଖି ନଥିବା ବା' ପାଇଁ ଏତିକି ପ୍ରଲୋଭନ ତ କିଛି କମ୍ ନଥିଲା । ବା' ଆଖିରେ ଖୁନ୍ଦି ହୋଇଯାଇଥିଲା ଆକାଶେ ସ୍ୱପ୍ନ କାନ୍ଦୁରୀ ପାଇଁ । ପଢ଼ିବାବେଳୁ

ଏତେ ଟଙ୍କା ଦେଲାଣି ଝିଅଟା, ପଢ଼ି ସତେ ବଡ଼ ଅଫିସରଟିଏ ହେବ ! ବା' ଆତ୍ମହରା ହୋଇଥିଲା, କାନ୍ଦୁରୀକୁ ଆଜ୍ଞାଙ୍କ ସହ ସହରକୁ ଛାଡ଼ିଥିଲା । କାନ୍ଦୁରୀର ସ୍ୱପ୍ନ ସତ ହୋଇଥିଲା । କାନ୍ଦୁରୀ କସ୍ତାଛାଡ଼ି ଫ୍ରକ୍ ପିନ୍ଧିଥିଲା । କାନ୍ଦୁରୀ ଲାଜ ଶିଖିଥିଲା, ସଭ୍ୟ ହୋଇଥିଲା । ହଷ୍ଟେଲରେ ଦିଦି, ଆଜ୍ଞା ସବୁରିକାମ କରି ସେ ଖୁସି ହେଉଥିଲା ସମସ୍ତଙ୍କୁ ସେ' ଭଲ ପାଉଥିଲା । ତା' ସହ ଆସିଥିବା ଝିଅଗୁଡ଼ା ଅଧାରୁ ଅଧାରୁ ପାଠ ଛାଡ଼ିଥିଲେ ବାହା ହେବାପାଇଁ, ମୂଲ ଲାଗିବା ପାଇଁ କିମ୍ବା ଦାଦାନ ହେବାପାଇଁ । ମାତ୍ର ସେ ରହିଥିଲା ଯିଦ୍‌ରେ । ସେ ପାଠ ପଢ଼ିବ, ବଡ଼ ମଣିଷ ହେବ, ମଧୁବାବୁ ପରି ଲଢ଼ିବ । ମଧୁବାବୁଙ୍କୁ ଦେଖିବାକୁ ତା'ର ପ୍ରବଳ ଇଚ୍ଛା ଥିଲା । ସେ କଥା ଦିନେ ଶ୍ରେଣୀରେ କହିବାରୁ ଆଜ୍ଞା ହସିହସି ଗଡ଼ିଯାଇଥିଲେ । ସେ ଅବୁଝା ଆଖିରେ ଚାହିଁ ରହିଥିଲା । ସେ ଓଡ଼ିଆଭାଷା ଭଲଭାବରେ ଶିଖି ଯାଇଥିଲା । ବା' ଆସି ପ୍ରତିମାସରେ ଟଙ୍କା ନେଇଗଲାବେଳେ ସେ ଦୁଃଖ କରୁଥିଲା, ବା'ଟା ନିଶ୍ଚୟ ମଦ କି ହାଣ୍ଡିଆ ପିଉଥିବ । ଦିନକୁ ଦିନ କେମିତି କଙ୍କାଳ ସାର ଦିଶିଲାଣି । ଆହାଃ... ଗଣ୍ଡାଏ କିଏ ଫୁଟାଇ ଖାଇବାକୁ ଦେବାକୁ ବି ତ ନାହିଁ । କାନ୍ଦୁରୀର ମନ ଭିତରେ କେଉଁଠି ମା'ଟେ ଛପିରହିଛି ଏକଥା ସେ ନିଜେ ବି ଜାଣେନା' । ମା'ର ଅନ୍ତର ପିଲା ପାଇଁ କାନ୍ଦିବା ପରି କାନ୍ଦୁରୀର ଅନ୍ତର ତା' ବା' ପାଇଁ କାନ୍ଦେ । ସେ ବା' କଥା ଭାବୁଭାବୁ ତା'ର ମୁଣ୍ଡିଆ ପାହାଡ଼ କଥା ମନେପଡ଼େ । ସେ ଆନମନା ହୁଏ । କେତେକେତେ କଥା ସେ ପାହାଡ଼କୁ କହି ତାର ଛାତି ହାଲୁକା କରୁଥିଲା । ସେଇ ନିର୍ଜୀବ ପାହାଡ଼ଟା ସତେ ଯେମିତି କାନ୍ଦୁରୀର ସବୁଦୁଃଖକୁ ସାଉଁଟି ନେଇ, ତା' ଶାଢିକାନିରେ ସୁଖଗୁଡ଼ା ଅଜାଡ଼ି ପକାଉଥିଲା । ଏବେ ସବୁବେଳେ ତା ବା' କଥା ଭାବି ଛାତି ଭିତରଟା କେମିତି ଗୋଟେ ଝିମ୍‌ଝିମ୍ ହୋଇଯାଏ । ବା'ଟା ତାକୁ ଛାଡ଼ି କେତେ ଏକେଲା ହୋଇଯାଇଥିବ । ତା'ର ସବୁ ଦୁଃଖ ସୁଖ ଓ ବା'କୁ ନେଇ । ବା' ଖୁସିରେ ରହିଲେ ସେ ଖୁସି, ବା' ଦୁଃଖୀ ହେଲେ ସେ ଦୁଃଖୀ ହୁଏ । ଯେବେ ମହାଜନ ପାଖେ କାମପାଏ, କି ଜଙ୍ଗଲରୁ ଜିନିଷ ନେଇ ବିକି ଦୁଇ ପଇସାଟା ପାଏ ସେବେ ଖୁସି ହୁଏ । ଖୁସି ହେଲେ କାନ୍ଦୁରୀ ପାଇଁ ପ୍ଲାଷ୍ଟିକ୍ କ୍ଲିପ୍ ଠାରୁ ପ୍ଲାଷ୍ଟିକ୍ ଚପଲ୍ ଯାଏ ଆଣେ । ଆଉ ଯେବେ

ମହାଜନ ପାଖରୁ କୋରଡ଼ାମାଡ଼ ଖାଇ ପିଠି ଫଟାଇ ରକ୍ତାକ୍ତ ହୋଇ ଆସି ହାଣ୍ଡିଆ ପିଏ ବିଡ଼ବିଡ଼ ହୁଏ, ଯନ୍ତ୍ରଣାରେ କୁନ୍ଥାଏ କାନ୍ଦୁରୀକୁ ଭାରୀ କାନ୍ଦଲାଗେ । ଗାଁରେ ବର୍ଷା ନହେଲେ ସେମାନେ ଖାଇବାକୁ ପାଆନ୍ତି ନାହିଁ । ଆମ୍ବଟାକୁଆ ଖାଇ ବଞ୍ଚନ୍ତି । ଗାଁର ସବୁରି ଜୀବନ ସେହିପରି ହୋଇଥିବାରୁ କାନ୍ଦୁରୀ ଜାଣେ ଏହା ହିଁ ବଞ୍ଚିବାର ପଥ । ମାତ୍ର ଏବେ ମାଇନର ପାଠ ସାରି ହାଇସ୍କୁଲରେ ପାଦଥାପିଥିବା କାନ୍ଦୁରୀ ଅନେକ କିଛି ଜୀବନ ବିଷୟରେ ଜାଣିଲାଣି । ମଝିରେ ମଝିରେ ବା' ସହ ଗାଁକୁ ଆସିଲେ ସେ ଗାଁର ମାନଚିତ୍ର ନିଶ୍ଚୟ ବଦଳାଇ ଦେବ ଏଇ ଶପଥ ନେଇ ଫେରିଆସେ । ଆହୁରି ଆହରି ମନ ଲଗାଇ ପାଠପଢ଼େ । ସରକାର ନାମ୍ନୀ ସେଇ ଅଦେଖା ଦେବତାଙ୍କୁ ସବୁଦିନ ଜୁହାର କରେ । କିଏ ସେ, ଯିଏ ତା ଜୀବନରେ ଆଲୋକ ଆଣିଦେଲା । ସେ ସହରୀ ମଣିଷଙ୍କୁ ଭଲପାଏ, ସେମାନଙ୍କ ପରି ହେବାକୁ ପ୍ରତିଜ୍ଞା କରେ ।

ଏଇ କିଛିଦିନ ହେଲା କାନ୍ଦୁରୀ ଲକ୍ଷ୍ୟ କରୁଛି ଏକ ପରିବର୍ତ୍ତନ । ଏକ ନିରୁଦ୍‌ବେଗ, ନିର୍ବାକ୍ ମଣିଷ ଜାତି ଭିତରେ ପ୍ରଚଣ୍ଡ ଅଗ୍ନିର ଲେଲିହାନ ଶିଖାଟିଏ ଯେପରି ଅସ୍ତବ୍ୟସ୍ତ ହୋଇ ଖୋଜୁଛି ଉଦ୍‌ଗୀରଣର ପଥ । ଏକ ବିପ୍ଳବର ବହ୍ନି ହୁତ୍‌ହୁତ୍ ହୋଇ ଜଳିବାକୁ ଆରମ୍ଭ କରିଛି କାନ୍ଦୁରୀ ଭିତରେ । ସେ ଜାଣେ ଜାତି ତାଙ୍କର ପ୍ରତିବାଦ କରି ଶିଖିନି । ସଭ୍ୟ ମଣିଷର ବର୍ବରତା, କ୍ରୁରତା, ହିଂସ୍ରତାକୁ ମଥାପାତି ସହି ତଥାପି ପାପୁଲିରେ ସାଉଁଟିଛି ସୁଖି ଜୀବନ । ତେବେ ତା ଭିତରେ ଏତେ ବଡ଼ ଅସମ୍ଭବ ସୁନାମୀର ଜୁଆର ଅନୁଭବ କାହିଁକି ? କିପରି ? ସେ ବି ତ ଆଦିବାସୀ ଝିଅଟିଏ ବିନା ଓଜର ବିନା ଆପତ୍ତିରେ ବଞ୍ଚିବାକୁ ଶିଖିଥିବା ମର୍ଯ୍ୟାଦାବନ୍ତ ଜାତିର ଦାୟାଦଟିଏ । ତେବେ ତା' ଭିତରେ ଆଜିକାଲି ଏଇ ଉତ୍‌ପୀଡ଼ନ କାହିଁକି ? ସେ ଏବେ ତା ବା'ର କୋରଡ଼ାଖିଆ ପିଠିର ଯନ୍ତ୍ରଣା, ଗାଁରୁ ସହରକୁ କାମ ଖୋଜିଯାଉଥିବା ଦାଦନମାନଙ୍କର ନିର୍ଯ୍ୟାତନା, ଝିଅମାନଙ୍କର ଯୌନ ଅତ୍ୟାଚାରର ବେଦନାକୁ ମର୍ମେ ମର୍ମେ ଅନୁଭବ କରେ । ପ୍ରତିବାଦର ସ୍ୱରଟିକୁ ନିଜ ଜଠର ରୁ ଜନ୍ମ ଦେବାପାଇଁ ପଣ କରୁଛି । ସେ ତ ଅସମ୍ଭବ କ୍ଷମତା ଧାରୀ ଅଯୋନୀସମ୍ଭୂତା ନାରୀଟିଏ ନୁହେଁ । ଯେଉଁ ସରକାରଙ୍କର ସେ ଏତେ ଗୁଣମୁଗ୍‌ଧା କିଙ୍କରୀଟିଏ

ସାଜିଥିଲା ସେଇ ରାଜନୀତିଆମାନଙ୍କର ଭୋଟ ନେବାର ଚାଲ, ସରକାରୀ କର୍ମଚାରୀମାନଙ୍କର ତାଙ୍କ ଗ୍ରାମର ଲୋକମାନଙ୍କର ନିରୀହତାକୁ ହତିଆର କରି ଶୋଷଣ କରିବାକୁ ବୁଝିପାରିବା ପରେ ତା' ନିଜକୁ ଧିକ୍‌କାର କରିଥିଲା । ତାଙ୍କ ଗାଁର ଯୋଜନଯୋଜନ ବ୍ୟାପି ଅଞ୍ଚଳରେ ଡ଼ାକ୍ତରଖାନାଟିଏ, ସ୍କୁଲ ବା କଲେଜଟିଏ ନାହିଁ । ଅଥଚ ଏଠି ସହରର ବାବୁଭାୟାମାନେ କି ଅୟସ୍‌ର ଜୀବନ ବିତାଉଛନ୍ତି । ନାନା ଜିନିଷର ସୁଲଭତା କି ଆରମ୍‌ରେ ସମୟ କାଟନ୍ତି ଏଠିକା ଲୋକମାନେ । କିନ୍ତୁ କାହିଁକି ? କାହିଁକି ଏଇ ଅସମାନତା ? ଆମେ ସଭିଁଏ ସ୍ୱାଧୀନ ଭାରତର ନାଗରିକ । ଆମର ବଞ୍ଚିବା, ବଢ଼ିବା କ'ଣ ସମାନ ହେବ ଉଚିତ୍ ନୁହେଁ ? ସଭ୍ୟ ମଣିଷର ମୁଖାପିନ୍ଧା ନିଜ ଦେଶରେ ଏମାନେ କାହିଁକି ଏତେ ଅତ୍ୟାଚାରିତ କରି ରଖନ୍ତି ଆଉ ଗୋଷ୍ଠୀଏ ଲୋକଙ୍କୁ ?

ସେଇ ଆଦିବାସୀ ଅଧୁଷିତବଣ୍ଡା ଅଞ୍ଚଳର ପ୍ରଥମ ମାଟ୍ରିକୁଲେଟ୍ କାନ୍ଦୁରୀକୁ ମିଳିଥିଲା ପ୍ରଚୁର ସମ୍ମାନ ନିଜ ଅଞ୍ଚଳରୁ, ସରକାରଙ୍କ ତରଫରୁ ଅନ୍ୟ ଅନେକ ଅନୁଷ୍ଠାନରୁ । ଅଥଚ କାନ୍ଦୁରୀ ନିଜକୁ ନୀଳବର୍ଣ୍ଣରଶୃଗାଳଟି ପରି ମନେ କରୁଥିଲା ନାଁ ସେ ନିଜ ଜାତି ସହ ମିଶିପାରୁଥିଲା ନାଁ ସହରୀ ସଭ୍ୟତାକୁ ଆଉ ଭଲ ପାଇ ପାରୁଥିଲା । ସବୁରି ଭିତରେ ମୁଖପିନ୍ଧା ମଣିଷଗୁଡ଼ାଙ୍କର ବର୍ବରତା ହିଁ କେବଳ ତାକୁ ଦେଖାଯାଉଥିଲା । ସେ ଧୀରେଧୀରେ ଗାଁ ଲୋକଙ୍କୁ ଏକଜୁଟ୍ କରି ସବୁ ଛଳନା, ଶଠତା, ଭୋଟ ନେବାର ଚାଲ୍, ଭୋଟ୍‌ର ଅର୍ଥ ସବୁ ବୁଝାଇବାକୁ ଚେଷ୍ଟା କଲା । ଦିନେ ତା' ଭିତରେ ଜାଗଲିଆ ନିଆଁ ବ୍ୟାପିଗଲା ସମଗ୍ର ଅଞ୍ଚଳକୁ । ସେମାନେ ସମସ୍ତେ କାନ୍ଦୁରୀକୁ ନେତା ଭାବରେ ବାଛିଲେ । ସେମାନେ ପ୍ରତିବାଦ କରିବେ ସରକାରଙ୍କ ବିରୁଦ୍ଧରେ, ରାଜନୀତିଆ, ମହାଜନ, ଟାଉଟର ସବୁରି ବିରୁଦ୍ଧରେ । ଆସନ୍ତାକାଲିଠାରୁ ଆରମ୍ଭ ହେବ ଅଭିଯାନ । ମଣିଷ ପରି ମଣିଷ ହୋଇ ବଞ୍ଚିବାରେ ସଂଗ୍ରାମ କରିବେ, ଅଧିକାର ପାଇଁ ଲଢ଼େଇ କରିବେ । କାନ୍ଦୁରୀ ଚିର ଅବହେଳିତ ତାଙ୍କର ଆଦିବାସୀ ଅଞ୍ଚଳକୁ ନ୍ୟାୟ ଦେବାର ଶପଥ ସମସ୍ତଙ୍କୁ କରାଇଲା । ସାକ୍ଷୀ ରହିଲେ ସେଇ ମୁଣ୍ଡିଆ ପାହାଡ଼ ଆଉ ଗାଁ ଠାକୁରାଣୀ କରମାସାନି ଦେବ୍‌ତା, କୁରେଇ ଫୁଲର ମହକ, ଜଙ୍ଗଲର ଗଛପତ୍ରମାନେ । କାନ୍ଦୁରୀ ଆଖିକୁ ନିଦ ନାହିଁ । ଛଟପଟ ହେଉଛି ସେ ତା' ଗାଁ କଥା ଭାବି । ବା' ତା'ର ଆଉ ହାଣ୍ଡିଆ କି ମଦ

ଖାଏ ନାଁ । ଗାଁ ସାରାର ସମସ୍ତେ ମଧ ଛାଡ଼ିଲେଣି । କାନ୍ଦୁରୀ ପାଖରେ ସିଲଟ ଧରି କେତେକେତେ ମରଦ, ମାଇକିନିଆ ବି ପଢ଼ିବସନ୍ତି । ନିଦୁଆ ବା'ଟାର ଅଲରା କେଶକୁ ଧୀରେଧୀରେ ଆଉଁସିବା ବେଳେ ତା' ଛାତି ଭିତରଟା ମାତୃତ୍ୱର କାରୁଣ୍ୟରେ କୋହମୟ ହୋଇଉଠିଲା ।

ରାତି କେତେ ହେବ କେଜାଣି । ହଠାତ୍ ଧପ୍‌ଧପ୍ ଜୋତାଗୁଡ଼ାର ଆଓ୍ୱାଜରେ କାନ୍ଦୁରୀର କାନ ଠିଆ ହୋଇଗଲା । କୁଡ଼ିଆର ଦୁଆରରେ ପ୍ରବଳ ଆଘାତ । ପୋଲିସ୍‌ମାନଙ୍କର ବୁଟ୍‌ମାଡ଼ ଓ ନିରାଘାତ । ଶଳା ଉଠ୍‌ବେ ମାଓବାଦୀ ନକ୍‌ସଲପନ୍ଥୀ ! ସରକାର, ଏମ.ଏ.ଲେ. ମନ୍ତ୍ରୀ, ଠିକାଦାର ସବୁରି ବିରୁଦ୍ଧରେ ଶୋଭାଯାତ୍ରା କରିବ ନାଇଁ.... । ରହବେ ଶଳା... ଜେଲର ଚାରିକାନ୍ଥରୁ ବାହାରିବୁ ଯେ ବାପ ଝିଅ ଗାଁ ଲୋକଙ୍କୁ ମତେଇ ଆନ୍ଦୋଳନ କରିବ । ଶଳା ତୁମ ଜାତି ତ ଗୋଲାମଗିରି କରିବା, ପାଠ ଦି'ଅକ୍ଷର ପଢ଼ି ମୁଣ୍ଡରେ ଚଢ଼ିବ ।

ଖଣ୍ଡଖଣ୍ଡ କରି ତାଟି କବାଟ ଭାଙ୍ଗିଯିବାପରେ ମାଡ଼ି ଆସିଲେ ପୋଲିସ୍ କେତେଜଣ । ଗାଁ ଟାଉଟର ମଦନା, ମହାଜନ, ଆଉ ତାଙ୍କ ଲୋକମାନେ । କାନ୍ଦୁରୀର ରକ୍ତ ଟକ୍‌ମକ୍ ହୋଇ ଫୁଟିଲା । ସେ ବି ଆଦିବାସୀ ତିରିଲା- କାକେ ଡ଼ରବାର ନାଇଁ...... ଦଉଡ଼ିଗଲା କାନ୍ଦୁରୀ ଘରକୋଣକୁ । ଉଠାଇ ଆଣିଲା ଟାଙ୍ଗିଆଟା ତା'ର କାଳୀମୂର୍ତ୍ତିର ଉଗ୍ରରୂପରେ ହିଗଲେ ଲୋକମାନେ । କାକୁସ୍ଥ ବା'ର ଥରିଲା ଚେହେରା, ଅନ୍ୟପଟେ ଉଚ୍ଚ ପଦସ୍ଥ ପୋଲିସ୍ କର୍ମଚାରୀମାନଙ୍କର ବନ୍ଧୁକର ସଙ୍ଗୀନ ମୂନ ମଝିରେ ବିପ୍ଳବିଣୀ କାନ୍ଦୁରୀର ରଣହୁଙ୍କାର........ । ଯିଏ ସାମ୍ନାକୁ ଆସିବ ହାଣି ଦେବି..... ତୁମମାନଙ୍କ ଠାରୁ ନ୍ୟାୟ ମାଗିବି ମୁଁ । ଯୁଗଯୁଗର ଶୋଷଣ, ଅତ୍ୟାଚାର, ଯାତନାର ଯବାବ ଦେବି ମୁଁ । ମୁଁ ନେବି ପ୍ରତିଶୋଧ..... ମୁଁ ଜାଳିଦେବି ବିଦ୍ରୋହର ବହ୍ନି....... ।

ହଠାତ୍.............ଗୁଳିଟିଏ ଭେଦିଗଲା ବା'ର ଛାତି ଭିତରକୁ ପ୍ରାଣର ବା' କରୁଣ ଆର୍ତ୍ତନାଦ କରି ଟଳିପଡ଼ିଲା । ସ୍ତବ୍ଧ କାନ୍ଦୁରୀର ପୃଥିବୀର ଘୂର୍ଣ୍ଣନ ସତେ ଯେମିତି କ୍ଷଣିକ ମଧ୍ୟରେ ବନ୍ଦ ହୋଇଗଲା । ଧ୍ୱସ୍ତ ବିଧ୍ୱସ୍ତ ହୋଇଗଲା କାନ୍ଦୁରୀର ସ୍ୱପ୍ନର ସୁନ୍ଦର ସବୁଜ ବନାନୀ । ନିରୀହ କାନ୍ଦୁରୀ ଆଖିରେ ଜଳିଉଠିଲା କ୍ରୋଧାଗ୍ନିର

ସ୍ଫୁଲିଙ୍ଗ । ଯୁଗଯୁଗର ଉତ୍ତପ୍ତ ଆଗ୍ନେୟଗିରିର ମୁଖା ଖୋଲି ଯାଇଥିଲା । ଉକ୍ତମୁଖା କାନ୍ଦୁରୀର ଅନ୍ତରରୁ ଲାଭା ନିର୍ଗତ ହେବା ବାଟ ଫିଟିଯାଇଥିଲା । ସେ ଟାଙ୍ଗିଆରେ ଗୋଟେ ଚୋଟ ପକାଇଲା ସେଇ ଅଫିସର ଉପରେ, ପୁଣି ଦଉଡ଼ିଲା ଟାଉଟର ଓ ମହାଜନ ଆଡ଼େ....ଯେଉଁ ବା'ର ବେଦନା, ଶୋଷଣ, ଯାତନାର ଅନ୍ତପାଇଁ ସେ ବଜ୍ରଶପଥ କରିଥିଲା ତା'ର ନିଷ୍ପ୍ରାଣ ଶରୀରଟା ଘରର ଗୋଟିଏ କଣରେ ପଡ଼ିରହିଥିଲା । ଥରଟିଏ ସେପଟକୁ ଚାହିଁଦେଇ ଥରଥର ହୋଇ କମ୍ପି ଉଠିଲା ସେ । ତାର ରକ୍ତାଭ ଆଖି ଆଉ ରୌଦ୍ର ଚେହେରାକୁ ସାମ୍ନା କରିବାର ସତ୍‌ସାହସକୁ ହୁଏତ ଗୋଟାଉଥିଲା ପୋଲିସ୍‌ଦଳ । ଚିତ୍କାର କରି ହଠାତ୍ ଢ଼ଳିପଡ଼ିଲା କାନ୍ଦୁରୀ । ତା'ର ହୃତପିଣ୍ଡଟି ଖିନ୍‌ଭିନ୍ ହୋଇଗଲା ପୋଲିସ୍‌ମାନଙ୍କର ମିଳିତ ଆକ୍ରମଣରେ । ତା'ର ପ୍ରତିବାର ସ୍ୱରଟି ସବୁଦିନ ପାଇଁ ନିର୍ବାପିତ ହୋଇଗଲା ।

ଅଜ୍ଞାନ ଅନ୍ଧାରର ନଦୀଟା ନାଁ ଜ୍ଞାନର ହିଲ୍ଲୋଳମୟ ସମୁଦ୍ରଟା କେଉଁଟା କାନ୍ଦୁରୀକୁ ଜୀବନ ଜିଇଁବାର ପଥ ଦେଖାଇଥାନ୍ତ । ସେ ଜାଣିବା ପୂର୍ବରୁ ସହିଦ ହୋଇ ସାରିଥିଲା ।

ତା ପରଦିନ ସବୁ ସମ୍ବାଦପତ୍ରର ମୁଖ୍ୟ ସମ୍ବାଦଟିର ଶିରୋନାମାଟି ଥିଲା 'କୁମ୍ବିଂ ଅପରେସନ'ରେ ମାଓବାଦୀ ନକ୍‌ସଲପନ୍ଥୀ 'କାନ୍ଦୁରୀ'ର ପୋଲିସ୍ ଏନ୍‌କାଉଣ୍ଟରରେ ମୃତ୍ୟୁ । ନକ୍‌ସଲପନ୍ଥୀ ଗ୍ରାମବାସୀଙ୍କୁ ହାଜତ୍‌ରେ ଭର୍ତ୍ତି । 'କାନ୍ଦୁରୀ'କୁ ଗୁଳି କରିଥିବା ସାହସୀ ପୋଲିସ୍ ଅଫିସର୍‌ଙ୍କୁ ରାଷ୍ଟ୍ରପତି ପୁରସ୍କାର ।



# ଓଃ ସମୟ ! ଫେରନ୍ତା କି ପଛକୁ

ଅନୁରାଧା ବିଶ୍ୱାସ !

ଗୋରୀ, ତନୁପାତଳୀ, ଖଣ୍ଡାଧାର ନାକ, ଆଙ୍କିହେଲାପରି ମୁହଁ । ସୁନ୍ଦରୀ ତାଲିକାର ପ୍ରଥମରେ ରହିବାପରି ଚେହେରା ।

ଇଂରାଜୀ ମିଡ଼ିୟମ୍ ସ୍କୁଲର ଦ୍ୱାଦଶ ଶ୍ରେଣୀର ଛାତ୍ରୀ ! କଲେଜରେ ପଢ଼ିବାକୁ ଖୁବ୍ ଇଚ୍ଛାଥିଲା ତା'ର । ମାତ୍ର ବାପା, ମା'ଙ୍କର ଇଚ୍ଛା ପାଇଁ ବାଧରେ ଦଶମପରେ ସେହି ସ୍କୁଲରେ ହିଁ ପଢ଼ିବାକୁ ହେଲା । ପ୍ରଜାପତିର ଡ଼େଣାପରି ମନରେ ମହୁଲି ନିଶା ଲାଗିପାରିଲାନି । ଚୁଲବୁଲି ନାୟିକାଟିଏ ପରି ସାଜିବାକୁ ଖୁବ୍ ମନ ତାର । ମ୍ୟାଚିଙ୍ଗ୍ ଡ୍ରେସ୍ ସାଙ୍ଗକୁ, ଚୁଡ଼ି, ବିନ୍ଦି ଆଉ ସବୁ ଲଗାଇ କଲେଜ ଆସିବାକୁ ଭାରି ଇଚ୍ଛା ।

ଅଥଚ !

ତା' ଇଚ୍ଛାରେ କ'ଣ କିଛି ହୁଏ ?

ଏଇ ପୃଥିବୀରେ କେହି କ'ଣ ତା'ର ଇଚ୍ଛା, ଅନିଚ୍ଛା, ମନ, ଅଭୀପ୍ସା କଥା ଭାବେ ?

ସ୍କୁଲର ଡ୍ରେସ୍ କୋର୍ଡ଼ । ତେଲରେ ପାଲିସ୍ କରା ମୁଣ୍ଡ ବନ୍ଧା, ଖ୍ରୀଷ୍ଟିଆନ୍ ସ୍କୁଲରେ ବାରଣ ଖୁବ୍ ବେଶୀ ।

ମନ୍ଥଲି ଟେଷ୍ଟ, ଟର୍ମିନାଲ୍ ଟେଷ୍ଟ, ହାଫ୍ଇୟରଲି ଟେଷ୍ଟ ।

ଓଃ... ଟେଷ୍ଟ, ଟେଷ୍ଟ, ଟେଷ୍ଟ । ପାଠ, ପାଠ, ପାଠ ସ୍କୁଲରେ ପାଠ ଛଡ଼ା ଜୀବନ ନାହିଁ ।

ଘରେ ବି ଅବସ୍ଥା କେଉଁ ଅଲଗା ।

ମନେହୁଏ ଯେମିତି ନିବୁଜ ଦୁର୍ଗର ବନ୍ଦନୀ ରାଜଝିଅଟିଏ ।

ରେଜେଲ୍ଟ ବାହାରିବା ପରେ ଘରେ ତୁମୁଳକାଣ୍ଡ ! ଡ଼ାଡ଼ି ମମିଙ୍କୁ ଦୋଷ ଦିଅନ୍ତି, ମମି, ଡ଼ାଡ଼ିଙ୍କୁ । ତୁମର ପାର୍ଟି, ପିକ୍‌ନିକ୍ ଫୁରସତ ଥିଲେ ତ ଝିଅକୁ ଦେଖିବ ? ଅଫିସରୁ ସମୟ ମିଳିଲେ ତ ପିଲାକଥା ବୁଝିବ ? ପୁଣି ଦୁହିଁଙ୍କର ମିଳିତ ଆକ୍ରମଣ ଝିଅ ଉପରେ । ଝିଅର କେତେ ଦିନ ଟି:ଭି ଦେଖା, ଭିଡ଼ିଓ ଗେମ୍ ଖେଳା, ଇଣ୍ଟରନେଟ୍‌ରେ ଚାଟିଙ୍ଗ ଉପରେ ଶହେ ଚଉରାଳିଶି ଧାରା ଜାରିହୁଏ । ପୁଣି କିଛି ଦିନପରେ ଯଥା ପୂର୍ବମ୍ ତଥା ପରମ୍ ।

ଅନୁରାଧାର ମନଖାଲି ଛଟପଟ ହୁଏ । ଏଇ ପାଠର ଜଙ୍ଗଲରୁ ବାହାରି କେଉଁଠି ସ୍ୱସ୍ତିର ନିଶ୍ୱାସ ମାରିବାକୁ ଖୁବ୍ ଇଚ୍ଛା ହୁଏ । ଢ଼େର ଗପ ଗପି, ଫିଲ୍ମ ଦେଖି, ଚେନାଚୂର ଖାଇ, ସମୁଦ୍ରକୂଳରେ ଦଉଡ଼ିବାକୁ ଇଚ୍ଛା ହୁଏ । ମାତ୍ର କାହା ପାଖରେ ତା' ପାଇଁ ବା ସମୟ କାହିଁ ? ମମିର ଅନେକ ସାଙ୍ଗ । ବଡ଼ ଖୁବ୍ ବଡ଼ ପଦସ୍ଥ ଅଫସିର ଡ଼ାଡ଼ିତାଙ୍କର ଅଫିସରୁ ଫୁରସତ୍ କାହିଁ । ସେମାନେ ଟିଉସନ୍ ସାର୍‌ଙ୍କ ଠାରୁ ଆରମ୍ଭ କରି ଅନେକ କିଛି ଖଞ୍ଜି ଦେଇଛନ୍ତି ଅନୁରାଧା ପାଇଁ । ଆଉ ଗୋଟିଏ ପିଲା ପାଇଁ ବା କ'ଣ କରିପାରିଥାନ୍ତେ ସେମାନେ । ଭାଇ ଭଉଣୀଟିଏ ପାଇଁ ମନ ଖୁବ୍ ବ୍ୟାକୁଳ ହୁଏ । ମନ ଖୋଲି ସ୍ନେହ ଅଜାଡ଼ି ଦେବାକୁ ମନ ହୁଏ । ଅଥଚ ସେତିକି ବି ତା' ଭାଗ୍ୟରେ ଜୁଟେନି ।

ସମ୍ମିତ୍......ମେଧାବୀ ଛାତ୍ର ! ଏମ୍:ଏସ୍:ସି ଦ୍ୱିତୀୟ ବର୍ଷ ଛାତ୍ର । ଗରୀବ ଘରର ପିଲା । ପିତାଙ୍କ ଦେହାନ୍ତ ପରେ ଭଉଣୀ ସହ ମା'ର ଦାୟିତ୍ୱ ତା' ଉପରେ । ଟିଉସନ୍ କରି ପାଠପଢ଼େ, ଘର ଚଳାଏ, ପୁଣି କମ୍ପିଟେଟିଭ୍ ପାଇଁ ପ୍ରସ୍ତୁତି ବି କରେ । ତା' ମନରେ କେଉଁଠି ଗୋଟେ କେମିତି ହଲଚଲ ହୁଏ । ଅନୁରାଧାର ନାଁ ଉଚ୍ଚାରିଲେ । ସେ ଅଦୂର ଟିଉସନ୍ ସାର୍ । ସେ ହିଁ ଏକମାତ୍ର ବ୍ୟକ୍ତି ଯାହାପାଇଁ

ଅନୁ ବ୍ୟାକୁଳ ହୋଇ ଚାହିଁ ରହିଥାଏ । ସାଜିସୁଜି ଗପିବାକୁ ବସିଥାଏ । ପାଠ କମ୍, ଗପ ବେଶି କରେ । ପାଠ ପଢ଼ିବାକୁ ଖୁବ୍ ତାଗିଦ୍ କରେ ସମ୍ବିତ, ଅଥଚ ପାଗେଳି ଝିଅଟାର ଦୁନିଆଁ ଯାକର ଗପ । ବହୁକଷ୍ଟରେ ଅନୁରାଧାର ପାଠପଢ଼ା ଜାରିରଖେ ସମ୍ବିତ୍ । ଏଇ କେତେଦିନ ହେଲା ଦୁହିଁଙ୍କ ମନ ଭିତରେ ପରସ୍ପର ପ୍ରତି ଅନେକ ଦରଦ ଫୁଟି ଉଠିଛି । ଆକର୍ଷଣର ଦୁହିଁଙ୍କ ଭିତରେ ବଢିଛି । ସ୍ନେହି ପରିବାର ଟିଏ ସମ୍ବିତର । ଅନୁରାଧା ଯାଇଛି ତାଙ୍କ ଘରକୁ, ପିତାମାତାଙ୍କ ଅଗୋଚରରେ ।

ପଇସାକୁ ଛାଡ଼ି ସବୁଅଛି ସେମାନଙ୍କ ପାଖରେ ଆଉ ସବୁଥାଇ ବି ଅନୁରାଧା କେତେ କାଙ୍ଗାଳିନୀ, କେତେ ଦୁଃଖୀ, କେତେ ନିରାଶ୍ରୟା, କେତେ ବେସାହାରା ! ସମ୍ବିତ୍ ବହୁତ ବୁଝାଏ ତାକୁ, ଅନୁରାଧା ବହୁତ କାନ୍ଦେ । ମୁଁ ପାଠ ପଢ଼ିପାରୁନାହିଁ, ତୁମ କଥା ମନେପଡୁଛି ସବୁବେଳେ । ଅବୁଝା ହୁଅନି ଅନୁ ! ମୋକଥା ଭାବ ? କ'ଣ ଅସ୍ତିତ୍ୱ ଅଛି ମୋର ? ଚାକିରୀଟିଏ ହୋଇଯିବା ପର୍ଯ୍ୟନ୍ତ ତୁମେ ପାଠପଢ଼ ତା'ପରେ ଦେଖିବା । ଅଥଚ ଅନୁ ବୁଝେନା, ଯିଦ୍ କରେ, ପାଠ ପଢ଼େନା ! ଅନେକ ଦିନଧରି ସମ୍ବିତ୍ ବୁଝାଇଲା ପରେ ଦିନେ ସେଇ ଅବୁଝା ମନକୁ ବୁଝାଏ ସେ ।

ମନର ଘୋଡ଼ାକୁ ଲଗାମ ଦେବାକୁ ଚେଷ୍ଟା କରେ । ପରୀକ୍ଷା ଆଖି ଆଗରେ, ପ୍ରସ୍ତୁତ ହେବାକୁ ହେବ । ନହେଲେ ରେଜଲ୍ଟ ଖରାପ ହେବ ଆଉ ସମ୍ବିତ୍‌କୁ ବାହାର କରିଦେବେ ପିତା,ମାତା । ଏକ ହଜାରର ଦରମା କମିଯିବ ସମ୍ବିତ୍‌ର ଆଉ ଜୀବନର ସବୁଖୁସି ଚାଲିଯିବ ଅନୁରାଧାର ।

ଦୁହିଙ୍କ ଭିତରେ ଗୋଟିଏ ବଡ଼ ବୁଝାମଣା ହୋଇଛି । ଯେଉଁଦିନ ସମ୍ବିତ୍‌ର ପରୀକ୍ଷା ସରିବ, ତା'ପରେ କେତଟାଦିନ ପରେ ତା'ର ପୋଷ୍ଟିଂ ଅର୍ଡ଼ର ମଧ୍ୟ ଆସିଯିବ । ମାଡ୍ରାସ୍‌ର କୌଣସି ବ୍ୟାଙ୍କ୍‌ରେ କିରାଣୀ ଚାକିରୀଟିଏ ପାଇଯାଇଛି ସେ । ତା'ପରେପରେ ଅନୁରାଧାର ମଧ୍ୟପରୀକ୍ଷା ସରିଯିବ, ଆଉ ସେ ଦୁହେଁ ବିବାହ କରିବେ ବୋଲି ପ୍ରତିଶ୍ରୁତି ଦେଇ ସମ୍ବିତ୍ ଏହା ମୋର ଶପଥ । ଭଲ କରି ଜାଣେ

ସମ୍ପିତ୍ ପରି ପିଲାକୁ କେବେ ଜ୍ୱାଇଁ କରିବାକୁ ରାଜି ହେବେ ନାହିଁ ବାପା, ମା' । ଏବେ ମାତ୍ର ବୟସ ତାକୁ ଅଠର । ସେ ଶୁଣେ ଡ଼ାଡ଼ି, ମାମି ତାକୁ ପାଠ ପଢ଼ାଇବାକୁ ଫରେନ୍ ପଠାଇବେ । ସେ ବହୁତ ପଢ଼ି ଭଲ ଚାକିରୀ କରିବ ଆଉ ବିରାଟ ଧନୀ କୌଣସି ଏନ୍.ଆର୍.ଆଇକୁ ସେମାନେ ତାକୁ ବାହା କରିବେ । ଯାହାଫଳରେ ସେମାନେ ଫରେନ୍ କଣ୍ଟ୍ରିକୁ ମଧ୍ୟ ଯାଇପାରିବେ । ସେ ଜାଣେ ବେଳେବେଳେ ତା' ମାମି ତା' ପାଇଁ କେତେ ସ୍ୱପ୍ନ ଦେଖେ । ଭଳିକିଭଳି ଗହଣା, ଆଲମାରି ଭର୍ତ୍ତି ଶାଢ଼ୀ ଦେଖାଇ କହେ ଏସବୁ କାଳେ ଅନୁରାଧାର । ଡ଼ାଡ଼ିଙ୍କର ସବୁ ସମ୍ପତ୍ତି ବି ତା'ର । କେବଳ ସେ ପାଠପଢୁ ବହୁତ ପାଠ ।

କିନ୍ତୁ ତା' ମନ କଥା କିଏ ଜାଣେ ?

ସେ ଯେ ପାଠକୁ ଘୃଣା କରେ ?

ସେଯେ ଗୀତ ବୋଲିବାକୁ ଭଲ ପାଏ, ବର୍ଷାରେ ଭିଜିଭିଜି ଦଉଡ଼ିବାକୁ ଭଲପାଏ, ପିକ୍‌ଚର ଦେଖିବାକୁ ଚାହେଁ । ଗୀତରେ ସେ ଭାରି ଖୁସିହୁଏ । ଅଥଚ ଡ଼ାଡ଼ି ମମି ଦୁହିଁଙ୍କର ପ୍ରବନ୍ଧ ଘୃଣା ଏସବୁ ଗୀତ, ନାଚ, ଖେଳକୁଦକୁ । ସେମାନେ ଚାହାଁନ୍ତି ଅନୁ ବହୁତ ପଢୁ, ଖାଲି ପଢୁ, ଏମ୍.ବି.ଏ ପଢୁ । ଆଇ:ଏ:ଏସ୍ ହେଉ.... । ଆଇ :ଏଫ୍:ଏସ୍ ହେଉ । ଗୀତ ଗାଇଲେ ରାଗନ୍ତି, କଥା କହିଲେ ରାଗନ୍ତି, ଫାଲ୍‌ତୁ ସେ ସମୟ ନଷ୍ଟ ସେମାନେ ଚାହାଁନ୍ତି ନାହିଁ । ଖାସ୍ ଏଇଥିପାଇଁ ଆହୁରି ବେଶୀ ବେଶୀ ପାଖେଇ ଆସେ ସମ୍ପିତ୍ । ଗୋରା, ନହନହକା, ସ୍ମାର୍ଟ, ଅନୁର ମନର ରାଜକୁମାର । ଅଜସ୍ର ତରଙ୍ଗ ଖୋଳିଯାଏ ଅନୁ ମନରେ । ଛାତି ଭିତରେ କୋଟି ଚମକ, କମ୍ପନ, ଗୋଟିଏ ସୁନ୍ଦର ରାଗର ରାଗିଣୀ ବାଜିଉଠେ । ପ୍ରେମର ଋତୁରେ ଋତୁପର୍ଣ୍ଣା ଝିଅଟା ଜୀବନର ନିଃସଙ୍ଗତା, ଭୁଲି ତାର ଫଲ୍‌ଗୁରେ ରଙ୍ଗୀନ ହୋଇଯାଏ । ଓଃ ଜୀବନର ଏଇ ମଧୁରତମ ଉଚ୍ଛ୍ୱାସ ଲୁଚି ଏତେଦିନ କେଉଁଠିଥିଲା ? ସମ୍ପିତ୍‌କୁ ବାହାହେଇ ସେ ସୁଖର ସଂସାର କରିବ । ଅନେକ ସ୍ୱପ୍ନର ଅୟୁତ କାହାଣୀ ତା' ମନରେ । ବୋଧେ ପ୍ରତ୍ୟେକ ଝିଅର ଦେହରେ ବସନ୍ତ ତା'ର ପ୍ରଥମ ପରଶ

ଦେବାବେଳକୁ ମନରେ କାହାରି ନାଁ କାହାରି ପାଦଚିହ୍ନ ପଡ଼ିସାରିଥାଏ । ଯାହାକୁ ପାଦୁକାରେ ସାରାଜୀବନ ଜୀଇଁବାର ଶପଥ କରେ ସେ । ଅଥଚ ସେ ଜାଣେନା ବିଧାତା ତା'ର ଲଲାଟପଟଳରେ କାହା ନାମ ଲେଖି ରଖିଛି ।

ସମ୍ମିତ୍ ବି ସେଦିନ କମ୍ ଖୁସି ହୋଇନଥିଲା । ଏମ୍:ଏସ୍:ସି ପରୀକ୍ଷା ରେଜଲ୍ଟ ନ ବାହାରୁଣୁ ହାତରେ ବ୍ୟାଙ୍କ୍‌ର ଲୋଭନୀୟ ଚାକିରୀ । ସେ ଭାବିଲା ଚାରିଆଡ଼େ କେବଳ ଚାକିରୀ ନାହିଁ ଚାକିରୀ ନାହିଁର ଚିତ୍କାର । କିନ୍ତୁ ଯେଉଁମାନେ କଠିନ ପରିଶ୍ରମ କରନ୍ତି ସେଇମାନଙ୍କୁ ହିଁ ଭାଗ୍ୟ ଓ ଭଗବାନ୍ ସାଥି ଦିଅନ୍ତି । ଚତୁର୍ଦ୍ଦିଗରେ ନାହିଁ, ନାହିଁର ଦୁର୍ଭିକ୍ଷ ମଧ୍ୟରୁ ସେ କିନ୍ତୁ ସାଉଁଟି ପାରିଛି ମଣି, ମୁକ୍ତା, ବୈଦୁର୍ଯ୍ୟର ଖଣି । ତମାମ୍ ଜୀବନ ପାଇଁ ସୁନ୍ଦରୀ, ଭୋଳୀଭାଳି ନିରୀହ । ସାଥୀଟିଏ ଯିଏ କି ତା'ର ପଣତକାନିରେ ସାଉଁଟି ନେବ ତା'ର ସବୁ ଦୁଃଖ ଓ ହତାଶକୁ । ସେଇ ତ ପରୀକନ୍ୟା ଯାହାର ପ୍ରବେଶରେ ତା' ଜୀବନରେ ଘଟିଛି ଏଇ ଅସମ୍ଭବ ପରିବର୍ତ୍ତନ । ତାକୁ ହିଁ ପାଇବା ପାଇଁ, ତାକୁ ହିଁ ଭଲ ଜୀବନଟିଏ ଉପହାର ଦେବାପାଇଁ ସେ ରାତିରାତି ଅନିଦ୍ରା ରହି ପଢ଼ିଛି । ପିତାଙ୍କ ମୃତ୍ୟୁପରେ ଘରର ବୋଝ ତା'ର କାନ୍ଧକୁ ଆସିବା ପରେ ସେ କଲେଜ୍ ଆରମ୍ଭରୁ ହିଁ ସଂଘର୍ଷ କରିଛି । ଆଉ ଆଜି ତା'ର ହାତମୁଠାରେ ସମଗ୍ର ପୃଥିବୀର ଖୁସି ।

ସେ ଅନୁକୁ କିଛି କହିଲା ନାହିଁ । ସରପରାଇଜ୍ ଦେବ ! ଉତ୍‌ଫୁଲ୍ଲିତ ସମ୍ମିତ୍ ସେଦିନ ଅନୁରାଧାର ଘରେ ପହଞ୍ଚି ଷ୍ଟଡ଼ିରୁମ୍‌କୁ ଗଲାନାହିଁ, ସେ ଡ୍ରଇଁରୁମ୍‌ରେ ବସି ଅପେକ୍ଷା କଲା ଅନୁର ମମି, ଡ଼ାଡ଼ିଙ୍କୁ । ଡ଼ାଡ଼ି ତ ନଥିଲେ ମମି ଆସିଲେ । ସମ୍ମିତ୍ କେଉଁ ଭାଷାରେ ଅନୁର ହାତ ମାଗିବ ଜାଣି ପାରୁନଥିଲା । ସେ ଠିଆ ହୋଇପଡ଼ିଲା । ଅନୁର ମମିଙ୍କୁ ହାତ ଯୋଡ଼ିଲା ଆଉ ତାଙ୍କ ହାତକୁ ବଢ଼ାଇଦେଲା ତା'ର ଆପୋଏଣ୍ଟମେଣ୍ଟ ଲେଟର୍, ସେ ଦେଖିଲେ ନୀରବରେ ଚାହିଁଲେ ସମ୍ମିତ୍‌କୁ । ଆଖି ଦୁଇଟା ନିଆଁରଡ଼ ପରି ଜଳି ଉଠୁଥିଲା । ସେ ଗର୍ଜି ଉଠିଲେ କ'ଣ ଚାହଁ ?

ଅନୁକୁ ମୁଁ ବିବାହ କରିବାକୁ ଚାହେଁ ।

ହ୍ୱାଟ୍ ?

ଚମକି ପଡ଼ିଲେ ସୁନୟନା ଦେବୀ । ସମ୍ବିତ୍‌ର ସାହସ ପାଇଁ ତାଙ୍କ ପାଖରେ ସାହସିକତା ପୁରସ୍କାର ନଥିଲା ବରଂ ଥିଲା ତା'ର ଗରୀବପଣିଆକୁ ନେଇ ଅଜସ୍ର ଟାପରା । ପରଦାପଛରୁ ଅନୁ ଧାଇଁ ଆସିଲା ।

ମମି, ଷ୍ଟପ୍ ! ଷ୍ଟପ୍ !

ସମ୍ବିତ୍ ଝଡ଼ପରି ବାହାରି ଯାଇଥିଲା । ଅସହ୍ୟ ଅପମାନର ଜ୍ୱାଳା ତା'ର ଅଙ୍ଗପ୍ରତ୍ୟେଙ୍ଗକୁ ଜାଳି ଦେଉଥିଲା । ପୁରୁଷ ଆଖିରୁ ଲୁହ ବହିଲେ ନାରୀ ମନରୁ ଲାର୍ଭା ଝରେ । ଝରିଥିଲା ଅନୁର ମଧ୍ୟ । ଟିଉସନ ଯେ ବନ୍ଦ ହୋଇଗଲା ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନଥିଲା । ମମି, ଡ଼ାଡ଼ିଙ୍କ ତାଗିଦା ଅନୁସାରେ ପଢ଼ିଥିଲା । ମନରେ ପଶି ନଥିଲା, ସ୍କୁଲକୁ ଆସିଥିଲା ସମ୍ବିତ୍ । ପରୀକ୍ଷା ସରିବାକୁ ଆଉ ଦୁଇଦିନ ଅଛି । ଶେଷଦିନ ସେ ଟିକେଟ୍ କରିଛି ଟ୍ରେନ୍‌ରେ । ସେମାନେ ଦୁହେଁ ଏଇ କଠୋର ଦୁନିଆଁ ଛାଡ଼ି ଚାଲିଯିବେ ଚେନ୍ନାଇ । ସେଠି ସମ୍ବିତ୍‌ର ପୋଷ୍ଟିଂ ହୋଇଛି । ବିବାହ କରି କିଛିଦିନପରେ ଫେରିବେ । ସବୁକିଛି ଥଣ୍ଡା ପଡ଼ିଯାଇଥିବ । ଏଇ କେତେଦିନ ଯେ କେତେ ମାନସିକ ନିର୍ଯ୍ୟାତନା ନ ଭୋଗିଛି ଅନୁରାଧା ।

ମମି କେତେ ବୁଝାଇଛନ୍ତି, ଡ଼ାଡ଼ି କେତେ ରାଗିଛନ୍ତି । ସେମାନେ ଭାବିଛନ୍ତି ଅନୁ ବୁଝିଯାଇଛି, ଆଶ୍ୱସ୍ତ ହୋଇଛନ୍ତି । ଚୁପଚାପ୍ ରହି ପାଠପଢ଼ିଛି ଅନୁ । ବିଜ୍ଞ ଝିଅର ପ୍ରଶଂସା କରିଛନ୍ତି । ବାପା, ମା' ଚରିଦିନ ଝିଅର ମନକୁ ଅବହେଳା କରିଛନ୍ତି । ମନଚିରି ଦେଖିବାର ଚେଷ୍ଟା କରିନାହାନ୍ତି । ଶେଷ ପରୀକ୍ଷା କଠିନ ପରିଶ୍ରମ କରିଛି ଅନୁ । ତା ପ୍ରେମକୁ ସେ କଳଙ୍କିତ ହେବାକୁ ଦେବନି । ସେ ସମ୍ବିତ୍‌କୁ କେହି ଦୋଷ ଦେବ ସହିପାରିବନି । ପ୍ରତ୍ୟେକ ପ୍ରଶ୍ନର ସଠିକ୍ ଉତ୍ତର ଲେଖିଛି ସେ । ରେଲଓ୍ୱେଷ୍ଟେସନ୍ ଅଭିମୁଖେ ଯିବାକୁ ହେବ । ଏଣେ ଆହୁରି କେତେ ଲେଖିବାକୁ ବାକି ଅଛି ! କ'ଣ କରିବ । ଲେଖିବାକୁ ତ ହେବ । ସମସ୍ତେ

ଖାତା ଦେଲେ, ଶେଷରେ ଦେଲା ସେ । ସମସ୍ତେ ବାହାରିଲେ, ପରସ୍ପର ସହ ପ୍ରଶ୍ନ, ଉତ୍ତର ଆଲୋଚନା । ସେ ଗୁମ୍‌ସୁମ୍, ଚୁପ୍‌ଚାପ୍ । ଧୀରେଧୀରେ ବାହାରୁଛି ହଠାତ୍ ଉପର ମହଲା ଝରକାରୁ ସେ ତଳକୁ ଚାହିଁଲା ଗେଟ୍ ବାହାରେ ମମି ଗାଡ଼ି ପାର୍କିଂ କରିଛି । ମମି ନେବାକୁ ଆସିଛନ୍ତି । ଏବେ କ'ଣ କରିବ ସେ ! ସମ୍ବିତ୍ ଯେ ଟ୍ରେନ୍ ପାଖରେ ଜଗି ରହିଥିବ । ସେ ଯେ ନୂଆ ଦୁନିଆଁରେ ନୂଆ ପାଦ ଥାପିବା ପାଇଁ ପ୍ରସ୍ତୁତ ହୋଇ ହିଁ ଘରୁ ଆସିଥିଲା । ପଢ଼ା ଟେବୁଲ୍ ଉପରେ ଲେଖିଥିବା ଛୋଟ ଚିଠିଟିରେ ସେ ସମ୍ବିତ୍ ସହ ଘର ଛାଡ଼ି ଚାଲିଯିବା କଥା ଲେଖି ଆସିଥିଲା । ମମି କ'ଣ ସେ ଚିଠି ପାଇଗଲା !

ସବୁ ଅଗୋଚରରେ ସେ ଦଉଡ଼ି ଦଉଡ଼ି ଯାଇ ସ୍କୁଲ ପଛପଟକୁ ଥିବା ଗୋଟିକିଆ ଲେଡ଼ିଜ୍ ଟଏଲେଟ୍‌ରେ ପଶି ବହୁ ସମୟ ଯାଏ ବାହାରିଲା ନାହିଁ । ଡ଼ରରେ ତାର ଦେହ ଥରୁଥିଲା । ଠକ୍‌ଠକ୍ ଥରିଥରି ସେ ବେହୋସ୍ ହୋଇ ପଡ଼ିଗଲା । କେତେ ସମୟ ପରେ ତା'ର ହୋସ୍ ଆସିଲା ସେ ଜାଣେନାଁ । ତୋର ମୁଣ୍ଡ ବୁଲାଇ ଦେଉଥିଲା । ସେ ଧିରେଧିରେ ଉଠିଲା । ସବୁଆଡ଼ ଅନ୍ଧାର ହୋଇଯାଇଥିଲା । ସେ କିଛି ବୁଝିପାରିଲାନି କେଉଁଠି ଅଛି, କାହିଁକି ଅଛି । ତା'ର ସବୁ ମନେପଡୁଥିଲା । କେତେ ସମୟ ହେଲାଣି ସେ ଟଏଲେଟ୍ ଭିତରେ ପଡ଼ିଛି ! ସମ୍ବିତ୍, ସମ୍ବିତ୍ ଚିତ୍କାର କଲା ସେ । କେହି ଯେ ଶୁଣୁନାହାଁନ୍ତି । ସେ ଏବେ କରିବ କ'ଣ । ସେ ବାହାର ପଟର କବାଟକୁ ଅଣ୍ଡାଳି ଅଣ୍ଡାଳି ପିଟିଲା । ମାତ୍ର ବାହାରୁ କେହି ବନ୍ଦ କରି ଦେଇଥିଲା । ଓଃ କି ଗନ୍ଧ ! ଶୋଷରେ, ଯନ୍ତ୍ରଣାରେ, ଡ଼ରରେ ସେ ପୁଣି ବେହୋସ ହୋଇପଡ଼ିଲା । ସେଇ ସିଙ୍ଗଲ ଟଏଲେଟ୍‌ଟିରେ ଗୋଟିଏ ସ୍କାଇଲାଇଟ୍‌ଟିଏ ବି ନଥିଲା ।

ଶେଷଦିନ । ସେଦିନଠାରୁ ଛୁଟି ଆରମ୍ଭ ହୋଇଯାଇଥିଲା । ତା'ପରଦିନ ବହୁତ ଚିତ୍କାର କରିଥିଲା ଅନୁରାଧା । ଆମ୍ପୁଡ଼ି ଥିଲା । କବାଟ ପିଟିଥିଲା । ଅଥଚ ତା ସ୍ୱରର ଦୁର୍ବଳ ପ୍ରତିଧ୍ୱନି ଶୁଣିବାକୁ କେହି କେଉଁଠି ବି ନଥିଲେ । ଲମ୍ବାଛୁଟିରେ ବନ୍ଦ ସ୍କୁଲର ଦରୱାଜା ଆଉ ଖୋଲିନଥିଲା ।

ହତାଶ୍ ସମ୍ବିତ୍ ଆଖିରୁ ଲୁହ ଝରାଇ, ମନରୁ ଅଭିଶାପ ବର୍ଷାଇ, ଅନୁରାଧାର ନାମକୁ ସବୁଦିନ ପାଇଁ ଭୁଲିଯିବାର ପ୍ରତିଜ୍ଞା ନେଇ ସେଦିନ ଟ୍ରେନ୍‌ରେ ବସିଥିଲା । ବାଟସାରା ସେ ପ୍ରେମ କରିବାର ଭୁଲ ପାଇଁ ପଶ୍ଚାତାପ କରୁଥିଲା । ଅନୁରାଧା ନାମଟା ଦିନେ ତା'ର ସବୁଠୁ ପ୍ରିୟ ଥିଲା, ବର୍ତ୍ତମାନ ଘୃଣାରେ ତା'ର ଦେହ ଅସ୍ଥିର ହୋଇଉଠୁଛି । କଥା ଦେଇ କଥା ନ ରଖିଥିବା ପ୍ରେୟସୀ ପାଇଁ ସେ ଲାଲ ଚୁଡ଼ି, ଲାଲ ଶାଢ଼ୀ, ସିନ୍ଦୂର ଆଉ ଅନେକ ପ୍ରତିଶ୍ରୁତି ନେଇ ବସିଛି । ସେ କେବେ ବି ଭାବିନଥିଲା ଅନୁ ତାକୁ ଧୋକ୍କା ଦେବ । କାହିଁକି ଆସିଲାନି ସେ । କେମିତି ସେ ଫେରାଇ ପାରିଲା ତାର ଆଗକୁ ବଢାଇଥିବା ହାତକୁ । ଯେଉଁ ଦୁଇହାତ ଯୋଡ଼ି ସେମାନେ ହାତଧରି ଅନେକ ପଥ ଆଗେଇଥାନ୍ତେ, କାହିଁକି ସାହସ ଭରି ପାରିଲାନି ସେ । ରାଜକନ୍ୟାର ଅମାପ ସମ୍ପତ୍ତି କ'ଣ ତାକୁ ଗରୀବର କୁଡ଼ିଆକୁ ପାଦରେ ଠେଲିଦେବାକୁ ପଣ କରାଇନେଲା ? ଅନେକ ପ୍ରଶ୍ନର ଅସମାହିତ ଉତ୍ତର ଖୋଜି ସେ ଆଗେଇ ଚାଲିଥିଲା ଭବିଷ୍ୟତର ଅନିର୍ଦ୍ଦିଷ୍ଟ ପଥରେ । ପଛରେ ତାର ପଡ଼ିରହିଥିଲା ପ୍ରେୟସୀର ସହର....ଆଉ ପ୍ରେୟସୀ ତା'ର ?

ମମିଙ୍କର ଅପେକ୍ଷା କରିବାର ଧୈର୍ଯ୍ୟ ନଥିଲା । ପାର୍ଟିର ଟାଇମ୍ ହୋଇ ଯାଇଥିଲା । ଅନେକ ଡ଼େରିରେ ସେ ଫୋନ୍ ପାଇ ଘରକୁ ଆସିଲେ । ଅନୁ ଆସିନାହିଁ । ପଢ଼ା ଟେବୁଲ୍‌ରୁ ଚିଠି ପାଇଲେ ସମ୍ବିତ୍ ସହ ଘର ଛାଡ଼ିଛି ସେ । ଅନୁ ସାବାଳିକା ! ପୋଲିସ୍‌କୁ କହି ଲାଭ ନାହିଁ । ଭାଗ୍ୟକୁ ଆଉ ସ୍ୱାମୀ, ସ୍ତ୍ରୀ ପରସ୍ପରକୁ ଦୋଷ ଦେଇ ଚୁପ୍ ରହିବାକୁ ଉଚିତ୍ ମଣିଲେ । ଦିନେ ନା' ଦିନେ ଏଇ ସହରକୁ ଫେରିବେ ଦୁହେଁ । ଦେଖିବା କେମିତି ଦୁଆର ଟପିବେ । ସମ୍ପତ୍ତି, ମାଇଁଫୁଟ୍ ! ଅନାଥଶ୍ରମକୁ ଦାନ କରିବେ ସିନା ଏମିତି ଝିଅ ମୁହଁ ଚାହିଁବେ ନାହିଁ । ମା' ମନ ତଥାପି ବେଳେବେଳେ ଝୁରିହୁଏ ।

ବାହାରକୁ ବାହାରିବା ବନ୍ଦ କରିଦେଇଛନ୍ତି ମିସେସ୍ ବିଶ୍ୱାସ୍ । ଅଫିସ୍‌ରେ ମିଃ ବିଶ୍ୱାସଙ୍କ ରାଗ ପାଇଁ ସମସ୍ତେ ତାଙ୍କୁ ଡ଼ରିଲେଣି । ଚର୍ତୁଦିଗରେ ଚାପା ଗୁଞ୍ଜରଣ ।

ଅନୁରାଧା, ସମ୍ବିତ୍ ଫେରାର୍ ହୋଇଯିବାର ଖବର, ଲୋକାଲ୍ ଖବରକାଗଜରେ ମଧ୍ୟ ବାହାରି ସାରିଲାଣି । ମୁଣ୍ଡରେ ହାତଦେଇ ବସିଛନ୍ତି ପୁଅର ମା' ଭଉଣୀ । ପୁଅଟା କ'ଣ କଲା ? କେଉଁଠି ଥିବେ ସେମାନେ ? କେମିତି ଥିବେ ?

ପ୍ରତିଦିନ ମିସେସ୍ ବିଶ୍ୱାସଙ୍କ ଗୁଣ୍ଡା ସେମାନଙ୍କୁ ଧମକେଇ ଯାଉଛନ୍ତି ହେଲେ ପୁଅର ତ କିଛି ଖବର ଆସୁନି । ସେମାନେ ବା ଜାଣିବେ କ'ଣ ?

ଅଠର ଦିନ ପରେ ଖୋଲିଲା ସ୍କୁଲ୍ ।

ଖୋଲିଲା ସ୍କୁଲର ଜେନିକ ଝିଅଟିଏ ଟଏଲେଟ୍ !

ଓଃ କି ଅଭାବନୀୟ, ଅବିଶ୍ୱାସନୀୟ, ଦୁର୍ଯୋଗମୟ ଘଟଣାଟିଏ ନ ଘଟିଛି ନୀରିହ, ନିଷ୍ପାପ, ପ୍ରେମପାଗଳୀ ଝିଅଟି ସହ ! ରାମ୍ପୁଡ଼ି ବିଦାରି, ଚିତ୍କାର କରିକରି, ଭୋକଉପାସରେ ଡ଼ହଳବିକଳ ହୋଇ, ସବୁରିକୁ ମନେପକାଇ ଝୁରିଝୁରି ନିଜର ଭାଗ୍ୟକୁ ଦୋଷ ଦେଇଦେଇ ଚାଲିଯାଇଛି ଜୀବନଟିଏ । ଗଳିତ କଙ୍କାଳରେ ଅନୁର ପୋଷାକ, ଘଣ୍ଟା, ପର୍ସ, ପ୍ରଶ୍ନପତ୍ର ।

ପ୍ରଶ୍ନପତ୍ରରେ ଚର୍ତୁଦିଗରେ ସେ ସମ୍ବିତ୍‌ର ନାଁ ଲେଖିଛି । ଭୁଲ ପାଇଁ କ୍ଷମା ମାଗିଛି ପିତା,ମାତାଙ୍କୁ । କାହ୍ନୁକୁ ରାମ୍ପୁଡ଼ି ରାମ୍ପୁଡ଼ି ନିଜର ପାଇଁ ଆହାର ଖୋଜିଛି । ଭୂମିକୁ ମାଗିଛି ମୁଠାଏ ସ୍ଥାନ, ଆଉ ସମାଧି ଦେଇଛି । ରକ୍ତଗୁଡ଼ା ପାଣିଫାଟି ବିକଳରେ ଆତ୍ମାଟିଏ ପୃଥିବୀ ଛାଡ଼ିଛି ।

ସ୍ତମ୍ଭୀଭୁତ ପିତାମାତ !

ଆହାଃ ... ଟିକେ ହେଲେ ସେମାନେ ଏ ଦିଗଟା ଭାବିଲେନି ?

କୋଡ଼ିଏ ଦିନ ପରେ ଫେରିଛି ସମ୍ବିତ୍ ।

ଓଃ ! ଗଛପତ୍ର ଆକାଶ ପୃଥିବୀ ସବୁଠି ଦୁଃଖର ଛିଟା !

ପ୍ରିୟତମାର ଏ ଅବସ୍ଥା ପାଇଁ ଦାୟୀ କିଏ ?

ଜୀବନଟା ଜୀଇଁବାର ତାନସୁରାରେ ଯନ୍ତ୍ରଣାର ଗଜଲ୍ । ଓଠରେ ଓଠେ ବେସୁରା ରାଗର ନାମହୀନ ରାଗିଣୀ କି ଛାତିତଳେ କିଛି ଗୋଟେ ଚହଲି ଚହଲି ଭାବନାର ଅଜସ୍ର ତରଙ୍ଗରେ ତରଙ୍ଗାୟିତ କମ୍ପନ । କେଜାଣି, କ'ଣ ! ଗୋଟିଏ ଲମ୍ବା ଦୀର୍ଘନିଶ୍ୱାସ । ଗୋଟିଏ କିଛି ଯାହାର ଅନ୍ୟନାମ ବୋଧହୁଏ ସ୍ମୃତି !!!

ଚବିଶ୍ ବର୍ଷ ତଳର ସେଇ ଅଦିନ ମେଘର ଅଚାନକ ଝଡ଼ ହୋଇ ବର୍ଷିଯିବା କାହାଣୀଟା ଏବେ ବି ମନ ଭିତରେ ତାଜା ହୋଇଛି । କେତେବେଳେ କେମିତି କଡ଼ଲେଉଟାଇ ଛାତି ପେଟ ନାହିନାଡ଼ ଚହଲାଇ ହୃତ୍‌କମ୍ପନ ଆଣୁଛି । ଜୀବନସାରା ପାଇଁ ଏକି ଅପରାଧବୋଧର ଗ୍ଲାନିରେ ମନକୁ ଆକ୍ରାମାକ୍ରା କରୁଛି । ନାଁ ମୃତ୍ୟୁକୁ ଆଲିଙ୍ଗି ହେଉଛି ନାଁ ଜୀଇଁବାକୁ ଭଲ ପାଇହେଉଛି । ସମ୍ବିତ୍ ନାମକ ପୁରୁଷଟା, ପୌରୁଷତ୍ୱର ସମସ୍ତ କାମନା ବାସନାକୁ ସେଇଦିନରୁ ସ୍ୱାହା କରିଦେଇ କେବଳ ମାତ୍ର ଦେହଟିଏ ଧରି ବଞ୍ଚିରହିଛି । ଅଦେଖା ଭଗବାନ୍‌ଙ୍କୁ ଅନେକ ପ୍ରଶ୍ନ ପଚାରିବା ସ୍ପୃହା ନେଇ ନିତି ଅନ୍ୟଦିନ ପାଇଁ ସଜ ହେଉଛି ।

ସମସ୍ତେ ଭାବୁଛନ୍ତି । ଓଃ.........ସମୟଟା ଫେରିଯାଆନ୍ତା କି ପଛକୁ, ସବୁ ଭୁଲଗୁଡ଼ା ସୁଧାରି ହୁଅନ୍ତା ! ଉଦ୍ଧାରି ହୁଅନ୍ତା । କିନ୍ତୁ ସମୟ କି ପଛକୁ ଫେରେ ? ସେ ଯେ ରକୁଣାରଥର ଚକ !



# ଭିନ୍ନ ସଂପର୍କ

ଶୀତ ସକାଳ !

କୁହୁଡ଼ିରେ ଅସ୍ପଷ୍ଟ ଦିଶୁଛି ମୁହଁ । ରିକ୍ସାରେ ୫ କି ୬ ପିଲାଙ୍କ ସହ ବେବିସିଟ୍‌ରେ ବସିଛି ସଞ୍ଜୀବନୀ ବୋଲି ଛୋଟ ଝିଅଟା । ବୟସ ନଅ । ଗୋରାମୁହଁ, ପୁଚୁକା ଗାଲ, କୁଞ୍ଚକୁଞ୍ଚିଆ କେଶ, ନିରୀହ ଚାହାଣୀରେ ରହିଛି ଅନେକ କାହାଣୀ କହିବାର ଅଭୀପ୍ସା !

ସ୍କୁଲରେ ଖୁବ୍ ମାଡ଼ ଖାଏ ସେ । ହୋମ୍‌ୱାର୍କ ଠିକ୍ କରି ନଥାଏ ତ ପୁଣି କେବେ କାହା ସଙ୍ଗେ ଗପୁଥାଏ । କେବେ କେବେ ଅନ୍ୟମନସ୍କରେ ପାଠର ଠିକ୍ ଉତ୍ତର ଦିଏନି । ମୋଟାମୋଟି ସେ ଭଲଛାତ୍ରୀ ହିସାବରେ ଆଦୌ କାହା ପାଖରୁ କିଛି ପ୍ରଶଂସା କିମ୍ବା ସ୍ନେହ ପାଏନା । ସ୍କୁଲରୁ ଫେରିବା ବେଳକୁ ସେ ଅନ୍ୟପିଲାଙ୍କ ପରି ଆଦୌ ଉଚ୍ଛନ୍ନ ହେବା କେହି ଦେଖିନାହାଁନ୍ତି । ସେ ବେବିସିଟ୍‌ରେ ବସିବାକୁ ଭଲପାଏ ତେଣୁ ତା'ର କାହାରି ସହ କିଛି ବାଦବିବାଦ ନାହିଁ । ସେ ପହଞ୍ଚିବାର ବହୁ ସମୟ ପୂର୍ବରୁ ପହଞ୍ଚି ସାରିଥାଏ ତା'ର ତିନି ଉପର ଶ୍ରେଣୀରେ ପଢୁଥିବା ଭାଇ ବିଟୁ । ମା' ଦୁଇଜଣଙ୍କ ପାଇଁ ଖାଇବା ବାଢୁଥାନ୍ତି । ସେ କେଉଁଠି ବ୍ୟାଗ୍, କେଉଁଠି ପାଣିବଟଲ୍ ତ କେଉଁଠି ଜୋତା ଫୋପାଡ଼ି ଦଉଡ଼େ ସିଧା ରୋଷେଇ ଘରକୁ । ମା'ଙ୍କର ପ୍ରଚଣ୍ଡ ପାଟି ଆରମ୍ଭ ହୋଇଯାଏ । ଗୋଡ଼, ହାତ ମୁହଁ ଧୁଅ........କିନ୍ତୁ ସେତବେଳକୁ ପାମ୍ପଡ଼ଟିଏ କି ଭଜା, ଚିପ୍‌ସ୍‌ରୁ କିଛି ଭାଇ ଥାଳିରୁ ଉଠାଇ କଣ୍ଠସ୍ଥ କରିସାରିଥାଏ ସଞ୍ଜୁ । କାନମୋଡ଼ା କି ସରୁ ଚଟକଣାଟିଏ ନ ଖାଇଲେ ସେ ବି ଠିକ୍ ରାସ୍ତାକୁ ଆସିବା ଝିଅ ନୁହେଁ । ଭାଇ-ଭଉଣୀଙ୍କର ମାଡ଼ ଗୋଳ ପାଇଁ ମା'ଙ୍କୁ ଅଗତ୍ୟା ନାନା ଧନ୍ଦା ଛାଡ଼ି ଆସିବାକୁ ପଡ଼େ । କଳିଗୋଳ ଛିଡ଼ିଗଲେ ତ ଭଲ ନହେଲେ ଦୁଇଜଣ ଯାକ ମାଡ଼ ଖାଇଲେ । ଝଡ଼ଶାନ୍ତ ହୁଏ, ପୃଥିବୀ ସ୍ଥିର ହୁଏ ପୁଣି

ମନ୍ଦମଳୟ ବହି ଘରଦ୍ୱାରରେ ନୀରବତା ଛାଇଯାଏ । ହେଲେ ସେ କେତେ ସମୟ ! ପୁଣି କେଉଁଠୁ ଛୋଟ ଘୂର୍ଣ୍ଣିବାତ୍ୟାଟିଏ ଆରମ୍ଭ ହୋଇ ଘର ଅଶାନ୍ତ ହୋଇଉଠି ସୁନାମୀର ତାଣ୍ଡବଲୀଳା ଆରମ୍ଭ ହୋଇଯାଏ । ମା' ସୁଁ ସୁଁ ହୋଇ କାନ୍ଦନ୍ତି...... । ବାବା ଆସିଲେ ସବୁ କହିବିର ଦ୍ୱାହି ଦେଇ ତାଙ୍କ ନିଜ ଧନ୍ଦାରେ ବ୍ୟସ୍ତ ରହନ୍ତି । ସେତେବେଳକୁ ଭାଇ ଭଉଣୀ ଦିଟା ଆପେ ଆପେ ବୁଝି ପୁଣି ଖେଳରେ ଲାଗି ପଡ଼ନ୍ତି ଟିଉସନ ସାର୍ ଆସିବା ଯାଏ ।

ସେଦିନ ଖେଳଛୁଟିରେ ଟିଫିନ୍ ଖୋଲି ଖାଉଖାଉ ସାଙ୍ଗ ପିଲାଙ୍କ ସହ ଦଉଡ଼ା ଦଉଡ଼ି କରୁଥାଏ ସଞ୍ଜୁ । ସୁନ୍ଦର ପିଲାଟିଏ ଠିକ୍ ତା'ର ମାମୁଁଙ୍କ ପରି ହାତଠାରି ଗେଟ୍ ପାଖରୁ ତାକୁ ଡ଼ାକିଲେ, ସେ ଭାବିଲା ମାମୁଁଙ୍କ ସାଙ୍ଗ ବୋଧେ, ଖୁସିରେ ନାଚି ଉଠି ସେ ଦଉଡ଼ିଗଲା । ତାକୁ ଲଜେନ୍‌ସ, ଚକୋଲଟ୍ ଦେଲେ ସେଇ ମାମୁଁ, ଯାହାକୁ ସଞ୍ଜୁ ଅତି ସହଜରେ ମାମୁଁ ବୋଲି ପରିଚୟ କରାଇଦେଲା ସଭିଙ୍କ ସହ । ସେ ଜାଣେନା ତାଙ୍କର ନାଁ, ଗାଁ ଠିକଣା । ସେ ସ୍ନେହ କାଙ୍ଗାଲୁଣୀ ଛୋଟିଆ ନିଷ୍ପାପ ବାଳିକାଟିଏ । ମାମୁଁ ତାର ନାଁ ପଚାରିଲେ । ମାମୁଁଙ୍କର ସାଙ୍ଗ କି ପଚାରିବାରୁ ସଞ୍ଜୁକୁ ହଁ ବୋଲି କହି ଖେଳଛୁଟି ପରେ ଚାଲିଗଲେ, ତା'ପରଦିନ ଆସିବାର ମିଠା ପ୍ରତିଶ୍ରୁତି ଦେଇ । ଶ୍ରେଣୀରେ ସେଦିନ ଝିଅର ମନ ଲାଗିଲାନି । ଗୁଡ଼ାଏ ମାଡ଼ଖାଇ ଘରକୁ ଫେରି ସେ ମା'ଙ୍କ ଆଗରେ ଗପିଗଲା ସେଇ ନୂଆ ମାମୁଁଙ୍କ ବିଷୟରେ । ତଥାପି ବ୍ୟାଗ୍‌ରେ ବାକି ଥିବା ଚକୋଲେଟ୍ ଦେଖି ମା'ଙ୍କର ବ୍ରହ୍ମ ଜଳିଗଲା । କିଛି ନବୁଝି ନଶୁଝି ମା' ବି ଗୁଡ଼ାଏ ପିଟିଲେ । କିଏ ସେ ପିଲା, କାହିଁକି ତା'ଠୁ ଚକୋଲେଟ୍ ଆଣିଲୁ । ଆଉ ଦିନେ ଏପରି କାମ କରିବୁ ନି.... ଇତ୍ୟାଦି । ସଞ୍ଜୀବନି କିଛି ବୁଝିପାରୁନି । ମାମୁଁଟିଏ ପାଇ ସେ କେଡ଼େ ଖୁସି ! ହେଲେ ମା' ରାଗୁଛନ୍ତି କାଇଁକି ? ତା'ପରଦିନ ସ୍କୁଲରେ ଚୁପ୍‌ଚାପ୍ ବହି ରଖି ସମସ୍ତଙ୍କ ଦୃଷ୍ଟି ଆର୍କର୍ଷିତ କରିଛି ସଞ୍ଜୁ । କ'ଣ ହୋଇଛି ତା'ର ? ଏଡ଼େ ଚଞ୍ଚଳ ଦୁଷ୍ଟ ଝିଅଟା ଆଜି ଏପରି ଗୁମ୍‌ସୁମ୍ କାଇଁକି ? ସେଦିନ ଖେଳଛୁଟିରେ ବି ଆସିଲେ ମାମୁଁ ।

ଡ଼ାକିଲେ ଏଣେ ମା'ଙ୍କର ମାଡ଼ର ଡ଼ର, ତେଣୁ ମାମୁଁଙ୍କ ସ୍ନେହପୂର୍ଣ୍ଣ ଡ଼ାକ ଓ ଚକୋଲେଟ୍, ସାଥିରେ ପୁଣି ତାର ପ୍ରିୟ ବାର୍‌ବି ଡ଼ଲ୍... ସେ ଦଉଡ଼ିଗଲା ଗେଟ୍ ଖୋଲି । ମାମୁଁ ତାକୁ ଗାଡ଼ିରେ ବସାଇ ଗାଡ଼ି ଛାଡ଼ିଦେଲେ । ସେ ପଚାରିନି କୁଆଡ଼େ ମାମୁଁ ତାକୁ ନେଉଛନ୍ତି । ସେ ବାର୍‌ବୀଡ଼ଲ୍‌ର ଜୋତ୍, ତା'ର ଭ୍ୟାନିଟ୍ ବ୍ୟାଗ୍ ଦେଖିଦେଖି ମସ୍‌ଗୁଲ୍ । କାରଟି ରହିବା ଭିତରେ ସେ କେବଳ ଟ୍ରେନ୍‌ର ପୁଁ ସାଇରନ ଶୁଣିଥିଲା, ମୁଣ୍ଡ ବୁଲାଇ ସିଟ୍‌ରେ ପଡ଼ିଗଲା ସେ.....

ଖେଳଛୁଟି ପରେ ସଞ୍ଜୁ ଶ୍ରେଣୀକୁ ଫେରିଲାନି । ସ୍କୁଲର ସବୁଆଡ଼େ ଖୋଜାହେଲା । ଘରକୁ ଖବରଗଲା କେହି ଜଣେ କହିଲା ତା'ର ସେଇ ମାମୁଁଙ୍କ ସହ ଗୋଟିଏ ବଡ଼ ଧଳା ଗାଡ଼ିରେ ଯାଇଛି । ମା' ଖାଲି ଗଛ କାଟିଲା ପରି ସଜ୍ଞାହୀନ ହୋଇ ପଡୁଥାନ୍ତି । ସନ୍ତ୍ରସ୍ତପିତା, ଭୟାଳୁ ବିଟୁ । କୁଆଡ଼େ କିଏ ନେଇଗଲା ସଞ୍ଜୀବନୀକୁ... । କାହିଁଗଲା ଗଣ୍ଠିଧନ..., କାଳେ କିଏ ଫୋନ୍ କରିବ ପଇସା ପାଇଁ ଅପହରଣ କରିନେଇଥିବ । ପୋଲିସ୍ ଜଗି ରହିଲେ ଫୋନ୍ ପାଖରେ, ଚାରିଆଡ଼େ ଖୋଜଖୋଜି ଆରମ୍ଭ ହେଲା, ହେଲେ ସବୁ ନିଷ୍ଫଳ...., ନାଁ କିଛି ଫୋନ୍ ଆସିଲ । ନାଁ ସଞ୍ଜୁ ମିଳିଲା । ପୃଥିବୀ ଯେମିତି ତା'ର ଘୂର୍ଣ୍ଣନ ବନ୍ଦ କରିଦେଲା । ସ୍ତବ୍ଧ ହୋଇଗଲା । ବାୟୁମଣ୍ଡଳ ସ୍ଥିର ହୋଇଗଲା । ହସଖୁସିର ପରିବାରଟିରେ ମୃତ୍ୟୁର କଳାବାଦଲ ଯେମିତି ଛାଇଗଲା । ଚାରିଆଡ଼େ ସଞ୍ଜୁର ପାଟି ଶୁଭୁଛି । ସ୍କୁଲରେ ଚର୍ଚ୍ଚା, ଘରେ ଲୋକ ଗହଳି ! ହେଲେ ହଜିଲା ଝିଅ ଆଉ ଫେରି ଆସିଲା ନାହିଁ । ଛାତି ଭିତର ଠାରୁ ଘର ଅଗଣା, ସ୍କୁଲଠାରୁ ସାରା ଦୁନିଆ ସବୁ ଆଡ଼େ ଖାଁ, ଖାଁ ରାବ, ଶୂନ୍ୟତା ଛାଇଗଲା । ଦିନ ପରେ ଦିନ ବିତିଚାଲିଲା, ପୁଣି ମାସ ପରେ ମାସ । ସବୁଆଡ଼େ ଚର୍ଚ୍ଚା ଥମିଗଲା । ପେପର, ରେଡ଼ିଓ, ଟେଲିଭିଜନ, ଥକିପଡ଼ିଲେ । ସଞ୍ଜୁର ଅପହରଣକୁ ନେଇ ରାଜନୈତିକ ଇସୁଟିଏ ବି ହେଲା । ବିରୋଧୀଙ୍କ ସପକ୍ଷରେ ହାଓ୍ୱା ବହିଲା । ହେଲେ ମାତୃ ହୃଦୟରେ

ରହିରହି ଯେଉଁ ମମି ଡ଼ାକ ଶୁଭିଥାଏ, ବିଟୁର ଦୁନିଁଆରେ ଯେଉଁ ଶୂନ୍ୟପଣ ତାକୁ ପୂରଣ କରିବାକୁ କେବେହେଲେ ଫେରିଲା ନାହିଁ ସଞ୍ଜବନୀ...... ।

ନୂଆ ଦୁନିଁଆରେ ଆଖିଖୋଲି । ବିସ୍ମୟରେ ହତ୍‌ବାକ୍ ହୋଇଗଲା ସେ । ଗୋଟିଏ ଘରେ ଖଟରେ ଶୋଇଛି ସେ । ସେ କେଉଁଠି ? ସେ ଖୁବ୍ ଅସ୍ପଷ୍ଟ ଭାବରେ କେବଳ ଏତିକି କହିଲା ମମି...... ପୁଣି ତାର ମୁଣ୍ଡ ବୁଲାଇଦେଲା । କେତେଦିନ ସେ ସେପରି ପଡ଼ିରହଲା ସେ ଜାଣେନି । ସେ ଧିରେଧିରେ ଭଲ ହେଲା । କୌଣସି ମଣିଷଙ୍କୁ ସେ ଦେଖିପାରେନି । ଜଣେ ଅଚିହ୍ନା ରାକ୍ଷସୀ ପରି ସ୍ତ୍ରୀ ଲୋକଟି ତାକୁ ଖୁଆଏ ପିଆଏ, ଧଳା ଗାଉନ୍ ପିନ୍ଧା ଡ଼ାକ୍ତର ବାସ୍ । ଦିନେ ସେଇ ମାମୁଁ ତା' ପାଖକୁ ଆସିଲେ । ତା'ର ଆଖି ଉଜ୍ଜ୍ୱଳ ହୋଇ ଉଠିଲା, ସେ ଡ଼ାକିଲା ମାମୁଁ..... । ଦେଖିଲା ଏ ମାମୁଁ ଯେମିତି ବଦଳି ଯାଇଛନ୍ତି । ଆଖି ଦୁଇଟା ନିଆଁ ପରି ଜଳି ଉଠୁଛି । ମୁହଁଟା ପଥର ପରି କଠିନ । ହାତ ଦୁଇଟା ମୁଠାମୁଠା କରି ସେ ମାଡ଼ି ଆସିଲେ । ପିଠିରେ ଦୁଇଟା ବିଧା ବସାଇ ଦେଲେ ଯେ ସଞ୍ଜୁ ତଳେ ପଡ଼ିଗଲା । କ'ଣ ହେଲା ? ତା' ପାଟିରୁ ରକ୍ତ ବାହାରି ଆସିଲା । ଆଶ୍ଚର୍ଯ୍ୟରେ ଓ ଯନ୍ତ୍ରଣାରେ କାନ୍ଦିବାକୁ ଲାଗିଲା । ଶାଳୀ... କେତେ ହଇରାଣ କଲୁଣି ବେ... । ତୋ ସାଙ୍ଗେ ଆସିଥିବା ପିଲାସବୁ କାମରେ ଲାଗିଲେଣି । ଏଟା ଗୋଟେ ବୋଝ ହୋଇ ପଡ଼ିରହିଛି । ୟାକୁ କିଛି ଖାଇବାକୁପିଇବାକୁ ଦିଅନି । କାମ ଶିଖାଅ । ସ୍ତ୍ରୀ ଲୋକଟା ଗୋଟିଏ ଚାବୁକ୍ ଧରି ମାଡ଼ି ଆସିଲା... । ହଠାତ୍ ତା'ର ହାତଟା ରହିଗଲା । ସଞ୍ଜୁର ଦୁଇଆଖିରେ ତା'ର ଦୁଇ ଆଖି ମିଶିଗଲା । ଯେମିତି ଗୋଟିଏ ବିଦ୍ୟୁତର ଶିହରଣ ସ୍ତ୍ରୀ ଲୋକଟି ଦେହରେ ଖେଳିଗଲା । ସଞ୍ଜୁ ବିକଳରେ ତା'ର ଗୋଡ଼ ଧରି ପକାଇଲା । ଦୁର୍ବଳରେ ତା'ର ଦେହ ଥରୁଥାଏ । ପାଟିରୁ ଫେଣ ବାହାରୁଥାଏ । ନଅବର୍ଷର ସଞ୍ଜୁ ଦୁନିଁଆର ବାଲିଧୂଳି କଣ୍ଢେଇ ଖେଳ ଛାଡ଼ି ବୟସ୍କ ଲୋକମାନଙ୍କ କ୍ରୁର ଦୁନିଁଆରେ ନିଜର ଅସ୍ତିତ୍ୱ ହରାଇ ସାରିଥାଏ... । କେବଳ ମାତ୍ର ନିରାପଦରେ ବଞ୍ଚିଯିବା ପାଇଁ ସେ ହାତଯୋଡ଼ି କାକୁତି ମିନତି କରୁଥାଏ । ସ୍ତ୍ରୀ ଲୋକଟା ତାର

କେଶ ଗୋଛାକୁ ଧରି ଖଟ ଉପରେ ବସାଇଦେଲା । ଗୋଟିଏ ଛୋଟିଆ ପୋଷାକ ପିନ୍ଧାଇ, ସେ ତା'ର ହାତ ଘୋଷାଡ଼ି ଘୋଷାଡ଼ି ନେଲା । କିଛି ବାଟ ଚାଲିବା ପରେ ବିରାଟ ଗେଟ୍ ଡେଇଁ ସେମାନେ ଯେଉଁଠି ପାଦଦେଲେ ସଞ୍ଜୁ ଦେଖିଲା ବାଲି ଆଉ ବାଲି । ପୁଣି ଆଖି ଆଗରେ ବିରାଟ ସମୁଦ୍ର । ପୁରୀ.....ତା' ପାଟିରୁ ବାହାରିଗଲା । ଭାଇ, ବାବା, ମମ୍ମିଙ୍କ ସହ କେତେଥର ସେ ପୁରୀ ଯାଇଛି । ହେଲେ ଏଠି ଏମିତି ଗୋରାଗୋରା ଲୋକଗୁଡ଼ା ଅର୍ଦ୍ଧନଗ୍ନ ହୋଇ ବାଲିରେ ଶୋଇଛନ୍ତି । ଚତୁର୍ଦ୍ଦିଗର ଦୃଶ୍ୟ ଦେଖି ସେ ଜାଣିପାରିଲା, ଏ ସ୍ଥାନ ପୁରୀ ନୁହେଁ । ସମସ୍ତେ ଇଂରାଜୀ କହୁଛନ୍ତି । କେହି କେହି ହିନ୍ଦୀ । ସ୍ତ୍ରୀ ଲୋକଟା ସେମାନଙ୍କ ପାଖରେ ବସାଇ କେଉଁଆଡ଼େ ଚାଲିଗଲା । ଲୋକଟା ତାକୁ ଦେଖି ଏପରି ରହସ୍ୟମୟ ହସ ହସିଲା ଯେ ସଞ୍ଜୁ ଭୀଷଣ ଡ଼ରିଗଲା । ଟିକିଏ ଘୁଞ୍ଚି ଯାଉଯାଉ ଲୋକଟା ତା' ହାତଧରି ଘୋଷାଡ଼ି ତାକୁ ଛାତି ଉପରକୁ ଭିଡ଼ିନେଲା । ଯେ କ'ଣ କରୁଛ... । ତାକୁ କ'ଣ କରିବାକୁ କହୁଛି.... ସେ କିଛି ବୁଝିପାରୁନି ଖାଲି ଜକଜକ କରି ଭୟାଳୁ ଦୃଷ୍ଟିରେ ଚାହିଁରହିଛି । ଲୋକଟା ହାତଠାରି ତାକୁ ଚାରିଆଡ଼କୁ ଦେଖାଇଲା । ତା'ରି ପରି ଛୋଟପିଲା ସବୁ କି ଖରାପ କାମ କରୁଛନ୍ତି ! ସମୁଦ୍ରକୂଳର ବିସ୍ତୀର୍ଣ୍ଣ ସୁନେଲୀ ବାଲୁକାରାଶି ସତେ ଯେମିତି ଯୌନ ବିଭତ୍ସତାର ଏଇ ଅଶୋଭନୀୟ ଦୃଶ୍ୟର ମୁକସାକ୍ଷୀ ହୋଇ ଲେଖୁଥିଲା ସଭ୍ୟ ମଣିଷର କାମବିକାରଗ୍ରସ୍ତ ମାନସିକତାର ଅସଭ୍ୟ ଇତିହାସ । ବିକଳରେ ଭଗବାନଙ୍କୁ ଡ଼ାକୁଥିଲା ରକ୍ଷା କର ଏଇ ସୁନ୍ଦର ଧରତ୍ରୀକୁ । ଏଇ କ'ଣ ତୁମର ସର୍ଜନା ଥିଲା ପ୍ରଭୁ ? ତମେ କ'ଣ ମଣିଷକୁ ସୃଷ୍ଟି କରିଥିଲ ତୁମର ସୃଷ୍ଟିକୁ ବିକୃତ କରି ଏପରି ଅବସ୍ଥା କରିବାକୁ ? ହେଲେ ତାର ସେ ମୌନକ୍ରନ୍ଦନକୁ ଶୁଣିବ ବା କିଏ ? ଯେଉଁ ମଣିଷ ହୃଦୟ ସ୍ୱର୍ଗର ପାରିଜାତର କୋମଳତାକୁ ବଳିଯାଏ ସେଇ ମଣିଷ ଯଦି ବର୍ବର ହୋଇଯାଏ, ଏକ ପୈଶାଚିକ ପ୍ରବୃତ୍ତିରେ ମତ୍ତ ହୋଇଯାଏ, ସେତେବେଳେ ଭଗବାନ୍ ବି ତାକୁ ହାତ ଯୋଡ଼ନ୍ତି । ସଞ୍ଜୀବନି ପରି ଏକ କ୍ଷୁଦ୍ର ବାଳିକା ଅସହାୟ ହୋଇପଡ଼ିଲା । ସେ ବିସ୍ଫାରିତ ନୟନରେ ଅପେକ୍ଷାକୃତ ନିଛାଟିଆ ସେଇ ସ୍ଥାନର ଚତୁର୍ଦ୍ଦିଗକୁ ଟିକେ ଚାହିଁଲା ।

ଦୂରରୁ ଝାଉଁବଣର ସୁ ସୁ ପବନର ସ୍ୱର । ମଝିରେ ମଝିରେ ରଙ୍ଗୀନ ଛତା ତଳେ କେତୋଟି ଉଲଗ୍ନ ସ୍ତ୍ରୀ, ପୁରୁଷ, ପିଲା ସେଇ ଅଭଦ୍ର ଖେଳରେ ବ୍ୟସ୍ତ, ଯାହା କେବେ ସ୍ୱପ୍ନରେ ବି ଦେଖିନାହିଁ ସଞ୍ଜୁ । ସବୁରି ଦୃଷ୍ଟି ଅଶ୍ଳୀଳ, ସବୁରି ଭାଷା, ବ୍ୟବହାର ଅଶ୍ଳୀଳ । ଯେମିତି ଏଇଟା ପୃଥିବୀ ନୁହେଁ ଅପୃଥିବୀ । ଗୋଟିଏ ଭିନ୍ନ ଦୁନିଆଁ, ସୂର୍ଯ୍ୟରଶ୍ମିର ତୀବ୍ରତା ସହ ବଢ଼ିଚାଲିଛି ପାଣି ଭିତରେ ଖେଳର ଅଜବ ତାମସା । ବଲ ଫିଙ୍ଗାଫିଙ୍ଗି, ପୁଣି ଆଉ ଯେଉଁ ସବୁ ଦୃଶ୍ୟ ତାକୁ ଚାହିଁବାକୁ ବି ତାପରି କଅଁଳିଆ କଢ଼ିଟିଏ ବି ଲାଜ କରୁଥିଲା । କେତେବେଳେ କେମିତି ଟେଲିଭିଜନରେ ଖରାପଦୃଶ୍ୟ ଆସିଲେ ମମ୍ମି ସଙ୍ଗେସଙ୍ଗେ ଚ୍ୟାନେଲ ବଦଳାଇ ଦିଅନ୍ତି । ଏମିତିକି ଚୁମା ଦେବା ଦୃଶ୍ୟଟିଏ ବି ଭାଇଭଉଣୀଙ୍କୁ ଦେଖାଇ ଦିଅନ୍ତିନି ମମ୍ମି । ହେଲେ ଆଜି ଏ ପରି ସବୁ ଦୃଶ୍ୟକୁ ଜୀବନ୍ତ ଦେଖି ସଞ୍ଜୁର ହୃଦୟ ଯେମିତି ବେଦନାରେ ବିଳାପ କରି ଉଠିଲା । ସେ ନିଃସହାୟ ହୋଇପଡ଼ିଲା, କାତର କଣ୍ଠରେ ସେ ବିଳାପ କରିବାକୁ ଲାଗିଲା । ଛାତି ଭିତରଟା ଅସମ୍ଭବ ଭାବରେ ଥରିବାକୁ ଲାଗିଲା । ତା ହାତ ଗୋଡ଼ ଯେପରି ଅଚଳ ହୋଇପଡୁଛି । ପାଟି, ତଣ୍ଟି ଅଠା ଅଠା ହୋଇପଡୁଛି । ସେ କେଉଁ ଦୁନିଆଁରେ ଆସି ପହଞ୍ଚିଛି ସେ ନିଜେ ବି ଜାଣିପାରୁନି । ମା' କୋଳର ଉଷୁମ୍ ଛାଡ଼ି ପାରିନଥିବା ଗୋଟିଏ ଶିଶୁ ଆଜି ଦୁନିଆଁର ରାଜରାସ୍ତାକୁ ଆସି କି ବ୍ୟଭିଚାର କାର୍ଯ୍ୟରେ ଲାଗିବ । କିଛି ନ ବୁଝିପାରିବାର ବୟସ ହୋଇଥିଲେ ବି ସେ ବୁଝିପାରିଲା । ଅଶ୍ଳୀଳତାର କୌଣସି ନିର୍ଦ୍ଦିଷ୍ଟ ସଂଜ୍ଞା ନଥାଏ । ଏହା ସବୁ ଭାଷାରେ ଅଛି, ସବୁ ଭାବରେ ଅଛି, ପୃଥିବୀର ସବୁ ଦିଗରେ ଅଛି । ତା' ଗାଲରେ କଷିକରି ଗୋଟିଏ ବ୍ରହ୍ମଚାପଡ଼ା ପଡ଼ିଲା, ଆଖିରୁ ଜୁଲୁଜୁଲିଆ ପୋକ ବାହାରିଗଲା । ପାହାଡ଼ ପରି ଦେହଟାଏ ତା' ଉପରେ ଚାପି ହୋଇଗଲା । ସେ ଅଣନିଶ୍ୱାସୀ ହେଲା, ଛଟପଟ ହେଲା । ଲୋକଟା ତାକୁ ଯାହା କହିଲା ସେ ପ୍ରାଣ ବିକଳରେ ତା'ର ଅନଭିଜ୍ଞା ମନ ଆଉ ଦେହ ନେଇ ତା' କରିବାକୁ ହଁ ଭରିଲା..... । ତା' ଦେହରେ ବିନ୍ଦୁବିନ୍ଦୁ ଝାଳ ତା' ଆଖିର ଧାରଶ୍ରାବଣୀରେମିଶି ସତେ ଯେମିତି ସମୁଦ୍ରର ଜଳରାଶିକୁ ଆହ୍ୱାନ କରୁଥିଲେ କାହାର ଜଳବେଶୀ । ମାଛି ଅନ୍ଧାର ହୋଇ

ଆସୁଥିଲା, ଲୋକଟା ମଲାମାଛ ପରି ପଡ଼ିଥିଲା । ସେ ତା' ପାଖରେ ବସିରହି ଅନ୍ୟପିଲାମାନଙ୍କୁ ଆଡ଼କୁ ଆଖି ବୁଲାଇ ଆଣିଲା । ସମସ୍ତେ ତା'ରି ପରି ଖରାପ କାମ କରୁଛନ୍ତି । ମୁହଁକୁ ଲଜ୍ଜାରେ ଘୋଡ଼ାଇ ପକାଇ ସେ କାନ୍ଦିବାକୁ ଲାଗିଲା.... । ତା' ପେଟ ଭିତରୁ ବେଦନା, ଛାତି ଭିତରୁ କୋହ ଉଠି ଆସୁଥିଲା । ହେଲେ ଡ଼ରରେ ସେ କିଛି ବୁଝିପାରୁ ନଥିଲା କ'ଣ କରିବ, ସେ କେଉଁଠି ଅଛି ? ସେ ସ୍ତ୍ରୀ ଲୋକଟା ଆସିଲା ତା' ହାତକୁ ବଢ଼ାଇଦେଲା ଲୋକଟା କେଇବିଡ଼ା ନୋଟ୍, ବିଡ଼ବିଡ଼ ହୋଇ ଇଂରାଜୀରେ କ'ଣ କହିଲା ।

ତାପରେ ରାତିରେ କିଛି ଖାଇବାକୁ ଆଣି ପ୍ଲେଟରେ ରଖିଲା ସ୍ତ୍ରୀ ଲୋକଟା, ତା'ର ମୁଣ୍ଡ ଆଉଁସି ଦେଲା । ସେଇ ଛୋଟିଆ ଘରଟାରେ ଖଟଟି ଉପରେ ବସି କାନ୍ଦୁଥିଲା ସଞ୍ଜୁ । ସେ ତାର ମଥାକୁ ଛାତିରେ ଆଉଜାଇ ଆଣିଲା ତୁ କାନ୍ଦନା ତୁ ଗୋଟିଏ ଭଲ ଝିଅ ଏମାନେ ତୋତେ ଧରି ଆଣିଛନ୍ତି । ତୋ ପରି କେତେ ପିଲା ଏଠି ଅଛନ୍ତି, ତୁ ବୁଝିଯା....ସେମାନେ ଯାହା କହୁଛନ୍ତି କର । ନହେଲେ ସେମାନେ ତୋତେ ଜୀବନରୁ ମାରିଦେବେ । ତୋ ପରି କେତେ ପିଲାଙ୍କର ସର୍ବନାଶ କରି ସେମାନେ ମାରିଦେଇଛନ୍ତି....ନଖାଇ ନପିଇ.... ଏପରି ହେଲେ କିଛି ଲାଭ ନାହିଁ । ମୋତେ ଦେଖୁନୁ... ମୁଁ ବି ଖରାପ ସ୍ତ୍ରୀ ଲୋକଟାଏ । ମୋ ସ୍ୱାମୀ ମୋତେ ଆଣି ଏଠି ଛାଡ଼ି ଦେଇଗଲା । ସେବେଠୁ ମୁଁ ଏଠି ପେଟ ଚାଖଣ୍ଡକ ପାଇଁ ଏମାନଙ୍କ ପାଇଁ କାମ କରୁଛି । ତା' କଥାରେ ଆଶ୍ୱସ୍ତ ହେଲା ସଞ୍ଜୀବନି । କୁନି ଝିଅଟା ସତେ ଯେମିତି ଏ ଭିତରେ ବୟସ୍କା ସ୍ତ୍ରୀ ଲୋକଟିଏ ହୋଇଯାଇଥିଲା । ପାପ, ପୁଣ୍ୟ, ନିନ୍ଦା, ପ୍ରଶଂସା, ଭଲ ଖରାପର ସବୁକିଛି ଦେଖିସାରିବା ପରେ ଦେହର ବୟସ କ'ଣ ମଣିଷକୁ ବୟସ୍କ କରେ ? ବରଂ ମନହିଁ ଅଭିଜ୍ଞତା ଦେଇ ମଣିଷର ବୟସ ବଢ଼ାଏ । ସେ ତା'ର ବାବା, ମମି, କଥା ଭାବିଲା । କ'ଣ କରୁଥିବେ ସେମାନେ । ତା'କଥା ଝୁରିଝୁରି ମମି କେତେ କାନ୍ଦୁଥିବ । ତା' କୁକୁର ଟମି, ତାର ପୋଷାଶୁଆ ମିଟୁ ଆଉ ତା' ଭାଇ ବିଟୁ ସେମାନେ ତାକୁ କେତେ ଖୋଜୁଥିବେ । ସେ କେଉଁଠି

ଅଛି ? ସେ କେମିତି ଏଠୁ ଯିବ ? ସେ ପଚାରିଲା.... ଆଈ ମା'... ମୁଁ କେଉଁଠି ଅଛି ? ଆଈ ମା' କହିଲା... ଗୋଆରେ.... । ହେଲେ ଝିଅ ତୁ ଏଠୁ ଯିବାକୁ ଚେଷ୍ଟା କରିବୁନି ସେମାନେ ତୋତେ ବି ମାରିଦେବେ ମୋତେ ବି ଛାଡ଼ିବେନି । କାହାର ଚପଲ ଘୋଷାଡ଼ିବା ଶବ୍ଦରେ ଉଭୟ ଚମ୍‌କି ଉଠିଲେ । ହାତର ଚାବୁକ୍ ତା'ର ଝପଟି ଆସିଲା । ସଞ୍ଜୁ ସଙ୍ଗେସଙ୍ଗେ ତଳେ ପଡ଼ିଗଲା । ଆଗରେ ମାମୁଁ.... । ପ୍ରଚଣ୍ଡ ରାଗରେ ଯେମିତି କମ୍ପି ଉଠୁଥିଲା । ନାକପୁଡ଼ା ଦୁଇଟା ଫୁଲିଉଠି ମୁହଁଟା ଭୟଙ୍କର ଦେଖାଯାଉଥିଲା । କ'ଣ କହୁଛି ସେ....... ପଚାରିଲା ସ୍ତ୍ରୀ ଲୋକକୁ ସେ ରାଜି ଅଛି । ସବୁ ଯେମିତି ସ୍ୱାଭାବିକ୍ ହୋଇଗଲା...ତା'ର ଆଖି ବଦଳିଗଲା, ମୁହଁର ଶିରା ପ୍ରଶିରାଗୁଡ଼ା ସଙ୍କୁଚିତ ହୋଇଗଲା । ସେ ଦିଶିଲା ପୂର୍ବର ମାମୁଁପରି । ସଞ୍ଜୁକୁ ତଳୁ ଉଠାଇ ସେ କୁଣ୍ଢାଇ ଧରି ଚୁମା ପରେ ଚୁମା ଦେବାକୁ ଲାଗିଲା । ସଞ୍ଜୁକୁ ଲାଗିଲା ଯେମିତି ଅସଂଖ୍ୟ ସଂବାଳୁଆ ତା'ଉପରେ ଚଢ଼ିଗଲା । ଅସଂଖ୍ୟ କଣ୍ଟାରେ ସେ ଫୋଡ଼ି ହୋଇଯାଉଛି, ନିଆଁର ଝୁଲରେ ତାକୁ କିଏ ପୋଡ଼ି ଦେଉଛି । ତା' ଆଖି ଆଗରେ ଘରର ଛାତ, ଫ୍ୟାନ୍, ଖଟ, ଆଈ ମା' ସବୁ ଘୁରିବାକୁ ଲାଗିଲେ । ସେ ସବୁ ବଳ ଖଟାଇ ମାମୁଁର କାନ୍ଧରୁ ପୁଳାଇ କାମୁଡ଼ି ଦେଲା । ଯନ୍ତ୍ରଣାରେ ଚିତ୍କାର କରି ଉଠୁଥିବା ମାମୁଁକୁ ଧରି ଆଈମା' ବି ଗୋଟେ ଧକ୍କା ଦେଲା । ସତେ ଯେମିତି ଏତେଦିନ ଧରି ବନ୍ଦୀଥିବା ତା'ର ଆତ୍ମାର ଶୃଙ୍ଖଳକୁ ଏଇ ଛୋଟଝିଅଟା ହିଁ ଆଜି ଖୋଲିଦେଲା । ଆଈ ମା' ଘର କୋଣରେ ପଡ଼ିଥିବା ଚାବୁକ୍‌ଟା ଉଠାଇ ପାଏଁ ପାଏଁ ଲୋକଟା ଉପରେ କଷିବାକୁ ଲାଗିଲା । ଲୋକଟା ତଳେ ପଡ଼ିଗଲା ଦୁହେଁ ମିଶି ତାକୁ ମାଡ଼ି ବସିଲେ । ତା' ମୁହଁଟା ତଳେ ଚାପି ହୋଇ ଗଁ ଗଁ ପାଟି କରୁଥାଏ । ସ୍ତ୍ରୀ ଲୋକଟା ଖଟ ଉପରୁ ତକିଆ, ବେଡ଼ସିଟ୍ ଯାହା ପାରିଲା ହାତରେ ଘୋଷାଡ଼ି ଆଣି ସେ ଲୋକଟା ମୁହଁରେ ଚାପି ଧରିଲା...... । ଦୁଇଜଣ ପ୍ରାଣପଣେ ଲୋକଟାକୁ ମାଡ଼ି ବସିଲେ । କିଛି ସମୟ ଛଟପଟ ହେବାପରେ ସ୍ଥିର ହୋଇଗଲା ଲୋକଟା । ଅର୍ତ୍ତାନକ ଏଇ ଘଟଣାଗୁଡ଼ା ଘଟିଯିବା ପରେ ଏଥର ହୋସ୍ ପଶିଲା ଆଈ ମା'ର...... । ତା' ମଥାରୁ ଝାଳ ବାହାରିବାକୁ ଲାଗିଲା, ତଣ୍ଟି

ଅଠା ହୋଇଗଲା । ସେ ସଞ୍ଜୁକୁ କୁଣ୍ଢାଇ ଧରି ବିକଳରେ ଦୁଇଧାର ଲୁହ ଗଡ଼ାଇ ଦେଲା । କହିଲା..... ମା'ରେ ଆଉ ଡେ଼ରି କଲେ ତା'ର ଅନ୍ୟଲୋକମାନେ ଏଠି ପହଞ୍ଚିଯିବେ । ତୁ ଚାଲିଯା......ଏ ସବୁକିଛି ମୁଁ ତୋ ପାଇଁ କରିଛି । ହେଲେ.....ଆଈ ମା'.....ମୁଁ କୁଆଡ଼େ ଯିବି ? ଆଉ ତମେ ? ମୋ କଥା ଚିନ୍ତା କରନାଁ ତୋତେ ଗେଟ ବାହାରେ ନିରାପଦ ସ୍ଥାନରେ ପହଞ୍ଚାଇ ସାରିଲେ ଯାଇ ଯାହା..... । ନାଇଁ.....ଆଈମା' ? ମୁଁ ଯିବିନାହିଁ । ତମକୁ ଛାଡ଼ି ଯିବିନାହିଁ । ତାକୁ କୁଣ୍ଢାଇ ଧରି କାନ୍ଦିବାକୁ ଲାଗିଲା ସଞ୍ଜୁ । ଏତିକିବେଳେ.... ଲୋକଟା ପକେଟ୍‌ରୁ ମୋବାଇଲ୍‌ଟା ବାଜି ଉଠିଲା । ସଞ୍ଜୁ ଚମକି ପଡ଼ିଲା ଫୋନ୍ ବାଜିବାଜି ରହିଲା । ସ୍ତ୍ରୀ ଲୋକଟା ଡ଼ରିଡ଼ରି କହିଲା ସେମାନେ ଏଠି ଏବେ ପହଞ୍ଚିଯିବେ ଆମେ କ'ଣ କରିବା । ସଞ୍ଜୁ ତା ପକେଟ୍‌ରୁ ଟାଣି ଆଣିଲା......... ଡ଼ାଏଲ୍ କଲା ତା' ବାବାଙ୍କ ନମ୍ବର...... । ସେପଟୁ ଶୁଭିଲା ବାବାଙ୍କ କଣ୍ଠସ୍ୱର....... । ସଞ୍ଜୁ ତାଙ୍କୁ ଠିକଣା ଦେଲା । ଆକାଶ ଫର୍ଚ୍ଚା ହୋଇ ଆସୁଥିଲା ଗେଟ୍ ଚାରିପଟେ ଶୁଭିଲା ପୁଲିସ୍‌ର ଭାରି ବୁଟ୍ ଶବ୍ଦ ଆଉ ଗାଡ଼ିର ସାଇରନ୍.... । ସଞ୍ଜୁର ମୁହଁ ଉଜ୍ଜ୍ୱଳ ହୋଇଉଠିଲା । ସେ ଆଈ ମା' ହାତକୁ ଯୋରରେ ମୁଠେଇ ଧରି ଡାଡି, ମମ୍ମିଙ୍କ ଗାଡ଼ିରେ ନେଇ ବସାଇଦେଲା ।



# ଉଦ୍‌ବାସ୍ତୁ

ଘଞ୍ଚ ଜଙ୍ଗଲ !

ସମୁଦ୍ରରେ ପାଣି ଯେତିକି, ଜଙ୍ଗଲରେ ପତ୍ର ସେତିକି । କୁଳୁକୁଳୁ ନାଦ କରି ବହିଯାଉଛି ଝରଣାର ପାଣି । ସରସର୍ ଚାଲିଯାଉଛନ୍ତି ସରୀସୃପ ।

କାଁ ଭାଁ ବନ୍ୟଜନ୍ତୁଙ୍କର ଶବ୍ଦ କାନରେ ବାଜୁଛି

ଗୋଟିଏ ପ୍ରକାରର ଥଣ୍ଡାଥଣ୍ଡା ପାଗ ।

ଆଃ ! ସ୍ୱର୍ଗର ପ୍ରଶାନ୍ତି !

ନିକଟରେ ବହିଯାଉଛି ମାଛକୁଣ୍ଡ ନଦୀ ।

ସେ ରହେ ରାମୁଗୁଡ଼ା ଗ୍ରାମରେ ତା' ସ୍ୱାମୀ କିଷନିଆ ସହ ।

କଳା ମଚମଚ ଦେହରୁ ସତେ ଯେମିତି ତେଲ ନିଗିଡ଼ି ପଡ଼ିବା ଯିଏ ଦେଖେ, ଦେଖି ରହିଯାଏ । କିଷନିଆ ତାକୁ ଭାଆରି ଭଲପାଏ । ପରଜା ଜାତିର ଝିଅ କୁସୁନି । ସତରବର୍ଷ ପଶୁ ନ ପଶୁଣୁ ତା'ର ବାଟ ଚାଲିବା କଷ୍ଟକର ହୋଇପଡ଼ିଲା । ହେଲେ ଚଇତପର୍ବରେ ବେଣ୍ଟକୁ ଯାଇଥିବା କିଷନିଆକୁ ଦେଖି ନିଜର ମନ ଦେଇ ସାରିଥିଲା କୁସୁନି । ବୀରୁ ଭୈରୋ ଆଉ ମାଉଳି ଠାକୁରାଣୀଙ୍କ ପାଖରେ ବାରହାଟିଏ ମାନସିକ୍ ବି କରିପକାଇଥିଲା । ମନ କଥା ମନରେ ରଖି ଠାକୁରଙ୍କୁ ମୁଣ୍ଡିଆ ମାରେ ସେ । ସତେ ଯେମିତି ଠାକୁର ତା' ଡ଼ାକ ଶୁଣିଲେ ତା' ବା' ପାଖକୁ ଗୁଣି ଝାଡ଼ିବାକୁ ଆସିଲା । କେତେ ଗୁଣି ଟୁଟୁକା କଲେ ବି ତା'ର ଜ୍ୱର ଛାଡୁନି । ସେ ବା'କୁ ସଲପମଦ ଦେଇ ହାତ ଯୋଡ଼ି ବସି ରହିଲା । ତାକୁ ଝାଡ଼ି ଦେବାପରେ ତା'ର ଜ୍ୱର ସତକୁ ସତ ଭଲ ହୋଇଯିବାରୁ ଭାରି କୃତଜ୍ଞ ହୋଇପଡ଼ିଲା କିଷନିଆ । ଲାଜକୁଳା ପିଲାଟାଏ ସେ । ଗାଁରେ କେଉଁଠାରେ ବି ଏମିତି ପିଲାଟାଏ କେହି

ଦେଖି ନଥିବେ । କିଷନିଆର ନିଜର ଘର, ଜମିଥିବାରୁ ସେ ଥିଲାବାଲା ଘରର ପୁଅ ଭାବରେ ସମ୍ମାନ ପାଏ । ବାପା ପାଖକୁ ଏବେ ସେ ରୋଜ୍ ଆସେ । କବାଟ ଫାଙ୍କରୁ ତାକୁ ଚାହିଁରହିଥାଏ କୁସୁନି । ସେ ଆସିଲେ ବାହାନ କରି ଏପଟ ସେପଟ ହୁଏ । ଚାରିଆଖିର ମିଳନରେ କୁସୁନି ଦେହରେ ଚମକ୍ ଲାଗେ । ଛାତି ଝିମ୍‌ଝିମ୍ ହୁଏ । ଦେହ ଝାଳେଇ ଯାଏ । ମୁହଁ ଗୋଲାପି ହୋଇଯାଏ । ମାଉଳି ଠାକୁରାଣୀ ପାଖକୁ ଦୌଡ଼ି ଯାଇ ଆଣ୍ଠୁମାଡ଼ି, ଆଖିବୁଜି ବସିରହେ ବହୁତ ସମୟ ।

ହଠାତ୍ ଦିନେ ଏଇପରି ଠାକୁରାଣୀ ପାଖରେ ଆଖିବୁଜି ବସିଥିବା ବେଳେ କାନ୍ଧରେ କାହାର ଉଷୁମ୍ ନିଶ୍ୱାସର ସ୍ପର୍ଶ ପାଇଁ ସେ ଚମକି ଉଠିଲା । ନିଜର ଦୁଇଆଖିକୁ ବି ସେ ବିଶ୍ୱାସ କରିପାରିଲାନି । ଆଗରେ ତା' ମନର ମଣିଷ ସେ ଲାଜେଇଗଲା, ତାକୁ ଛାତିକୁ ଆଉଜାଇନେଲା ଜୁଆନ୍ କିଷନିଆ । ଦୁହିଁଙ୍କର ନୀରବଭାଷାର ସାକ୍ଷୀ ରହିଲେ ସ୍ୱୟଂ ମା' ମାଉଳୀ ଠାକୁରାଣୀ !

ତାକୁ ତୋଷୋ ବିବାହ କରିବାକୁ ପ୍ରସ୍ତାବ ପଠେଇଛି କିଷନିଆ ! କୁସୁନିର ବିହାଘର ଏମିତି ହେଲା ଯେ ଦେଖିବାବାଲା କହନ୍ତି ରାମୁଗୁଡ଼ା ଗ୍ରାମରେ ଏପରି ନାଚ, ଗୀତ, ବାଜା, ଭୋଜି, ମଦ, ମାଂସ ଆଗରୁ କେବେ ବି ହୋଇନଥିଲା । ଗାଁର ସବୁ ମରଦ, ମାଇକିନିଆ ଅଣ୍ଟାକୁ ଅଣ୍ଟା ଛନ୍ଦି, ଗୋଡ଼ ଆଗକୁ ପଛକୁ କରି ନାଚର ତାଳେତାଳେ କନିଆଁ କୁସୁନିକୁ ବିହା କରେଇଲେ । ଗାଁ ପଲାସୀ ବି କହୁଥିଲା ତାଙ୍କ ଜୀବନକାଳରେ ସେ ଏତେ ଆନନ୍ଦ କେବେ ହୋଇନଥିଲେ । କୁସୁନି ମଥାରେ ସିନ୍ଦୁର, ହଳଦୀ ଚାଉଳର ଟୀକା ଲଗାଇ ଅପୂର୍ବ ଦିଶୁଥାଏ । ବେଶ୍ କନିଆଁ ମୂଲ ଦେଇଥିବାରୁ କିଷନିଆ ଉପରେ ବି ଭାରି ଖୁସିଥାଏ କୁସୁନିର ବା' ।

ଦୁଇଟିଯାକ କମ୍ କଥାକୁହା ମଣିଷ । ଆଖିରେ ଆଖିରେ ଦୁହେଁ ଦୁହିଁଙ୍କୁ ଭାଆରି ଭଲପାଆନ୍ତି । ଦୁଇ ଭାଇର ସଂସାର ସାନଦିଅରକୁ ବହୁତ ଶରଧା କରେ କୁସୁନି । ସଭିଁଏ କହନ୍ତି ରାମ, ଲଇକ୍ଷଣକୁ ସୀତା ମାଇ ମିଳିଲେ । ଦୁଇଭାଇ କାମକୁ ବାହାରିଗଲେ ରନ୍ଧାବଢ଼ା କରେ କୁସୁନି, ଭାତ, ମାଣ୍ଡିଆ କେବେକବେ

ମାଛ, ମାଂସ କେତେ ପ୍ରକାରର ତିଅଣ । ମଥାରେ ଭାତ ନେଇ ସେ ସବୁଦିନ କ୍ଷେତକୁ ଯାଏ । ଦୁଇଭାଇଙ୍କୁ ବାଢ଼ିଦେଇ କିଛି ଦୂରରେ ବସି ଶାଢ଼ୀକାନିରେ ବିଞ୍ଚିହୁଏ । ତୃପ୍ତିରେ ତା'ର ମନ ଭରିଯାଏ । ପେଟ ପୁରିଯାଏ ଶାନ୍ତିରେ ଦୁଇଭାଇ ଖାଇଦେଲେ, ସେ ଯାହା ଖାଇଲେ ବି ଚିନ୍ତା ନାହିଁ । ଆହାଃ... ଦିଅରଟା ତା'ର ପୁରୁବ ଜନମରେ ନିଶ୍ଚୟ ପୁଅ ଥିଲା । ଦିଅରର ବି ଶରଧା କମ୍‌ନୁହେଁ ଭାଉଜକୁ । କୁଆଡୁ କୁଆଡୁ ଅପୂରବ ଜିନିଷମାନ ଗାମୁଛାରେ ବାନ୍ଧି ନିଇତି ଆଣିଥାଏ ଭାଉଜ ପାଇଁ । କଣ୍ଟେଇକୋଳି, ବଇଁଚକୋଳି ପୁଣି କେବେ କେବେ ବାସନା କିଆଫୁଲ । କେବେ କେମିତି ମାଟିକାନ୍ଥରେ ମାଟିଲିପି ଧଳା, ନାଲି, ହଳଦିଆ ରଙ୍ଗମାଟିରେ କେତେ ସୁନ୍ଦର ଚିତ୍ର ଆଙ୍କିବସେ କୁସୁନି । ଗୋଟିଏ ବଡ଼ବଖରାରେ ସେ ଓ କିଷନିଆ ରହନ୍ତି । ସେଇଠି ସେ ବଖରାରେ ରହେ ସାନଭାଇ । ଘର ଚାରିପାଖେ ଚାଳବାଡ଼ ଦେଇ ସେ କେତେ ପ୍ରକାରର ପନିପରିବା ବି ଲଗେଇଛି । ଘର ପଛପଟେ ଗାଇ ଗୁହଳରେ ଦିଇଟା ଦୁହାଁଳିଆ ଗାଇ ବି ବାନ୍ଧିଛି ।

ଦୁଃଖ କ'ଣ ? ଦିନ ବିତିଯାଏ ଖୁସିରେ ଖୁସିରେ । ଯେତେଯେତେ କୁସୁନିର ମା' ହେବାଦିନ ପାଖେଇ ଆସୁଥାଏ ଆତଙ୍କର ଧୂସର ଇଗଲଟିଏ ଡ଼େଣାମେଲାଇ ମାଡ଼ି ଆସୁଥାଏ । ତିରିଲା ମଣିଷଟା ଏକେଲା, ଦୁଇ ମିଣିପି । କ'ଣ କେମିତି କରିବ ସେଇ ଚିନ୍ତାରେ ତା'ର ଦିନ କଟୁଥାଏ । ମା' ହେବାର ଗୋଟିଏ ଅଦ୍ଭୁତ ଆନନ୍ଦର ମିଶ୍ରିତ ଭାବଟିଏ ବି ତା' ଭିତରେ ଭିତରେ ଖେଳିବୁଲି ତାକୁ ଅସ୍ଥିର କରୁଥାଏ । ତା' ଛୁଆ ତାକୁ ଭିତରୁ ମା' ମା' ଡ଼ାକୁଥିବା ସେ ଶୁଣିପାରି ଆତ୍ମହରା ହେଉଥାଏ । ତା' ସହ ତା' ପୃଥିବୀର ଅନ୍ୟ ଦୁଇଟି ମଣିଷ ବି ସ୍ୱପ୍ନର ତାଜମହଲ ଗଢ଼ି ଖସି ଉତ୍‌ଫୁଲ୍ଲ ହୋଇ ଉଠୁଥାନ୍ତି । ଏବେ କୁସୁନିକୁ କିଷନିଆ ମନା କରୁଛି ଭାତ ନେଇ ଯିବାପାଇଁ । ସେମାନେ ଦୁଇଭାଇ ଆସି ଖାଇଦେଇ ଯିବେ ସିନା, କୁସୁନି ନଯାଉ । ହେଲେ ଆଦିବାସୀ ଝିଅ କୁସୁନି ଦେହରେ ଦେବ୍‌ତା ଖୁବ୍ ଯୁର ଦେଇଛନ୍ତି । ରାତିନଇଁ ଆସିଲେ ଅନ୍ଧାରରେ କଳାଶାଢ଼ୀ ଘୋଡ଼ାଇ ଧରନୀମାତା ଯେବେ ଶୋଇଯାଏ ଦୁଇଟି ମଣିଷ ସେବେ ଚୁପିଚୁପି ମନକଥା ହୁଅନ୍ତି । କିଷନିଆ

କହେ କୁସୁନି ଲୋ......ମୋ ପୁଅ ପାଇଁ ମୁଁ ବଜାରରୁ ଜୋତା, ପେଁକାଳି, ପୋଷାକ ସବୁ କିଣି ଆଣିବି । ସେ ପାଠପଢ଼ିବ, ବଡ଼ ମଣିଷ ହେବ । ଆଉ ଝିଅ ହେଲେ ? ପଚାରେ ଲାଜକୁଳି କୁସୁନି ଭଲ ଜୁଇଁ ଗୁଟେ ଖୋଜି ବାହା କରିବି । ରାତି ବିତିଯାଏ ହେଲେ କଥା ସରେନିଁ । କିଷନିଆର ଛାତି ଉପରେ ମୁଣ୍ଡରଖି ଟିକେ ନିଦେଇ ଯାଉଯାଉ କାଉ କା କା କରେ । ଧଡ଼ପଡ଼ ହୋଇ ଦୁହେଁ ଉଠି ପଡ଼ନ୍ତି ।

ସବୁଦିନ ସମାନ ଯାଏନିଁ । ଦୁର୍ଭାଗ୍ୟର କଳାବାଦଲ ଛାଇଗଲା ସବୁ ଗାଁ ଉପରେ । ରାକ୍ଷସଟାଏ ବଡ଼ ଆଁ କରି ମାଡ଼ି ଆସିଲା ଗାଁର ସବୁ ମଣିଷଙ୍କୁ ଖାଇଯିବ ପାଇଁ । ମାଇକ୍‌ରେ ସରକାରଙ୍କ ଘୋଷଣାନାମା ପ୍ରଚାର ହେଲା ମାଛକୁଣ୍ଡ ନଦୀରେ ତିଆରି ହେବ ବିଦ୍ୟୁତ ପ୍ରକଳ୍ପ । ଗାଁ ଲୋକ କାମ ପାଇବେ, ଟଙ୍କା ପାଇବେ, ଜମି ବଦଳରେ ଜମି ପାଇବେ, ଗାଁ ଲୋକଙ୍କର ଭାଗ୍ୟ ଖୋଲିଯିବ । ସମସ୍ତେ ଚାକିରୀ ପାଇବେ ହେଲେ ସମସ୍ତଙ୍କୁ ଜାଗା ଖାଲି କରି ଚାଲିଯିବାକୁ ହେବ ସବୁଦିନ ପାଇଁ । ସତେ ଯେମିତି ବଜ୍ରପଡ଼ିଲା ସଭିଙ୍କ ଉପରେ । କୁଆଡ଼େ ଯିବେ ସେମାନେ ? ଏ ଗାଁ ତାଙ୍କର ଭିଟାମାଟି, କେଉଁ ଆଦିମ ସମୟରୁ ଏଇଠି ରହି ଆସୁଛନ୍ତି ସେମାନେ ଏ ଜାଗା ବାହାରେ ଅଛି କି ସତେ ଆଉ ଏକ ପୃଥିବୀ ? ଜାଣେ ନାଁ କୁସୁନି । ଗାଁ ଲୋକ କୁହାକୁହି ହେଉଛନ୍ତି । ମୁଣ୍ଡରେ ହାତ ଦେଇ ବସିଛି କିଷନିଆ । କୁସୁନି ଆଖିରୁ ଟପ୍‌ଟପ୍ ଲୁହ ବହିଆସିଲା । ଏବେ ଏମିତି ଅବସ୍ଥାରେ କେଉଁଆଡ଼େ ଯିବେ ସେମାନେ । ସେମାନଙ୍କର ହସିଉଠୁଥିବା ଧାନକ୍ଷେତ, ସୁନେଲୀ ଧାନର କେଣ୍ଡା, କଷି ଧରିଥିବା ନାଲିଲଙ୍କା, ନାଲିମାଟିରେ ଚିତ୍ରିତ ତାଙ୍କ ସୁନ୍ଦର ଛୋଟ ଘରଟି, କଷିବାଇଗଣ, ଲାଉ, କଖାରୁର ଡ଼ଙ୍କ । ବାଡ଼ିପଟ ସଜନାଛୁଇଁରେ ଭାଙ୍ଗି ପଡ଼ୁଥିବା ଗଛ, କେତେ ପ୍ରକାରର ଔଷଧ ଗଛ ଆଉ ଦୁହାଁଳିଆ ଗାଈ ଦୁଇଟା । ଏସବୁ ଉପରେ ସରକାର କଳଚଳାଇ ପାରିବେ ? ମରିଯିବେ ମାନେ ? ସରିଯିବ ସ୍ୱପ୍ନର ସଂସାର । ନାଁ......ଚିତ୍କାର କରି ପଡ଼ିଗଲା ନଅମାସର ପୂର୍ଣ୍ଣଗର୍ଭା କୁସୁନି । ଆଖି ଖୋଲିବା ବେଳକୁ ଲହୁଲୁହାଣ ଦେହଟା ତା'ର ଶଗଡ଼ଗାଡ଼ିରେ ଧକଚକଡ଼ ହୋଇ ପଡ଼ିଛି । ସେ ଦେଖିଲା ତା' ମୁଣ୍ଡକୁ କୋଳରେ ଧରିଛି ସ୍ୱାମୀ ତା'ର, ଆଖିରୁ ଲୁହ

ବହିଯାଉଛି । ଉଁ.......ଯନ୍ତ୍ରଣାରେ ଶିହରିତ ହେଲା ସେ ତଳିପେଟ, ଛାତିଠାରୁ ସାରା ଶରୀର ତା'ର ଅସ୍ଥିର ହୋଇ ଉଠୁଛି । ସେ ଚାହିଁ ବି କିଛି କହିପାରୁନି । ଧାଇ ମା'ର ଘରର ପାଖରେ ପହଞ୍ଚୁ ନ ପହଞ୍ଚୁଣୁ ବାଟରେ ହିଁ ଜନ୍ମ ହୋଇପଡ଼ିଲା ପିଲାଟା । ଶଗଡ଼ଟା ବାଟେ ରଖି ଧାଇଁଗଲା କିଷନିଆର ସାନଭାଇ, ସାଥେ ସାଥେ ଧାଈ ବୁଢ଼ୀ ଧରି ଆସିଲା । କୁସୁନିର ପୁଅ ବାଟୁଆ ବାଟରେ ଥିବା ବରଗଛ ମୂଳେ ଶୋଇଥିଲା ତା' ମା' ପାଖେ । ଏତେ କଷ୍ଟ, ଯନ୍ତ୍ରଣା ସତ୍ତ୍ୱେ ଉକୁଟି ଉଠୁଥିଲା ବେଦନାବିଧୂରିତ ହସରୁ ଟେନାଁଏଲେଖାଏଁ କୁନିପରିବାରର ସବୁ ସଦସ୍ୟଙ୍କ ମୁହଁରେ ।

ଛୁଆକୁ ଧରି ଘରକୁ ଫେରିବା ବେଳକୁ ସାରାଗାଁରେ କାନ୍ଦବୋବାଳି ପଡ଼ିଛି । ଗଦବା, ପରଜା, ଦିଦାଇ ସବୁ ଜାତିର ମର୍ଦ୍ଦ, ମାଇକିନିଆ ରୁଣ୍ଡ ହୋଇଛନ୍ତି । ମା' ମୁଣ୍ଡ ବରଗଛରେ ସରକାରଙ୍କର ରାଜସ୍ୱବିଭାଗର ହାତଲେଖା ନୋଟିସ୍ ।

"ଯେତେଶୀଘ୍ର ସମ୍ଭବ ସମସ୍ତେ ଗାଁ ଛାଡ଼ି ଚାଲିଯାଆନ୍ତୁ । ମାଛକୁଣ୍ଡରେ ହେବ ଜଳବିଦ୍ୟୁତ ପ୍ରକଳ୍ପ । ଏଠି ଉତ୍ପନ୍ନ ହେବ ବିଦ୍ୟୁତ । ସେଇ ବିଦ୍ୟୁତ ଆବଣ୍ଟନ ହୋଇ ଓଡ଼ିଶା, ଆନ୍ଧ୍ରପ୍ରଦେଶର ସହରମାନଙ୍କୁ ବିଦ୍ୟୁତ ଯୋଗାଣ ହେବ".....ଇତ୍ୟାଦି କେତେକଥା ।

ଜଣେ ବାବୁ ସେ ସବୁ ପଢ଼ି ଗାଁ ଲୋକଙ୍କୁ ଶୁଣାଇଦେଇ ପୁଲିସ୍ ଗାଡ଼ିରେ ବସି ଚାଲିଗଲେ । ଏତେ ବଡ଼ବଡ଼ ବନ୍ଧୁକ ଧରିଥିବା ସେଇ ପୋଲିସ୍ ଓ ଗାଡ଼ିଗୁଡ଼ିକୁ ଦେଖି ଗାଁରେ ଭାଳେଣୀ ପଡ଼ିଯାଇଛି ।

ସହରୀ ମଣିଷକୁ ଆଲୁଅ ଦେବାପାଇଁ ଅନ୍ଧାରୀ ମୂଳକର ମଣିଷମାନେ ଯେ ସବୁଦିନ ପାଇଁ ତାଙ୍କର ଭିଟାମାଟି ଛାଡ଼ିବେ, ଛାଡ଼ିବେ କେଉଁ ଆଦିମ ସମୟରୁ ରହିଆସୁଥିବା ଜଙ୍ଗଲ, ପାହାଡ଼, ଗିରିଗହ୍ୱର, ଗାଁର ବୀରୁ ଭୈରୋ ଠାକୁରାଣୀକୁ । ସେମାନଙ୍କର ସଂସ୍କୃତି, ପରମ୍ପରାର ଜଡ଼ ତ ଏଇ ଜାଗାକୁ ନେଇ ଏଇଠି ସେମାନଙ୍କର ମୂଳପିଣ୍ଡ । ଏହାସହ ଯୁଗଯୁଗ ନୁହେଁ ଜନ୍ମଜନ୍ମାନ୍ତରର ନାହିନାଡ଼ିର ସମ୍ବନ୍ଧ । ଜଙ୍ଗଲ ହିଁ ସେମାନଙ୍କର ସର୍ବସ୍ୱ । କୁଆଡ଼େ ଯିବେ, କିଷନିଆ, କୁସୁନି, ତାର ଦିଅର ଓ

ପୁଅ ? ସରକାର ଘୋଷଣା କଲେ ସେମାନଙ୍କୁ ନୂଆ ଗାଁ, ଘର ମିଳିବ । ହେଲେ ସେଇ ଗାଁରେ ଅଧେ ଲୋକଙ୍କ ପାଇଁ ବି ସ୍ଥାନ ନଥିଲା । ସମସ୍ତଙ୍କୁ ସେମାନଙ୍କ ଜମି, ଘରର ପଟ୍ଟାପାଉତି କାଗଜପତ୍ର ସରକାର ମାଗିଲେ ସେଇ ଅନୁସାରେ କ୍ଷତିପୂରଣ ମିଳିବ । ଆଦିବାସୀ ଆଦିମ ମଣିଷ ବା' କାଗଜପତ୍ର କେଉଁଠୁ ଆଣି ଦେବ ? ବାପ ଅଜା ଅମଳରୁ ରହିଆସୁଥିବା ଜଙ୍ଗଲ ହିଁ ତାର ବୋଲି ଜାଣେ । ଏ ଧରନୀ ତାର ମାତା, ଆକାଶ ତା'ର ପିତା, ଏ ଜଙ୍ଗଲ ତାର ଘର । ଏ ଝରଣା, ନଈ, ବଣଜଙ୍ଗଲ, ପକ୍ଷୀ, ପଶୁ, ଆକାଶ ପୃଥିବୀ ସବୁ ସେମାନଙ୍କର । ହେଲେ ଯୋରଜବରଦସ୍ତ ସେମାନଙ୍କଠାରୁ ସବୁକିଛି ଛଡ଼ାଇନେବା ପରେ କିଷନିଆ ଓ କୁସୁନି ହୋଇଗଲେ ସର୍ବହରା । ସେମାନେ ଦୁନିଆଁ ଆଗରେ ନୂଆନାମରେ ପରିଚିତ ହେଲେ ଉଦ୍‌ବାସ୍ତୁ । ବାଲିମେଳା ଜଳବିଦ୍ୟୁତ ପ୍ରକଳ୍ପର ବିଦ୍ୟୁତରେ ସାରା ସହର ଯେତେବେଳେ ରୋଷଣୀ ଜାଳି ମସଗୁଲ୍ ହେଲେ, ଆନନ୍ଦରେ ଆତ୍ମହରା ହେଲେ, କୁସୁନିର ପୁଅ ବାଟୁଆ ଭାଗ୍ୟରେ ଅନ୍ଧାରୀ ଜୀବନ ଲେଖି ହୋଇଗଲା ସବୁଦିନ ପାଇଁ । ଯେଉଁ ଆଲୁଅର ସେ ହକ୍‌ଦାର ଥିଲା ସେ କିନ୍ତୁ କେବେ ବି ତା ଦେଖିପାରିଲାନି । ସରକାର ସେମାନଙ୍କୁ ବିଚ୍ଛିନ୍ନାଞ୍ଚଳ ଅଧିବାସୀ ଘୋଷଣା କଲେ । ଉପରମୁଣ୍ଡ ପାହାଡ଼ ଉପରେ ଆଉ କେତକଙ୍କ ସହ ଆସି ରହିଲେ କୁସୁନିର ପରିବାର । ଆଖିରୁ ଲୁହ ଝରାଇ ଝରାଇ ଦିନ ସରୁନି କୁସୁନିର । ହାତରେ କାମନାହିଁ ଦୁଇଭାଇଙ୍କର । ଟଙ୍କା ମିଳିବ, ଜମି ମିଳିବ, ଚାକିରୀ ମିଳିବ, ଏ ଆଶାରେ କେତେଦିନ ବା ଅନେଇ ରହନ୍ତେ ସେମାନେ । କେତେଦିନ ଉପାସ ଭୋକରେ ପଡ଼ିରହିବେ । ଥନରୁ ଖିର ସରିଆସୁଛି ଶୁଖିଲା ଥନକୁ ଶୋଷିଶୋଷି ଛୁଆ ତଣ୍ଟି ଅଠା ହୋଇଯାଇଛି । ଅସ୍ଥିକଙ୍କାଳସାର ଛୁଆଟି ଦିନରାତି କାନ୍ଦୁଛି । ସେଦିନ କୁଆ କା' ନ କରୁଣୁ ଝାଟିମାଟିର କୁଡ଼ିଆ ଡ଼େଙ୍ଗ ବାହାରିପଡ଼ିଲା କିଷନିଆ । ଆ'ରେ ଭାଇ ଆ...... ଯିବା ଦାଦନ ଖଟି । ନ ହେଲେ ଆମେମାନେ ବଞ୍ଚିବା କେମିତି । ଆ.......... କରି ଚାହିଁରହିଛି କୁସୁନି । ତାକୁ ତା'ର୍ କଅଁଳାଛୁଆକୁ ଛାଡ଼ି ବାପ ତା'ର ଚାଲିଯିବ ? ଖଣ୍ଡଖଣ୍ଡ ହୋଇ ଭାଙ୍ଗିପଡୁଥିଲା ଦେଖିଥିବା ସ୍ୱପ୍ନର ମୀନାର୍ ।

"ଏ ବାବୁ.... ତୋର୍ ବୁଆ ଚାଲିଯାଉଛିରେ.....ମତେ ଛାଡ଼ି, ତତେ ଛାଡ଼ି ଚାଲିଯାଉଛି, ତାକୁ କହରେ ଏଇ ଭିଟାମାଟିକୁ ମୁଣ୍ଡ ଦେଇ କରି ଆମେ ମରିଯିବା ସିନା ସେ ନାଇଁ ଯାଉ....." ତା'ର ମୁଣ୍ଡକୁ ଛାତିରେ ଆଉଜାଇ ନେଇ ଆଉଁସି ଦେଲା କିଷନିଆ... । ପେଟ୍‌ର ନିଆଁ ହୁତ୍‌ହୁତ୍ କରି ଜଳୁଛି ଲୋ କୁସୁନି । ଆଖିରେ ଦିଶିଯାଉଛି ସେଇ ସୁନାଜମି ଧାନକ୍ଷେତ, ପବନରେ ଦୋଳିଖେଳୁଥିବା ଧାନକେଣ୍ଡା । ମୁଁ ଏ ଜାଗାରେ ବଞ୍ଚିବି କେମିତି ? ହେଲେ କିଷନିଆ କିଛି ବି କହିପାରିଲାନି । ଆଖିରୁ ତା'ର ଧାରଧାର ହୋଇ ଝରିଗଲା ଲୁହ । ନିଜମନକୁ ତ ସେ ବୁଝାଇପାରୁନି । ନିରିହ ସ୍ତ୍ରୀ, ସଦ୍ୟଜାତ ପୁତ୍ର, ନିଜ ଜନମଭୂଇଁକୁ ଛାଡ଼ିଯିବାର ଦୁଃଖ..... ଯିଏ ଭୁକ୍ତଭୋଗୀ ସିଏ କେବଳ ଜାଣିବ ସିନା ଆଉ କେହି ଜାଣିପାରିବେନି । ତଣ୍ଟି ଅଠା ଅଠା, ଛାତି ଭିତରର ହୃତପିଣ୍ଡଟା ବାହାରି ଖଣ୍ଡଖଣ୍ଡ ହୋଇ ତଳେ ପଡ଼ିଯିବାର ଯନ୍ତ୍ରଣା । ସେ ହାତ ଯୋଡ଼ିଲା ଭୈରୋ ବାବାକୁ, ମାଉଳି ଠାକୁରାଣୀକୁ, ଧରନୀମାତାର ଧୂଳିଆଣି ମଥାରେ ମାରିଲା । ତା' ଆଖିର ଧାରଧାର ଲୁହ ପି, ଧରନୀ ମାତା ବି କାନ୍ଦୁଥିଲା କି କ'ଣ ବିଜୁଳିଟିଏ ମାରି ଘଡ଼ଘଡ଼ି ଶବ୍ଦରେ ପୃଥିବୀ କମ୍ପିଲା । କାନ୍ଦି ଉଠିଲା ଗାଁ ଦାଣ୍ଡ, ଜଙ୍ଗଲ, ଝରଣା, ନଈ । ସେ ଦୁଇଭାଇ ଚାଲିଗଲେ........ ମଥା ପିଟିପିଟି କାନ୍ଦୁଥିଲା କୁସୁନି । ବାବୁର ଜନମରେ ତା'ର ଅଣ୍ଟାରେ କଳାସୂତା, ହାତରେ ଲୁହାବଳା ପିନ୍ଧାଇ ଗାଁ ସାରାର ଲୋକମାନଙ୍କୁ ଭୋଜିଭାତ ଖୁଆଇ କେତେ କ'ଣ ନ କରିଥାନ୍ତା ସ୍ୱାମୀ ତା'ର । ସେଇ ତା'ର କିଷନିଆ ତା' କ୍ଷେତରେ ସବୁ ସୁନ୍ଦର ଧାନ ଚାଷ କରୁଥିଲା ଯେ କୁଆଡୁ କୁଆଡୁ ଲୋକମାନେ ଆସି ଫି ସନ ହାତରେ କୋଡ଼ି କୋଡ଼ି ଟଙ୍କା ସବୁ ଗଣିଦେଇ ସରୁ ଚାଉଳର ବସ୍ତା ସବୁ ନେଉଯାଉଥିଲେ । ତା' କ୍ଷେତରେ ସତେ ଯେମିତି ଧରନୀ ମାତା ଧାନ ନୁହେଁ ସୁନା ଫଳାଉଥିଲେ । ହେଲେ ଆଜି ଦଇବର କି କୁଦୃଷ୍ଟି ପଡ଼ିଲା ସେମାନଙ୍କ ଉପରେ ଯେ ସେମାନେ ହେଲେ ବାସ୍ତୁହରା ।

ମାଛକୁଣ୍ଡ ଜଳବିଦ୍ୟୁତ ପ୍ରକଳ୍ପ ସ୍ଥାପିତ ହେଲା, ବେକରେ ଫୁଲମାଳ ଲଗାଇ ବୁଲିଲେ ନେତାଏଁ । ସାରା ବଣଜଙ୍ଗଲ, ପାହାଡ଼ପର୍ବତ ପାଣି ଭିତରେ ବୁଡ଼ିଗଲା,

ତା'ସହ ବି ବୁଡ଼ିଗଲା ସରକାରଙ୍କର ଦେଇଥିବା କଥା । ହଜାର ହଜାର ଆଦିବାସୀଙ୍କ ସୁନାର ସଂସାର, ସୁନେଲୀ ସ୍ୱପ୍ନ ସବୁକିଛି ବୁଡ଼ିଗଲା ସେଇ ଅକାତ ପାଣିରେ । ଯେଉଁ କେତେଜଣ ଜୀଇଁଗଲେ, ପୋକମାଛି ପରି ବଞ୍ଚିଲେ, ସେଇ ପାହାଡ଼ର ଉପରମୁଣ୍ଡରେ ସେମାନଙ୍କ ଭିତରେ କୁସୁନି ତା' ପେଟ ଛୁଆଟିକୁ ନେଇ ବଞ୍ଚିଲା । ମଥାରେ ମାଟି ବହିବାକୁ ବି ଶକ୍ତି ନଥିଲା ତା'ର । ନିତିଦିନିଆ ତେଲ ଲୁଣ ଛୋଟିଏ ସଂସାରଟି ତାର ଉଚ୍ଛନ୍ନ ହୋଇଯିବା ପରେ ତା' ଭିତରେ ପ୍ରବଳ ଭାବରେ ଆକାଙ୍କ୍ଷା ଜାଗିଉଠିଥିଲା ସବୁ କିଛି ପୁଣି ଫେରିପାଇବା ପାଇଁ । ସେ ବା'ଠାରୁ ଶୁଣିଥିଲା ମାଉଳୀ ଠାକୁରାଣୀ କାହାରି ମାନସିକ ଅପୂରଣ କରେନା । ଏବେ ବି ତା'ର ମନେଅଛି ବାରହାଟିଏ ବଳି ଦେଇଥିଲା ସେ କିସନିଆର କନିଆ ହେବାପରେ । ତା'ପାଖରେ ଅଛି କ'ଣ, ମା' ତା'ର ହଜିଲା ସ୍ୱାମୀକୁ ଫେରାଇ ଦେବ, ଭାଙ୍ଗିଲା ଘର ଗଢ଼ିଦେବ ? ଆଖି ଆଗରେ ତା'ର ନାଲିମାଟିଘର, କ୍ଷେତ, ବାଡ଼ି, ଗାଈ, କଖାରୁଡ଼ଙ୍କ ଆଉ କୁନିକୁନି ଲଙ୍କା ଭର୍ତ୍ତି ଗଛଗୁଡ଼ା ନାଚିଉଠିଲା । କୌଣସି ପାପୀ ସାହେବ ଯେ ସେମାନଙ୍କୁ ଏପରି ହଇରାଣ କରୁଛି ଏଥିରେ ତା'ର ସନ୍ଦେହ ନଥିଲା । ମନର କେଉଁ କୋଣରେ ଦିକ୍‌ଦିକ୍ ଜଳିଉଠିଲା ବିଶ୍ୱାସର ଦୀପଶିଖାଟିଏ । ସେଇ ମିଞ୍ଜିମିଞ୍ଜି ଆଲୁଅରେ ସେ ଚାହିଁଲା ତା'ର କଅଁଳା ଛୁଆକୁ । ଏ ଛୁଆ ସଇତାନ୍ ନୁହେଁ ତ ? ଆଖି ତା'ର ଦପ୍‌ଦପ୍ କରିଉଠିଲା । ସେ ହାତରେ ଉଠାଇଲା ତା' ଅନ୍ତର ଫଟାଇ ଜନ୍ମିଥିବା ଛୁଆଟିକୁ । ଜଳଭଣ୍ଡାରର ଅତି ପାଖକୁ ଯାଇ ସେ ମଥାରେ ଲଗାଇଲା ତା'ର ଶୋଇଲା ପୁଅକୁ । ବା' କହିଥିଲା ନିଜର ସବୁଠୁ ଭଲପାଉଥିବା ଜିନିଷଟା ଠାକୁରାଣୀକୁ ଦେଲେ ସେ ଖୁସିହୁଏ, ମାନସିକ ପୂରଣ କରେ ।

ମା' ଲୋ.... ବାବୁର ବୁଆକେ ତୁଇ ଫେରାଇ ଆଣ୍ । ପାଣିରେ ଆୱାଜ୍ ହେଲା ଧପାସ୍.......... !



# ଭାଜ୍ୟ, ଭାଜକ, ଭାଗଫଳ, ଭାଗଶେଷ

ସେ ବିଧବା ହୋଇଗଲା, ହଠାତ୍ ! ତା'ର ଲାଲ୍‌ଲାଲ୍ ଚୁଡ଼ି ଭାଙ୍ଗିଦିଆଗଲା ତା' ମଥାର ଲାଲ୍ ସିନ୍ଦୂର ପୋଛିଦିଆଗଲା ତା' ଆଖିର ଧାରଧାର ଲୁହ, ଛାତି ଭିତର କଥା ବାହାରକୁ ଆସିନାହିଁ ତାକୁ ଶ୍ୱଶୁର ଘରୁ ବାହାର କରିଦିଆଗଲା । ବାପଘରେ ଅଶୀତିପର ବୁଢ଼ାବାପା, ଅନ୍ଧୁଣୀ ମା' ବାସ୍ ଆଉ କେହି ନାହିଁ । ଗରୀବ ଘରର ଝିଅ ସେ । ଅସହାୟ ପିତାର ଦାରୁଣ କଷ୍ଟରେ ବନ୍ଧାସାଜି କନିଆଁ ହୋଇ ଯାଇଥିବା ଧୋବେଇ ବରର ହାତ ଧରିବାର ବରଷକ ନ ପୁରୁଣୁ ପୋଡ଼ା କପାଳର ଦ୍ୱାହି ଦେଇ ସେ ପୁଣି ତା'ର ଘରର ସେଇ ଏରୁଣ୍ଡିବନ୍ଧ ଭିତରକୁ ଫେରି ଆସିଲା ।

ଦେହରେ ବୟସର ଫଗୁଣ । ରାସ୍ତାକୁ ନ ବାହାରିଲେ ତିନିପ୍ରାଣୀ ଖାଇବେ କ'ଣ ? ବୁଢ଼ାଟା ଥିଲେ କିଛି ନହେଲେ ତାକୁ ଖୁଆଇ ପିଆଇ ରାଣୀକରି ରଖିଥିଲା । ତା' ବାପା, ମା'ଙ୍କୁ ବଣସାରୁ, କଖାରୁ ବାଇଗଣ ଠାରୁ ଚାଉଳ ଡ଼ାଲି ଯାଏ ପଠାଉଥିଲା । ସେତିକି ସାରାଜୀବନ ଯୋଗେଇବା ପଣ କରି ତ ବାପ ତା'ର ତାକୁ ବୁଢ଼ାକୁ ବିକି ଦେଇଥିଲା । ସେ ନିଜକୁ ଦର୍ପଣରେ ନିରେଖି ଦେଖି ଚିହିଁକି ଉଠୁଥିଲା । କବାଟଜଳାବାଟେ ନିଇତି ଜୁଆନମାନଙ୍କର ଗଲା ଆଇଲା ବାଟକୁ ଚାହିଁଚାହିଁ ଦେହର ତାତିକୁ ଦେହରେ ମାରୁଥିଲା । ଭାବୁଥିଲା ଟିକିଏ ସୁଯୋଗ ମିଳନ୍ତାକି ବୁଢ଼ାକୁ ମାରି ତା' କଲିଜା ଖାଇଯାନ୍ତା ଆଉ ତା'ର ସବୁ-ଉଭା ପୋତା ଧନ ନେଇ ଚମ୍ପଟ୍ ଛୁ ମାରନ୍ତା । ହେଲେ ଗାଁ ବାଲାଙ୍କ ନଜର, ଖୋଦ୍ ତା ସ୍ୱାମୀର ଭେଣ୍ଡିଆ ଭାଇମାନଙ୍କର ନଜରରୁ ବଞ୍ଚେଇ ବୁଢ଼ା ତାକୁ ତାଲା ଦେଇ ଘରେ ରଖୁଥିଲା । ନିଇତି ମାଇ ସଞ୍ଜବେଳେ ବୁଢ଼ା ବିଲରୁ ଫେରି ପହିଲେ ତା' ଦେହରେ ମୁଣ୍ଡରେ ହାତ ମାରୁଥିଲା । ବୁଢ଼ାର ଶିରାଳ ହାତ ଯେତେଯେତେ ତା' ଦେହ ଆଡ଼କୁ ଆଗଉଥିଲା ତା ମନଟା ସେତେସତେ ଘୃଣାରେ ଭରି ଉଠୁଥିଲା । ସେ ତାକୁ ଠେଲିପେଲି ଭାତ ବାଢ଼ିବା ନାଁରେ ଚୂଲିମୁଣ୍ଡକୁ ଚାଲିଯାଉଥିଲା । ହେଲେ ବୁଢ଼ା ପୁଣି ତା' ପଛେପଛେ ସେଠି ହାଜର । ତାକୁ କେତେ ରକମର କଥା କହି ବୁଢ଼ା ତା' ପେଡ଼ିରୁ ଗୋଟେ ଗୋଟେ ଜିନିଷ ବାହାର କରୁଥିଲା । ନାଲି ରିବନ୍,

ସୁନାମାଳି, ରୂପା ବାଜୁବନ୍ଧ, ରୂପାଖଡୁ ଆହୁରି କେତେ କ'ଣ ! ପୁଣି ଭଳି କି ଭଳି ଦରବ ତା' ବାପା ମା'ଙ୍କ ପାଇଁ ପଠାଇବାର ପ୍ରତିଶୃତି । ହେଲେ କେବେହେଲେ ସେ ବୁଢ଼ାକୁ ଭଲ ପାଇପାରିଲା ବୋଲି ଭାବିପାରିଲାନି । ସେ ବୁଢ଼ା ତାକୁ ଜୀବନଠୁ ବଳି ଭଲପାଏ, ତା' ବାପା ମା'ଠୁ ତାକୁ କିଣି ଆଣିଛି ବୋଲି କ୍ରୀତଦାସୀର ଜୀବନଟିଏ ବି ତାକୁ କେବେ ହେଲେ ଦେଇନାହିଁ ବରଂ ସୁନାପଞ୍ଜୁରୀରେ ଦୁଧ ଛେନା ଦେଇ ଶାରୀଟିଏ କରି ରଖିଛି । ହେଲେ ତା' ମନ ମାନେନା । ସେ ମୁକ୍ତଆକାଶର ବିହଙ୍ଗୀଟିଏ ହୋଇ ଉଡ଼ିବାକୁ ଇଚ୍ଛାକରେ ।

କେତେ ବା' ବୟସ ତାକୁ ! ଦେହରେ ମହୁଲି ନିଶାର ଶ୍ରାବଣୀ । ବୁଢ଼ା ତାକୁ ତାଲା ଦେଇ ଚାଲିଯାଏ ।

ସେ ଜଳାବାଟେ ଚାହିଁ ରହିଥାଏ, ଭାବେ ବୁଢ଼ାଟା ମରିଯାଆନ୍ତି କି ?

ତା' ମନ କାହାକୁ ଖୋଜୁଥିଲା ସେ ନିଜେ ବି ଜାଣିନଥିଲା । ଗାଁରେ ଥିଲାବେଳେ ଲୁଚିଲୁଚି ଯେଉଁ ଭିଡ଼ିଓ ଫିଲ୍ମ ଦେଖିଥିଲା ତା' ସାଥିମାନଙ୍କ ସହ, ସେ ବି ସେମିତିଆ ଜୁଆନ ମର୍ଦ୍ଦଟିଏ କଥା ଭାବିପାରିଥାନ୍ତା ହେଲେ ସେଇ ବୟସର ଅପହଞ୍ଚ ଦୂରତାରେ ଥାଇ ସେ ବୁଢ଼ାର କନିଆଁ ସାଜିବାକୁ ବାଧହୋଇଥିଲା । ତା' ଜୀବନ ଭରି ସେ ଦେଖିଛି କେବଳ ଭୋକ ଆଉ ଶୋକର ଲଢ଼େଇ । ତା'ର ଦିନ ମଜୁରିଆ ବାପାକୁ ଓ ମଜୁରିଆ ମା'କୁ । ଦିନଶେଷରେ ଯେତବେଳେ ସେ ସେମାନଙ୍କୁ ଜଗିବସିଥାଏ, ମଦହାଣ୍ଡିଆର ବାସ୍ନାରେ ନିଶାଗ୍ରସ୍ତ ବାପା-ମା' କିନ୍ତୁ ତା' ପାଇଁ ଆଣିଥାନ୍ତି ଢ଼େର୍ ସ୍ୱପ୍ନର କାହାଣୀ । ଦୁଇମୁଠା ଦୁଇଓଳି ଭଲ କରି ଖୁଆଇ ପାରୁନଥିବା ଝିଅ ପାଇଁ ରାଜକୁମାରଟିଏର ଅଯୁତ ଭାବନା ଖୁନ୍ଦି ହୋଇଥିଲା ସେମାନଙ୍କ ମନରୁ ତା' ମନକୁ । ହେଲେ ହଠାତ୍ ଦିନେ ସବୁକିଛି ଓଲଟିପାଲଟି ଯାଏ ।

ତା' ହାତର ବାଡ଼ି ବାଇଗଣ ପୋଡ଼ା, ଶୁଖୁଆ ପୋଡ଼ା ବା' ବଡ଼ିଚୁରାର ବାସ୍ନା ସହ ମହମହ ବାସୁଥିବା ପଖାଳ କଂସାର ସୁଆଦକୁ ଭୁଲିଯାଇ ବାପା ତା'ର ନୋଟ୍‌ର ବାସ୍ନାରେ ନିଶାଗ୍ରସ୍ଥ ହୁଏ । ପାଗଳ ହୋଇଯାଏ । ଗାଁ ମହାଜନ ହରିସାହୁ କଥାରେ ପାଖ ଗାଁରେ ଏଇ ଦନେଇ ବୁଢ଼ାକୁ ବିକ୍ରି କରିଦିଏ । ବାସ୍ ବାପା, ମା'ର ଦୁଃଖ ଶେଷ ହୋଇଯାଏ । ଆଉ.... ତମାମ୍ ଜୀବନର ଶୋକଭର୍ତ୍ତି କାହାଣୀମାନଙ୍କୁ ନିଜକୁ ଶୁଣାଇ ବନ୍ଦିନୀ ହୁଏ ।

ସେ କଳାହାଣ୍ଡିର କଳାକଣ୍ଢେଇ, ଏଠି ବିକ୍ରିବଟା ସାଧାରଣ କଥା । ଗୋରୁହାଟ, ମଣିଷହାଟ ମୂଲଚାଲ ସମାନ ।

ହେଲେ ବୁଢ଼ା ତାକୁ ସେମିତି ଭାବେନା । ମନପ୍ରାଣ ଦେଇ ଭଲପାଏ ବୋଲି ଜାଣେ । ପେଟରୁ ଜନ୍ମକଲା ମା'ଟା କାନ୍ଦିକାନ୍ଦି ଅନ୍ଧୁଣୀ, ପାଗେଳୀ ହୋଇଗଲା । ବାପା ଦିନକୁ ଦିନ ଅଧିକ ପିଉଛି ଏକଥା ସେ କିଛି ହେଲେ ଜାଣିପାରେନା' । ସେ ଜୁଳୁଜୁଳୁ କରି ଜଳାବାଟେ ଚାହିଁ ରହେ । ବୁଢ଼ାକୁ ଭାରିଡ଼ର ଗାଁ ବାଲାଙ୍କର, ସେ ଘର ପାଖଦେଇ ଗଲେ ତା' ଆଡ଼କୁ ନିଘା କାହାର ଥାଏ କି ନଥାଏ ସେ ଜାଣିପାରେନା ଦେଖେ ବୁଢ଼ା ଦିଇଟା ଗୁଣ୍ଡାପିଲା ପୋଶିଛି । ଘଣ୍ଟାଏ ଦୁଇଘଣ୍ଟାରେ ସେମାନେ ଘେରାଏ ଦି ଘେରା ତା' ଘର ଚାରିପଟେ ବୁଲି ଯାଆନ୍ତି । କ'ଣ କରିବ ସେ !

ରାତିକୁ ତା'ର ଭାରିଡ଼ର ।

ଜୁଆନ୍ ହେବା ନିଶାରେ ବୁଢ଼ା କେତେ କଅଣ ଖାଏ, ପିଏ । ଜରାଗ୍ରସ୍ଥ ଦେହରୁ ଜରାବ୍ୟାଧି କାଢ଼ି ଫିଙ୍ଗି ଦେବାକୁ ଅପ୍ରାଣ ଉଦ୍ୟମ କରେ, ତା' ସେଇ ଉଦ୍ୟମରେ କିନ୍ତୁ ସେ ଅତିଷ୍ଠ ହୋଇଯାଏ ତା' ଦେହର ପ୍ରତି ଶିରାପ୍ରଶିରା ବେଦନା, ଯନ୍ତ୍ରଣାରେ ଶିର୍‌ଶିରେଇ ଯାଏ । ନିଇତି ସକାଳ ସଞ୍ଜରେ ସେ ଗାଁ ଠାକୁରାଣୀକୁ ଡ଼ାକେ ଏ ବୁଢ଼ାଟା ମରିଯାଉ । ଦିନେ ସତରେ ବୁଢ଼ା ରୋଗରେ ପଡ଼ି ଦିନ କେଇଟାରେ ଚାଲିଗଲା ଆରିପାରିକୁ ।

ମଲାବେଳକୁ ଭାରି ବିକଳରେ ତା'ର ହାତଦୁଇଟା ଧରି ବୁଢ଼ା କାକୁତିମିନତି କରି କେତେ କ'ଣ କହିବାକୁ ଚେଷ୍ଟା କରିଥିଲା । ତାକୁ ହୁଏତ ଏ ଦୁନିଁଆର ମଣିଷବାଘ ମାନଙ୍କର ହିଂସ୍ରତା ଯେ ତା'ର କ୍ଷୁଧାଠାରୁ ବହୁ ଅଧିକ କ୍ରୁର ବୁଝାଇବାକୁ ଚାହିଁଥିଲା । ପୋକମାଛି ପରି ବଞ୍ଚିରହ ପଛେ, ଏରୁଣ୍ଡି ଟପି ସେପଟକୁ ଯିବୁନି ରାଣ ପକାଇ ବୁଢ଼ା ଆଖିବୁଜି ଦେଇଥିଲା ।

ସେ ଖୁସିରେ ଚହଲି ଉଠିଥିଲା । ସେ ମୁକ୍ତ !

ଆଃ ମୁକ୍ତିର ସ୍ୱାଦ କ'ଣ ସତେ ଏତେ ମିଠା !

ସେ ଆଗକୁ ଭାବି ପାରିନଥିଲା, ଭବିଷ୍ୟତ ରାସ୍ତା ସେ ଜାଣେନା, କେବଳ ଏତିକି ଜାଣିଛି ବୁଢ଼ା ମରିଗଲା, ତା' ପଞ୍ଜୁରୀର ଛିଟିକିଣୀ ଖୋଲିଗଲା ।

ସେ କୌଣସି ସଂପତ୍ତି ପାଇବାର ହକ୍‌ଦାର ନୁହେଁ । ଗାଁରେ ନିଷ୍ପତ୍ତି ହେଲା ବିନା ଲେଖାପଢ଼ାରେ ବୁଢ଼ା ତାକୁ କିଣି ଆଣିଥିଲା, ସେ ତା'ର ସ୍ତ୍ରୀ ନୁହେଁ, ରକ୍ଷିତା ! ବାସ୍ । ବୁଢ଼ାର ଭାଇମାନେ ସବୁ ସଂପତ୍ତି ମାଡ଼ି ବସିଲେ, ସେ ତଡ଼ାଖାଇ ଆସିଲା ବାପ ଘରକୁ । ବାପା, ମା'ର ଅବସ୍ଥା ଦେଖି ତା'ର ସବୁ ରାଗ କ୍ଷଣିକରେ ପାଣି ଫୋଟକା ପରି ମିଳେଇଗଲା, ଏବେ ସେ ବୁଢ଼ାକୁ ମନେମନେ ଖୁବ୍ ଝୁରିଲା । ମା' ବୁଢ଼ାକଥା କହି କେତେ କାନ୍ଦିଲା । ବୁଢ଼ାଟା ସତରେ ଦେବତା ଥିଲା ତା'ର ଶାପଗ୍ରସ୍ତ ଜୀବନ ପାଇଁ । ତାକୁ, ତା'ର ବାପ ମା'କୁ ବଞ୍ଚେଇ ରଖିଥିଲା ।

ଏଥର ସେ ଦାଣ୍ଡକୁ ବାହାରିଲା । ଏବେ ସେ ବୁଢ଼ାକଥା ବୁଝିପାରିଲା । ସେ ଧିରେଧିରେ ଅଭିଜ୍ଞା ହେଲା ତା ଦେହଟା ତା' ପାଇଁ କାଳ ଏକଥା ଜାଣିଲା । ବହୁ ଡେ଼ରିରେ ସେ ମନସ୍ତାପ କଲା ବୁଢ଼ାର ମରିବାପାଇଁ । ହେଲେ ସେ ନିରୂପାୟ ଥିଲା । ତା' ବାପା ତାକୁ ପୁଣି କିଛି ଦିନ ପରେ ଗୋଟେ ମାଛବାଲାକୁ ବିକ୍ରି କରିଦେଲା । ସେ ବିନା ଓଜର ଆପତ୍ତିରେ ବିକ୍ରିହେଲା । ସେ ଦେଖିଛି ତାଙ୍କ ଗାଁର ସବୁ ସାଥି ଏମିତି ବିକ୍ରି ହୋଇଛନ୍ତି । କିଏ ଦାଦନ ଖଟିବାକୁ, କିଏ ଚକରାଣୀ ହେବାକୁ ତ କିଏ ଦେହ ବିକିବାକୁ । ହେଲେ ସିଏ ତ ଖୋଦ୍ ମଥାଏ ସିନ୍ଦୂର, ବାହି, ଚୂଡ଼ି ପିନ୍ଧି ବିହା ହୋଇଯାଉଛି ସେତିକି ତା' ମନରେ ସାନ୍ତ୍ୱନା । ମାଛବାଲାର ଆଗରୁ ମାଇକୀ ଥିଲା । ସେ ତାକୁ ସାନଲି କରି ରଖିଲା । ବଡ଼ଲି, ସାନଲି ଦୁହିଁଙ୍କର ଭାଆରି ଭଲ ପଡ଼ିଲା । ତା' ମାଛବାଲା ସ୍ୱାମୀ ଦୁହିଁଙ୍କ ପାଖୁ ଭାଗବାଣ୍ଟି ଯାଏ । ରାତିରାତି ତା'ର ସୁଖରେ ବିତେ, ଏବେ ବୁଢ଼ା ମରିବାର ଅବଶୋଷ ଆଉ ତା' ମନରେ ନାହିଁ । ବରଂ ବେକର ସୁନାମାଳି, ବାଜୁର ବାଜୁବନ୍ଧ, ହାତର ରୂପାଖଡ଼ୁ ଦେଖି ସେ ଭାବେ ଆଉ କିଛି ବୁଢ଼ାଠୁ ପଟେଇ ଆଣିଥିଲେ ହୋଇଥାନ୍ତା ପରା ! ବଡ଼ଲିର ଝିଅକୁ ସେ ଝିଅ ଭାବେ । ବଡ଼ଲିକୁ ନିଜର ଭଉଣୀ । ସେ ରନ୍ଧାବଢ଼ା କରେ । ବଡ଼ଲିର ଗୋଡ଼ହାତ ଘଷାଘଷି କରେ । ରାତିକୁ ଚାହିଁ ବସିଥାଏ, ତା' ସ୍ୱାମୀ ଆସିଲେ ଦୁହେଁ ବସି ପଖାଳ ଖାଆନ୍ତି । ବଡ଼ଲି କବାଟ ଆଉଜେଇ ଦୁହିଁଙ୍କୁ ଛାଡ଼ି ଆରଘରରକୁ ଚାଲିଗଲା ବେଳେ ତା' ଅନ୍ତର ଦୁହି

ହୋଇଯାଏ ସିନା, ମନଟା ଖୁସିରେ ଉବୁଟୁବୁ ହୋଇଯାଏ । ବୁଢ଼ା ତାକୁ କିଛି ଦେଇନି, ମାଛବାଲା ସ୍ୱର୍ଗସୁଖ । ତା' ଦେହ ମାଛଗନ୍ଧ ବୁଢ଼ାର ଅତରବାସ୍ନାଠୁ ବି ମଧୁର ଲାଗେ । ତା' ଛାତିରେ ମଥା ଘଷୁଘଷୁ ସେ ମୁକୁଳିତ ହୁଏ । ମୁଠାମୁଠା ବଉଳ ଫୁଲର ବାସ୍ନାରେ ବାସ୍ନାୟିତ ହୁଏ ।

ଏତେ ସୁଖ ତା' ଭାଗ୍ୟରେ ଥିଲା ? ହେଲେ କେତେଦିନ କି ?

ମାଛବାଲାର ବେଉସା ଉଜୁଡ଼ି ଯାଉଛି, ତାକୁ ଟଙ୍କା ଦରକାର । ସ୍ୱାମୀର ଆବଶ୍ୟକତା ଆଗରେ ସ୍ତ୍ରୀର ଗହଣାର ମୂଲ୍ୟ କେତେ ? ହସିହସି ବେକରୁ, କାନରୁ, ହାତରୁ, ପାଦରୁ ଖୋଲି ତା'ର ଜୀବନଭରିର ସଂପତ୍ତି, ବୁଢ଼ାର ସନ୍ତକ ସ୍ନେହକୁ ଅକାତରେ ଅଜାଡ଼ି ଦେଲା ସେ ମାଛବାଲାର ଜାଲ ବଞ୍ଚେଇବା ପାଇଁ ।

ଦୂର ସମୁଦ୍ରକୂଳକୁ ଯିବାକୁ ହେବ । ଏଠି ଆଉ ମାଛ ମିଳୁନାହିଁ ।

ଅମାବାସ୍ୟାର ରାତିଟିଏ, ଜୀବନରେ ଜହ୍ନର ସ୍ୱପ୍ନ ଦେଖିବା ତା' ପାଇଁ ମନା । ତାକୁ ଥୋପକରି ବନଶୀ ପକାଇ ବଡ଼ମାଛଟିଏ ପାଇବା ପରେ ମାଛବାଲା ତା' ଜୀବନକୁ ନେଇ ବ୍ୟସ୍ତ ହେବ କିଆଁ ? ତା' ବିଶ୍ୱାସରେ ସଂର୍ପକର ଗଣ୍ଠି ପକାଇ ତାକୁ ଯେ ସେମାନେ ସବୁଦିନ ପାଇଁ ଏଇ ଦୁନିଆ ବଜାରରେ ପୁଣି ବିକ୍ରି ହେବା ପାଇଁ ଛାଡ଼ି ଯାଉଛନ୍ତି ଏକଥା ସେ ବୁଝିପାରିନଥିଲା । ତା' ଘରର ମାଟିକାନ୍ଥ ଭୁଷୁଡ଼ି ପଡ଼ି ନଥିଲା, ହେଲେ ଯେଉଁ ଖିଅରେ ବନ୍ଧା ହୋଇ ଦୁଇ ନୂଆମଣିଷ ଘରଟିଏ ଗଢ଼ିବସନ୍ତି, ସେଇ ଘରଟି ତା'ର ଭାଙ୍ଗି ଖଣ୍ଡଖଣ୍ଡ ହୋଇଯାଇଥିଲା । ତା ଦେହର ସବୁ ମଧୁଶୋଷି ସାରିବା ପରେ ତା' ଭଗ୍ନଡ଼େଣାକୁ ନେଇ କାହାର ଚିନ୍ତା କରିବାର ଅବକାଶ ହିଁ ନଥିଲା । ସେ କେବଳ ଏକ ଦିଗହୀନ ଧୂସର ଆକାଶଟିଏ ହୋଇ ରହିଯାଇଥିଲା । ତା'ର ସଉତୁଣୀ (ବଡ଼ଲି) ତା' ହାତରେ ଛନ୍ଦିଦେଲା ଝିଅର ହାତ । କହିଲା ଆମେ ଯାଉଛୁ ଜାଗା ଦେଖି, ଘର ଠିକ୍ କରି ତୁମ ଦୁହିଁଙ୍କୁ ନେଇଯିବୁ ।

ବାହିଏ ଚୂଡ଼ି, ମଥାଏ ସିନ୍ଦୁରର ସାନ୍ତ୍ୱନା ନେଇ ଫେରନ୍ତା ପଥକୁ ଚାହିଁ ବସିଲା । ଓଳିଏ, ଘଡ଼ିଏ, ଦିନେ, ମାସେ, ବର୍ଷେ....... ।ସମୟ ଗଡ଼ିଚାଲିଛି..... ସେମାନେ କୁମ୍ଭୀପାକ ନର୍କରେ ଘାଣ୍ଟି ହେଲେ କି ନା ସେ ଜାଣିବାକୁ ଇଚ୍ଛା ବି

କରିନି । ତା’ ବୁଢ଼ାବାପର ମୃତ୍ୟୁପରେ ଅନ୍ଧୁଣୀ ମା’ ଓ କିଶୋରୀ ଝିଅକୁ ନେଇ ସଂସାରର ଗୋଳିଆ ପାଣିରେ ସେ ଉବୁଟୁବୁ ହୋଇଛି । ସେ ଏବେ ଦିନରେ ପରଘରେ ବାସନ ମାଜେ, ରାତିରେ କିଛି ଘଡ଼ି ନିଜକୁ ବିକେ ଏଠି ସେଠି । ସେ ଆଉ କାହାରି ଅଧୀନ ନୁହେଁ । ନିଜକୁ ନିଜେ ଅନ୍ୟକୁ ବିକ୍ରି କରିବାର କୌଣସି ମନସ୍ତାପ ତା’ ନିକଟରେ ନାହିଁ । ସ୍ୱାଧୀନତାର ସମସ୍ତ ସୁଆଦକୁ ସେ ଆକଣ୍ଠ ପାନ କରିଛି । ତା’ ଆଖି ସେପଟେ ଲୁହର ସମୁଦ୍ରକୁ ସେ ସତେ ଯେମିତି ଶୁଖେଇ ମରୁବାଲିର ଚର ଉପରେ ଠିଆ ହୋଇଛି ।

ଅତୀତ ବର୍ତ୍ତମାନ ଭବିଷ୍ୟତର ତ୍ରିକୋଣ ଭୂମିରେ ଠିଆହୋଇ ସେ ଜୀବନର ଗଣିତ କଷିଛି । ସେ ଝିଅକୁ ଆଶ୍ରମସ୍କୁଲରେ ପାଠ ପଢ଼ାଉଛି । ସେ ତା’ର ମା’ ଏତିକି ପ୍ରାପ୍ତିରେ ଅନ୍ତର ତା’ର ଭରିଯାଏ । ଯେଉଁ ମଣିଷ ଦୁଇଟା ଅଳିଆଗଦାର ମଇଳା ପରି ଛୁଆଟିକୁ ତା’ କୋଳରେ ଫିଙ୍ଗି ଦେଇଥିଲେ ସେମାନଙ୍କ ବଦାନ୍ୟତାରେ ଖୁବ୍ ଖୁସି ସେ ।

ବେଳ ଅବେଳ ତା’ ମୁଣ୍ଡର ପାଚିଲା ରଙ୍ଗର କେଶଟିଏ ତାକୁ ମନେ ପକାଇଦିଏ ବୁଢ଼ା କଥା । ସତେ କି ବୁଢ଼ାଟା ତାକୁ କେତେ ଭଲ ପାଉଥିଲା ? ସାତତାଳ ପାଣି ତଳେ ସୁନାଫରୁଆରେ ଜୀବନଟି ତା’ର ସାଇତି ରଖିଥିଲା ? ମାଛବାଲା ସେଇ କେତେଦିନ ତାକୁ ଭଲପାଇଥିଲା ? ଘରଟିଏ ମଧୁର ଆଶ୍ୱାସର ସୁଆଦ ଚଖେଇ ଥିଲା ।

ଭଲ ପାଇବାର ସ୍ୱାଦ କେମିତି ?

ଅମାବାସ୍ୟାର ରାତିଟିକୁ କେବେ କ’ଣ ପୂର୍ଣ୍ଣମୀ ଚନ୍ଦ୍ର ଜାଣିପାରିବ ? କେଜାଣି ବିକି ହେଉଥିବା ଦେହଟା ଭିତରେ ମନଟି କଥା କେବେ କେଉଁ ଅଚିହ୍ନା ମୁହଁ ଯଦି କ୍ଷଣଟିଏ ଚିନ୍ତା କରିବ ।



# ଚେନାଏ ଆକାଶ ମୁଠାଏ ପୃଥିବୀ

ଏବଂ ଶେଷରେ ମୁଁ ।

ସମୟ !

ସଂଜ୍ଞାହୀନ !

ଅତୀତ, ବର୍ତ୍ତମାନ ଭବିଷ୍ୟତର ଦୋଦୁଲ୍ୟମାନ ପେଣ୍ଡୁଲମ୍ । ମୁଁ ସ୍ଥିତିହୀନ ଅସ୍ତିତ୍ୱ । ମୋର ସବୁଜ ରହସ୍ୟର ରୋମାଞ୍ଚ ବୁଝିବାକୁ ମୁଁ କେବେ କାହାକୁ ଆହ୍ୱାନ କରିନାହିଁ । ମୁଁ ଶିଥିଳ ସମ୍ପର୍କର ଶୀତଳ ଅନୁଭବଟିଏ ଅବା ବର୍ଷାଝରା ଓଦାମାଟିର ମହମହ ବାସୁଥିବା ମିଠା ବାସ୍ନା, ଜାଣେନା । ତମେ କହୁନ କୁହ ? ମୁଁ କାଇଁକି ବ୍ୟସ୍ତ ହେବି ତମେ ମୋକଥା ଜାଣ ବୋଲି ? କାହିଁକି ଅସ୍ଥିର ହେବି । ମୋ ଜୀବନର ଜୁଆର ଭଟ୍ଟାକୁ ଚନ୍ଦ୍ରସହ ସଂପର୍କିତ ଏକ ବୈଜ୍ଞାନିକ ତଥ୍ୟ ବୋଲି ମନକୁ ନ ବୁଝାଇ ତମେ ମେତେ ନେଇ ଥଣ୍ଡା ଥଣ୍ଡା ନରମ ପ୍ରେମର କବିତା ଲେଖ ବୋଲି କାଇଁକି ବା ଆଶା କରିବି ?

ଅବାକ୍ ହୋଇ ଚାହିଁ ରହିଲି, ଜୁଳୁଜୁଳୁ ଚାହିଁ ରହିଥିବା ହରିଣୀ ଆଖି ଦୁଇକୁ । ମୁଁ କ'ଣ ଆଶା କରିଥିଲି ଯେମିତି କବିତ୍ୱ ଫୁଟାଇ କଥା କହିପାରେ ତା'ର ଉତ୍ତର ମିଳୁ ଠିକ୍ ସେଇମିତି ? ନାଁ ମୁଁ ଆଶା କରିନାହିଁ । ମୁଁ ଜାଣେ ସେ ମୂକ । ଜଗତକୁ ଶକ୍ତି ଦେଇପାରେ ଅଥଚ ନିଜେ ଅସହାୟ, ନିର୍ଭରଶୀଳ, ପ୍ରାର୍ଥନାପ୍ରିୟ, ଶାନ୍ତ, ସମାହିତ, ସ୍ଥିର ।

ମୁଁ ଏକ କ୍ଳୀବ ।

ମୋର ଅଙ୍ଗପ୍ରତ୍ୟେଙ୍ଗରେ ପୌରୁଷତ୍ୱର ଦୀପ୍ତି ଝଲମଲ କରୁଛି । ସୁନ୍ଦର ସୌଷ୍ଠବ, ହେଲେ ମୁଁ ବେକାର୍ । ମୁଁ ଭଲପାଠ ପଢ଼ିଛି, ମୋର କୌଣସି କୋଟାନାହିଁ ତେଣୁ ମୁଁ ଚାକିରୀ ପାଇନାହିଁ, ଚେଷ୍ଟା କରିଛି, ଅସଫଳ ହୋଇଛି । ଋଣ ଆଣି

ବ୍ୟବସାୟ କରିବାକୁ ଚାହିଁ ବି ମୁଁ ପାଇନି, କ୍ଷତିଗ୍ରସ୍ତ ହୋଇଛି । ଲୋକ ବାକି ନେଇଛନ୍ତି, ଶୁଝିନାହାଁନ୍ତି, ମୁଁ ଦେବାଳିଆ ହୋଇଛି । ବ୍ୟାଙ୍କ୍‌ବାଲାଙ୍କୁ ମୁଁ ଲୁଚିଲୁଚି ବୁଲୁଛି । ମୋର କିଛି ସ୍ଥିତିନାହିଁ । ମୋ ବଡ଼ଭାଇ ତାଙ୍କ ଶ୍ୱଶୁର ଘରେ ଘରଜୋଇଁଆ । ମୁଁ ତାଙ୍କ ସହ ଯୌତୁକ ଆସିଥିଲି । ପୂର୍ବରୁ ବୁଝିପାରୁନଥିଲି, ଏବେ ବୁଝିପାରୁଛି । ମୁଁ ସେଠି ଏକ ପୋଷା କୁକୁର । ତେଣୁ ମୁଁ ଦିନଦିନ ବାହାରେ ବୁଲେ । ହାତରେ ଧରିଥିବା ମାଟ୍ରିକ୍‌ରୁ ଏମ୍ କମ୍ ସାର୍ଟିଫିକେଟ୍ ଗୁଡ଼ିକ କେବଳ ମାତ୍ର ରଦ୍ଦିକାଗଜ ପରି ମନେ ହୁଏ । କିଏ ମୋତେ କେତେଦିନ ଖାଇବାକୁ ଦେବ, କାଇଁକି ଦେବ ? ତେଣୁ ବାଧରେ ସେ ଘରକୁ ମୋତେ ଯିବାକୁ ହୁଏ । ଭାଉଜଙ୍କର ଲୁଗାପଟା ଆଇରନ୍, ପିଲାମାନଙ୍କୁ ସ୍କୁଲ ନେବା ଆଣିବା, ସଉଦାପତ୍ର, ପରିବା ଆଣିବା ତ ସହଜକଥା । ମାତ୍ର ଯେତେବେଳେ ଭାଉଜ ବେମାରି ବାହାନା କରନ୍ତି ରାନ୍ଧିବାକୁ ହୁଏ, ସେତେବେଳେ ମୋ ଆଖିରୁ ଝରଝର ଲୁହ ଝରିଯାଏ । ଦିନ ଆଠରୁ ସଜ ହୋଇ ବସନ୍ତି ଭାଉଜ । ଦିନ ସାଢ଼େ ନଅରେ ଗାଡ଼ି ସାଏଁ କରି ଚାଲାଇଯାଆନ୍ତି ଅଫିସ୍ । ତାଙ୍କର ବେଳ ନାହିଁ । ମୋ ଭାଇଙ୍କର ଦୋକାନରେ ପିଲା ରହିବାର ଆବଶ୍ୟକତା ନାହିଁ ବୋଲି ଭାଉଜ କହନ୍ତି । ନହେଲେ ମୁଁ ବିକ୍ରିବଟାରେ ସାହାଯ୍ୟ କରନ୍ତି । ଭଳି କି ଭଳି ପୋଷାକ, ଲୁଗା ଗହଣାରେ ଛାଇ ହୋଇ ମୋ ଭାଉଜ ଚାଲିଗଲା ବେଳେ ଆମେ ଦୁଇଭାଇ କେବଳ ନୀରବରେ ଚାହିଁରହୁ । ସେ ମୋତେ ପୋଷା ମାନିଥିବା କୁକୁର ପରି ଗେହ୍ଲା କରନ୍ତି । କୁକୁର ବେକରେ ରୁମ୍ ଛିଡ଼ିଯାଇ ଚେନ୍‌ର ଚିହ୍ନ ହୋଇଥିବା ପରି ସେ ଚିହ୍ନ ମୋ ଆତ୍ମାରେ ରହିଛି ।

ମୋ ପାଇଁ ସ୍ୱପ୍ନର ସବୁଜ କୋଣାର୍କ ଗଢ଼ିବା ମନା । ମୁଁ କ୍ଲୀବ ହେବା ସ୍ୱାଭାବିକ । ସ୍ୱାଭୀମାନୀ ମନଟିଏ ମୋ ଦେହରେ ରହିବା ଠିକ୍ ନୁହେଁ ।

ଶଗଡ଼େ ଲୁଗା ବତୁରା ହୋଇଛି, ଭାଉଜ ଟ୍ରେନିଂରେ ଯାଇଥିଲେ, କାଚିବାକୁ ଯାଉଛି । କେତେଦିନ ହେଲା ଘରେ ପାଟି ଲାଗିଛି, ମୋ ପ୍ରେମିକା ଶ୍ୟାମଳୀକୁ ନେଇ । ମୋ ପାଇଁ କାଳେ ପ୍ରେମ କରିବା ମନା । କାଇଁକି ନାଁ ମୋର କିଛି

ସଂରକ୍ଷଣ କୋଟା ନାହିଁ । ମୋର ପ୍ରଥମ ଶ୍ରେଣୀରେ ପାଶ କରିବା ଆଜି ଇତିହାସ ନୁହେଁ, ସମସ୍ତେ କରୁଛନ୍ତି । ମୁଁ ତେଣୁ କେବେ ବି କୌଣସି ଚାକିରୀ କରିପାରିବିନାହିଁ । ମୁଁ କାହାକୁ ଠକି ପାରେନାଁ । ବ୍ୟବସାୟୀ ହେବ ଅସମ୍ଭବ । ତେଣୁ ଶ୍ୟାମଳୀକୁ ବିବାହ କରିବାର ଯୋଗ୍ୟତା ମୋର ପୌରୁଷତ୍ୱ ନୁହେଁ । ମୁଁ ତାକୁ ପୋଷିବାର କ୍ଷମତା ରଖିନାହିଁ । ତେଣୁ ଭାଉଜଙ୍କ କାକାଝିଅ ଭଉଣୀକୁ ବାହାହୋଇ ତାଙ୍କ ଘରକୁ ଯାଇ ରହିବି ଘର ଜୋଇଁଆ ହେବିବୋଲି ଭାଉଜ କହୁଛନ୍ତି, ଭାଇଙ୍କର ମଉନରେ ସମ୍ମତି ପ୍ରଦାନ ବ୍ୟତୀତ ଉପାୟ କିଛି ନାହିଁ ।

ଶ୍ୟାମଳୀ ଗରୀବ ଘରର ଝିଅ । ମୋ ସହ ପଢୁଥିଲା । ଛୋଟ ଚାକିରୀଟେ କରିଛି । ବର୍ତ୍ତମାନ ସୁଦ୍ଧା ତା'ର ଦୁଇ ସାନ ଭାଇ ଭଉଣୀ ମଣିଷ ହୋଇନାହାଁନ୍ତି । ତାଙ୍କ ଘରର ସ୍ଥିତି ବେଶୀ ଭଲ ନୁହେଁ । ଯୌତୁକ ଦେଇ ବିବାହ କରିବାର କ୍ଷମତା ତାଙ୍କ ଘରର ନାହିଁ । ତେଣୁ ସେ ମୋ ପାଇଁ ଆଦୌ ସୁଇଟେବଲ୍ ନୁହେଁ । ବରଂ ତା' ଘରର ନାନା ସମସ୍ୟାକୁ ମୋତେ ହିଁ ବୁଝିବାକୁ ପଡ଼ିବ । ଯେପରି ଭାଇ ତାଙ୍କ ଶ୍ୱଶୁର ଘରର ସବୁକାମ କରୁଛନ୍ତି । ମୋର ଏତେ ସୁନ୍ଦର ଚେହେରା ଥାଇ ଲାଭ କ'ଣ । ପାଠଶାଠ ଯାହା ଦିଅକ୍ଷର ତ ପଢ଼ିଛି ଯଦି ଚେହେରା ଦେଖାଇ ଧନୀ ଝିଅଟିଏ ପଟେଇ ନପାରିଲି ତେବେ ମୁଁ କ୍ଲୀବ ନୁହେଁତ ଆଉ କ'ଣ ? ଏ ସବୁକଥା ଭାଇଙ୍କ ମୁହଁରେ ଭାଉଜ କହିଛନ୍ତି ।

ଝିଅର ଯୌତୁକ ତା'ର ସାର୍ମଥ୍ୟ । ପୁଅର ଚାକିରୀ ତା'ର ପୌରୁଷତ୍ୱ ।

ହେଲେ ମୁଁ କରିବି କ'ଣ ? ମୋତେ ତମକୁ ଭଲ ଲାଗୁଛି, କାହିଁକି ନାଁ ତମେ ବି ଠିକ୍ ମୋ ପରି । ହାତ ନାହିଁ, ଗୋଡ଼ ନାହିଁ । ବସିରହିଛ, ଖୁଆଇଦେଲେ ଖାଉଛ । ଶୁଆଇଦେଲେ ଶୋଉଛ । ଦୁନିଆ ତମକୁ କହୁଛି ଜଗତର ନାଥ । ତମକୁ ସାହାଯ୍ୟ ପାଇଁ ଆକୁଳରେ ମୁଁ ଡ଼ାକିପାରୁନି । କାରଣ ମୋତେ ଲାଗୁଛି ତମର ଦୟାରେ ମଣିଷ ନୁହେଁ ମଣିଷର କରୁଣା ଉପରେ ତମର ଅସ୍ଥିତ୍ୱ ନିର୍ଭର କରୁଛି । ମୋ ମା' ତୁମ ପାଇଁ ତୁଳସୀ ଦୟଣାର ଜଙ୍ଗଲ କରିଥିଲା । ତୁମପାଇଁ ନିତିନିତି ମଲ୍ଲୀମାଳ ଗୁନ୍ଥି, ବାପାଙ୍କ ହାତରେ ପଠାଉଥିଲା । ମୋ ବାପା ତୁମ

ମନ୍ଦିରର ପୂଜାରୀ ଥିଲେ । ମୋ ମା' ନିଜକୁ ଦେବଦାସୀ ଭାବୁଥିଲା । ତମରି ପ୍ରେମରେ ବାୟାଣୀ ହେଉଥିଲା । ହେଲେ ତମେ କ'ଣ କଲ ?

ତମେ କେତେ ଅସହାୟ । ସେଦିନ ତମରି ଦେହରୁ ଗହଣା ଲୁଟି ନେଉଥିବା ଚୋରଦଳଙ୍କଠାରୁ ତମରି ଜିନିଷ ବଞ୍ଚେଇବା ପାଇଁ ମୋ ବାପାଙ୍କର ଜୀବନ ଚାଲିଗଲାବେଳେ ରାତିରେ କ'ଣ ପତାହୀନ ଆଖିରୁ ଦି ଠୋପା ଲୁହ ଗଡ଼ି ପଡ଼ିନଥିଲା ?

ସେଦିନ କାହିଁକି ସେମିତି ଦାରୁଭୂତ ମୁରାରୀ ହୋଇ ବସିରହିଲ । ତମେ କାଳେ ଖମ୍ବରୁ ବାହାରି ନୃସିଂହ ଅବତାର ହୋଇ ହିରଣ୍ୟକଶ୍ୟପକୁ ମାରି ପ୍ରହ୍ଲାଦ ଡ଼ାକର ଜବାବ ଦେଇଥିଲ । ତା ହେଲେ ସେଦିନ "ଦେବଦାସୀ ମୁଁ ବିଧବା ହେବିନାହିଁ"- ବୋଲି ଆକୁଳରେ ଚିତ୍କାର କରୁଥିବା ମୋ ମା'ର ଚୂଡ଼ି, ସିନ୍ଦୁରକୁ ଯେତବେଳେ ଜବରଦସ୍ତ ତା'ଠାରୁ ଛଡ଼େଇ ନିଆଯାଉଥିଲା, ସେତେବେଳେ କେଉଁଠି ଥିଲ ? କାଇଁକି କିଛି ଜବାବ ଦେଲନି । କହୁନ କୁହ !

ଏବେ ବି ବର୍ଷବର୍ଷ ଧରି ତୁମରି ଦୁଆରେ ପଡ଼ିରହିଛି ମୋ ମା' । ଆକୁଳ ବିକଳରେ ତମକୁ ମୀନତି କରୁଛି । ଫେରାଇଦିଅ, ତା'ର ଚୁଡ଼ି, ସିନ୍ଦୂର । ସେ ତମକୁ ଭଲପାଏ । ବାପା ଫେରି ଆସିଲେ ସେ ସଧବା ହୋଇଯିବ । ସେ ତୁମପାଇଁ ସୁନ୍ଦୁର ପିନ୍ଧିପାରିବ । ଲୋକେ କହନ୍ତି ସେ ବାୟାଣୀ ।

ସେଇ ମନ୍ଦିରରେ ମୋ ଭାଇ ପୂଜା କରୁକରୁ ଭାଉଜଙ୍କୁ ବାହାହେଲେ । ମୁଁ ତାଙ୍କର ଯୌତୁକ ହୋଇ ଏଠିକୁ ଆସିଲି । ସ୍କୁଲରେ ପାଠ ପଢୁଥିଲି । ଦିନସାରା କାମ କରି ରାତିରେ ପଢ଼ିପଢ଼ି ଏତିକି ରାସ୍ତା ଆସିବା ପରେ ଆଜି ଏଇ ଦୋଛକିରେ ପହଞ୍ଚି ଭାବୁଛି ଅତୀତର ରାସ୍ତାକୁ ଫେରି ତମରି ପରି ଏକ ଅସହାୟକୁ ପୂଜା ପରି ପେଟ ପୋଷିବି ନା' ଭବିଷ୍ୟତକୁ ଭାବିଭାବି ଭାଉଜଙ୍କ କଥାରେ ରାଜି ହୋଇଯିବି । ମୋର ନିର୍ଭର ପ୍ରତିଶୃତି କିଏ ?

ମୋର କ'ଣ ଇଚ୍ଛା ହୁଏନି ମୋର ମା'ର ପଣତକାନିରେ ଶୋଇ ଟିକେ ମାତୃତ୍ୱର ସ୍ୱାଦ ଚାଖିବି । ମୋର କ'ଣ ଇଚ୍ଛା ହୁଏନା' ସେଇ ମା'ର ଓଠରେ

ଚେନାଏ ହସର ନିର୍ମଳ ଧାରାଟିଏ ଦେଖି ଜୀବନ ଧନ୍ୟ କରିବି । ମୋ ଭାଇଙ୍କର କ'ଣ ଇଛା ନଥିଲା ମା'କୁ ଡାକ୍ତର ଦେଖାଇ ଭଲକରି ଘରେ ରଖିବାକୁ ? ଏବେ ବି କ'ଣ ଲୁଚିଲୁଚି ଭାଇ ଦୂରଗାଁର ସେଇ ମନ୍ଦିରକୁ ବେଳ ଅବେଳରେ ଏଇ କଂକ୍ରିଟ୍ ସହରର ସିମେଣ୍ଟ ଲୁହାର ମଣିଷମାନଙ୍କୁ ଛାଡ଼ି ଦଉଡ଼ି ଯାଆନ୍ତିନି ମୋ ମା' ପାଖକୁ ? ହେଲେ ତାଙ୍କ ପାଇଁ ସବୁ ମନା । ମୋ ପାଇଁ ବି ସବୁ ମନା । ମୋ ମା' ସାଇକିଆଟ୍ରିକ୍ ପେସେଣ୍ଟ, ପିଲାମାନଙ୍କ ଉପରେ ଖରାପ ପ୍ରଭାବ ପଡ଼ିବ । ତେଣୁ ସମ୍ଭବ ନୁହେଁ । ଆଦୌ ନୁହେଁ । ମୋ ଭାଉଜ କହନ୍ତି ମୋ ଭାଉଜଙ୍କ ସଂପତ୍ତି, ତାଙ୍କର ଚାକିରୀରେ ଆମେ ଚଳୁ । ମୋ ଭାଇଙ୍କର ଦୋକାନ ତାଙ୍କରି ମାୟାରେ ଚାଲୁଛି । ତେଣୁ ଆମର ଅସ୍ତିତ୍ୱ କାହିଁ ?

ରାଧା ପାଇଁ ଗୋପଦାଣ୍ଡ, ଯମୁନା ମନା ଥିଲା । ମୋ ମା' ପାଇଁ ସଂସାର, ସଂସାରର ମାୟା ମନା । ମୋ ପାଇଁ ଶ୍ୟାମଳୀକୁ ପ୍ରେମ କରିବା ମନା । ଶ୍ୟାମଳୀ ମୋତେ ବହୁତ କଥା କହିଥିଲା, କାନ୍ଦିଥିଲା, ଅଭିମାନ କରିଥିଲା । ସେ ବାହାହୋଇ ଚାଲିଯାଇଥିଲା ଦୂର କେଉଁ ଜାଗାକୁ । ଚାକିରୀ ଛାଡ଼ି, ଘରଦ୍ୱାର, ବାପା, ମା' ଛାଡ଼ି । ସେ କାଳେ ଦୁଇଟିଛୁଆଙ୍କ ମା' । ମୋ ପାଇଁ ତାକୁ ଏବେ ପ୍ରେମ କରିବା ପରକୀୟାପ୍ରୀତି ହୋଇଯିବାପରେ ତା କଥା ଭାବିବା ମନା ।

ମୁଁ ଯେଉଁ ଘରେ ରହୁଛି ତାକୁ ଗୋଟିଏ କାକ୍‌ଟସ୍‌ର ଘର କହେ । ମୋର ପିଲାଦିନର ସେଇ ଝାପ୍‌ସା ଅତୀତକୁ ଦେଖେ ଗୋଟିଏ ପରିଷ୍କାର ମାଟିଲିପା ଘର । କାନ୍ଥରେ ଧଳା, ନାଲି ଝୋଟି । ଧାନଛିଞ୍ଚା ଝୋଟି ଉପରେ ଆଙ୍ଗୁଠିରେ ଆଙ୍ଗୁଠି ପରି ଚିହ୍ନର ସୁନ୍ଦର ଚିତ୍ର, ଲକ୍ଷ୍ମୀଙ୍କର କୁନିକୁନି ଆଲୁଲୁ ପାଦ । ନୁଆଁଣିଆ ଚାଳଘର । ଦାଣ୍ଡରୁ ବାଡ଼ିଯାକ ପନିପରିବା, ଫୁଲ ଫଳ ପୁଣି ତୁଳସୀ ଓ ଦୟଣାର ଘଞ୍ଚଜଙ୍ଗଲ ଭିତରେ ମଲ୍ଲୀ, ଜୁଇ, ଯାଇର ଅପୂର୍ବ ବାସ୍ନା । ମୋ ମା' ନିଇତି ସୂର୍ଯ୍ୟ ନ ଉଠୁଣୁ ଉଠେ । ଦାଣ୍ଡ ଦୁଆରେ ଗୋବର ପାଣିର ପବିତ୍ର ସିଞ୍ଚନ କରେ, ମୂରୁଜ ପକାଏ । ଗାଧୋଇପାଧୋଇ ଧଳା ନାଲିର ଲୁଗାକୁ ମଥାରେ ବଡ଼ସିନ୍ଦୁର ଟୋପାମାରେ । ମୁଠାଏ ଲାଲ୍ ଚୁଡି, ମଥାଏ ସିନ୍ଦୁରରେ ମୋ ମା' ଲକ୍ଷ୍ମୀ ମୂର୍ତ୍ତି ପରି ଲାଗେ । ନଇତି

ମୋ ବାପାଙ୍କୁ ପ୍ରଣାମ କରି ମନ୍ଦିରର ଠାକୁରଙ୍କ ପାଇଁ ତା ହାତ ତିଆରି ଖଜା, ଗଜା ପୁଣି କେତେ କ'ଣ ଭୋଗ, ଫୁଲମାଳ ପଠାଏ । ଆମ କଥା ବୁଝିସାରି ନିଜେ ତୁଳସୀ, ଦୟଣାମାଳ ନେଇ ମନ୍ଦିର ଯାଏ । ଆଃ......... କି ପବିତ୍ର ସେ ସବୁ ସ୍ମୃତି । ଏବେ ବି ମଧୁର ବାସ୍ନାରେ ଜୀବନରେ ମହକ ଭରିଯାଏ । କେତେବେଳେ ମୋ ମା' ଶୁଏ ମୁଁ ଦେଖିନାହିଁ । ରାତିରେ ସଭିଏଁ ଶୋଇଗଲେ ସେ ଗାଧୋଇ ଠାକୁରଙ୍କ ପାଇଁ ଗୋବର ଲିପା ଚୂଲିରେ ଭୋଗ ତିଆରି କରେ । ପୁଣି ସକାଳେ ଖେଚୁଡ଼ି ରାନ୍ଧି ଠାକୁରଙ୍କୁ ଭୋଗଦିଏ । ମୋ ମା'ର ପାଉଁଜିଶବ୍ଦକୁ କାଳେ ତା' ଠାକୁର ଭାଆରି ଭଲ ପାଆନ୍ତି । ସେଥିପାଇଁ ପାଦର ନାଲି ଅଳତା ପଟାଏକୁ ମୋଟା ପାଉଁଜି କେବେ ବି ମୋ ମା' ପାଦରେ ନଥିବା କେହି ଦେଖିନାହାଁନ୍ତି । ହେଲେ ଏବେ ? ସବୁ ଶୂନ୍ୟ ! ମହାଶୂନ୍ୟ ! ହାତ, ମଥା, ପାଦ, ଦେହ ସବୁ ଶୂନ୍ୟ ।

ମୋ ମା'ର କରୁଣ କ୍ରନ୍ଦନ ରାତିଭରି ଗାଁ ଲୋକ ଶୁଣନ୍ତି । କେହି କେହି ବିକଳ ହୁଅନ୍ତି, ହେଲେ ସାମାଜିକ ନିୟମରେ ବନ୍ଧା ସଭିଁଏ, କାହାର ବା' ଉପାୟ କ'ଣ ? ଭାଇଙ୍କର କୋହ ବିଜଡ଼ିତ କଣ୍ଠରୁ ଏସବୁ କେବେ କେମିତି ଶୁଣେ ମୁଁ । ମୁଁ ବହୁ ବର୍ଷଧରି ମୋ ମା'କୁ ଦେଖିନାହିଁ । ମୋର ସାହସ ହୋଇନି । ଏଇଠି କାକ୍‌ଟସ୍‌ର ଘର । ମୋ ଭାଉଜ ଦିନ ଭଣ୍ଡି କୁଆଡ଼େ ଅଫିସ୍‌ରେ ଭାଆରି ଖଟନ୍ତି । ସଂନ୍ଧ୍ୟାରେ ଫୋନ୍‌ରେ ଗପି, ଟି:ଭି ଦେଖି ହାଲିଆ ହୁଅନ୍ତି । ସେ ସକାଳେ ଉଠିଲେ ତାଙ୍କୁ ବାନ୍ତି ହୁଏ । ଦିନ ଆଠରେ ଭାଇଙ୍କ ହାତରୁ ବେଡ଼ ଟି ପି ଉଠିବା ବେଳକୁ, ତାଙ୍କ ଛୁଆ ଦୁହେଁ ମୋ ହାତର ଟିଫିନ୍ ଖାଇ, ନେଇ ସ୍କୁଲ୍ ଯାଇସାରିଥାନ୍ତି । ଭାଉଜ ଉଠି କ'ଣ ଟିଫିନ୍ ନେଇକରି ପିଲା ଗଲେ ପଚାରନ୍ତି । ମନ ନ ପାଇଲେ ମନଇଚ୍ଛା ଗାଳି ଦିଅନ୍ତି । ଦୁମ୍‌ଦୁମ୍ କରି ଚାଲିଯାଆନ୍ତି, ଭାଇଙ୍କ ପାଖରେ ମୋ ନାଁରେ ନାନା କଥା ନାଲିସ୍ କରନ୍ତି । ଭେଣ୍ଡିଆଟାକୁ ବସେଇ କେତେ ଦିନ ଖାଇବାକୁ ଦେବେ ଇତ୍ୟାଦି ! ଲୁଗାପଟା ସେମିତି ଗଦାଗଦା ହୋଇ ଉଇହୁଙ୍କା ହୋଇ ରହିଥାଏ, ସଜାଡ଼ିବାକୁ ମୋତେ ବହୁ ସମୟ ଲାଗେ । ଭାଇ ଟଙ୍କା କିଛି

ସହ ବ୍ୟାଗ ପୁଣି ଗୋଟିଗୋଟି ଭାଉଜଙ୍କର ଲିଷ୍ଟ ବଢ଼ାଇଦିଅନ୍ତି । ପାଞ୍ଚ ଟଙ୍କାର ବି ହିସାବ ନିଅନ୍ତି ସନ୍ଧ୍ୟାରେ ଘରକୁ ଆସିଲେ ଭାଉଜ !

ଓଃ ! କି ଯନ୍ତ୍ରଣା । ମୋ ମା'ର ମଧୁର ସ୍ୱରର ପ୍ରାର୍ଥନା ସକାଳେ ସନ୍ଧ୍ୟାରେ ଶୁଭିଯାଏ । ତାକୁଚପେଇ ଛାତି ଭିତରେ ରଖିବାକୁ ହୁଏ, କାନରେ ଭାଇ ଭାଉଜଙ୍କର କର୍କଷକଥାର ବେସୁରା ରାଗିଣୀ ବାଜେ !

ତୋ ଉପରେ ମୋର ପ୍ରବଳ ରାଗ ! ତୁ ଷାଠିଏ ପଉଟି ଭୋଗ ଖାଉ, ଆନନ୍ଦରେ ବେଶଭୂଷା ହୋଇ ବସୁ,ରାତିରେ ଗୀତ ଶୁଣି ଶୁଣି ଶୋଉ । ତୋର କୋଟିପତି ଭକ୍ତ ତୁ କୋଟିପତି ଠାକୁର । ମୋ ପରି ଦରିଦ୍ରର ହୃଦୟତଳର ଏଇ ବିକଳ କାନ୍ଦଣାର ଝର୍ଣା ବହୁଛି ଝର୍‌ଝର୍ ତୁ କାହିଁକି ଶୁଣିବୁ, କେମିତି ଜାଣିବୁ ? ତୁ ସ୍ୱାର୍ଥପର ! ମୁଁ ତୋତେ ଭଲ ପାଏନିଁ, ଜମ୍ମା ଭଲପାଏନି ! ତୋତେ କିଛି ମାଗିବାକୁ ମୁଁ ଇଚ୍ଛା କରେନି । ତୁ କାହାକୁ କ'ଣ ଦେବୁ ତୋର ଦେବଦାସୀ କୁ ତୁ ଥାଉଥାଉ ବିଧବା କରାଗଲା । ତୁ କିଛି କରିପାରିଲୁନି ।

ତୁ ନିର୍ବାକ ଅସହାୟ ! ମୁଠାଏ ଚୁଡ଼ି, ସୁନ୍ଥାଏ ସିନ୍ଦୁର, ପଟାଏ ଅଳତା ମାଗିଥିବା ମୋ ମା' ପ୍ରତି ତୁ କାହିଁକି ଅନ୍ୟାୟ କଲୁ, ସେତିକି ଦେଇପାରିବାର କ୍ଷମତା ତୋର ନାହିଁ, ତୁ ମୋତେ କ'ଣ ଦେବୁ, ଦେଇପାରିବୁ, କହୁନୁ କହ ? ମୁଁ ତୋତେ ବହୁତ ଘୃଣା କରେ, ହେଲେ ତୋ ବିନା ଆଉ କେହି ନାହିଁ ଜାଣେ । ତେଣୁ ତୋତେ ସବୁକଥା କହିବାକୁ ମୁଁ ବାଧ୍ୟ ହୁଏ । ତୁ ମୋ ଛାତି ଭିତରର ଦରଜ । ମନ ଭିତରର ଖଣ୍ଡିଆ । ଆଜି ମୋ ଫଟୋ ପେପରରେ ବାହାରିଛି, କାହିଁକି କହ ତ ! ସେଦିନ ରାତିରେ ଭାଉଜ ମୋତେ ଭୀଷଣ ଗାଳିଦେଲେ । ତାଙ୍କ ଛୁଆର ଜ୍ୱର ଔଷଧକୁ ଠିକ୍ ଟାଇମ୍‌ରେ ଦେଇ ନପାରିବାରୁ, ଜ୍ୱର ବଢ଼ିଯାଇଥିଲା, ସେଇଟା ମୋ ଦୋଷ । ସକାଳେ ପରବା ବ୍ୟାଗ୍, ଟଙ୍କା, ସଉଦାଲିଷ୍ଟ ନେଇ ବାହାରି ମୁଁ ଆଉ ଘରକୁ ଫେରିଲି ନାହିଁ ।

ସକାଳର ସୁନେଲି ସୂର୍ଯ୍ୟକିରଣରେ ପୃଥିବୀ ସଦ୍ୟସ୍ନାତ ମା'ଟିଏ ପରି ଦିଶେ । ମୋ ମା' ସବୁଜଶାଢ଼ୀ ପିନ୍ଧି ସତେ ଯେମିତି ସୂର୍ଯ୍ୟଙ୍କୁ ହିଁ ଲାଲଟିପା କରି

ମୋ ଆଗରେ ଠିଆ ହୋଇଛି । ମୁଁ ଘରଛାଡ଼ି ଏକମୁହା ଦଉଡ଼ି ଦଉଡ଼ି ଯାଉଥିଲି । କେତେବେଳେ କେଉଁମାନେ ମୋତେ କେଉଁଆଡ଼େ ଭିଡ଼ିନେଲେ ମୁଁ ଜାଣେନା ।

ମେଞ୍ଚାମେଞ୍ଚା ପିଲାଙ୍କର ଭିଡ଼, ଭାଷଣବାଜି, ପାଟିତୁଣ୍ଡ, ପୋଲିସ୍ ସହ ଧସ୍ତାଧସ୍ତି, ସଂରକ୍ଷଣ ବିରୋଧୀ ଆନ୍ଦୋଳନ, ମୋ ହାତରେ ପ୍ଳାକାର୍ଡ଼, ଲାଲ୍ ମଶାଲ୍ । ମୁଁ ବି ପାଟି କଲି ଅତି ଯୋର୍‌ରେ ଜୀବନରେ ପ୍ରଥମଥର ପାଇଁ ଚିତ୍କାର କଲି ସମସ୍ତଙ୍କ ବିରୁଦ୍ଧରେ । ସମାଜ, ଘର, ସରକାର, ସମଗ୍ର ପୃଥିବୀର ସବୁ ମଣିଷଙ୍କ ବିରୁଦ୍ଧରେ । ମୁଁ ଗୋଟେ ମଣିଷ, ମୋର ଗୋଟେ ବି ଇଚ୍ଛା ଅଛି । ପଞ୍ଜୀଭୂତ ବେଦନା ମୋର ଉତ୍ତପ୍ତ ଆଗ୍ନେୟଗିରି ଭେଦି ଉଦ୍‌ଗୀରଣ ସୃଷ୍ଟି କଲା । ସଭିଏଁ ସ୍ତବ୍ଧ ହୋଇଗଲେ । ମୁଁ 'ମଣିଷ ବଞ୍ଚାଓ' ଆନ୍ଦୋଳନର ଲିଡ଼ର ହୋଇଗଲି । ଯେଉଁଠି ଯେଉଁ ଆନ୍ଦୋଳନ ହେବ ମୁଁ ପିଲାନେଇ ପହଞ୍ଚିବି ମୋତେ ଟପିକ୍ ଦେବେ ମୁଁ ଭାଷଣ ଦେବି । ସରକାର ବା' ବିରୋଧି ରାଜନୀତି ଦଳର ସେଥିରେ ମୋର ଯାଏ ଆସେ ନାହିଁ । ମୋତେ ମିଳେ ମୁଠାମୁଠା ଟଙ୍କା ।

ମୋ ଭାଗ୍ୟ ବଦଳିଗଲା, ଅଚାନକ । ମୋ ସହ ରହୁଛି ଶୀତଲ୍ ଶର୍ମା । ମୋତେ ବିବାହ କରିବାକୁ ତା'ର ଇଚ୍ଛା ନାହିଁ । ଲିଭିଂଟୁଗେଦର । ଯେବେ ବି ଇଚ୍ଛା ହେବ ଆମେ ପରସ୍ପରକୁ ଛାଡ଼ି ପାରିବୁ, କିଛି ବାଧବାଧକତା ନାହିଁ । ସେ ଆଧୁନିକ ମୁଁ ନାସ୍ତିକ । ଆମେ ବିବାହରେ ବିଶ୍ୱାସ କରୁନା ।

ହେଲେ ତୋତେ ମୁଁ ଭୁଲିନାହିଁ, କାଇଁକି ଜାଣେନା । ଏବେ ବି ପ୍ରତିକଥାର ତୁ ମୋର ସାକ୍ଷୀ । ମୁଁ ଏବେ ନାମୀଗୁଣ୍ଡା । ମୋ ପାଖେ ଟଙ୍କାର ପ୍ରାଚୁର୍ଯ୍ୟ । ହଠାତ୍ ଦିନେ ସଜ୍ଞାହୀନ ଶ୍ରାବଣୀକୁ ଭେଟିଲି । ଧର୍ଷିତା ମୁକଝିଅ, ଘରଦ୍ୱାର, ନାଁ ଗାଁ କିଛି ଜାଣେନା । ତା' ନାଁ ମୁଁ ଦେଲି ଶ୍ରାବଣୀ, ଉଦ୍ଧାରି କଲି, ସେବା କଲି, ପାଖରେ ରଖିଲି । ଶୀତଲ ମୋତେ ଛାଡ଼ି ଚାଲିଗଲା, ମୋର ଦୁଃଖ ନାହିଁ । ଶ୍ରାବଣୀ ଦୂର ପାହାଡ଼ ପରି ସୁନ୍ଦର । ସେ ଘରଦ୍ୱାର ସଫାରଖେ, ରନ୍ଧାବଢ଼ା କରେ, ମୋ ବାଟକୁ ଅନେଇ ବସେ । ଆଜି ହଠାତ୍ ଦେଖିଲି ତୁ ଆସି ମୋ ଘରେ ପହଞ୍ଚିଗଲୁଣି ।

ଶ୍ରାବଣୀ ମୋର ଅବିବାହିତା ସ୍ତ୍ରୀ । ତା' ସହ ମୋର କୌଣସି ଦେହଜ ମିଳନ ହୋଇନି । ତା' ଆଖିର ନିରିହତାକୁ ମୁଁ କାହିଁକି ଡ଼ରେ କେଜାଣି ।

ଅସୀମ ବିସ୍ମୟ ମୋ ମନରେ । ମୁଁ କ'ଣ ଶ୍ରାବଣୀକୁ ଭଲପାଏ ? ନାଁ,......ଦୁନିଆଁରେ କାହାରିକୁ ଭଲପାଇବା ଉଚିତ୍ ନୁହେଁ । ଟଙ୍କା ହିଁ ସବୁକିଛି । ଦାରିଦ୍ର୍ୟ ହିଁ ଅଭିଶାପ । ମୁଁ ବନ୍ଧନ ଚାହେଁନା । ଝିଅଟିଏ ସ୍ତ୍ରୀ ହୋଇଗଲେ ଭାଉଜ ପରି ହୋଇଯିବ । ଓଃ ! ମୋର ଶିରାପ୍ରଶିରା ଟିଣ୍‌ଟିଣ୍ କରୁଛି । ମୁଁ ନାରୀଜାତିକୁ ପ୍ରବଳ ଘୃଣା କରିପାରନ୍ତି ମାତ୍ର ମୋର ମା'ର ଝାପ୍‌ସା ଚେହେରା ମୋ ମନ ଭିତରେ ମୋତେ ବାଧା ଦିଏ । ଶ୍ରାବଣୀ ବଡ଼ଟିପା ପିନ୍ଧେ, ଘର ଦ୍ୱାରଂ ପବିତ୍ର ରଖେ, ଶ୍ରାବଣୀ ତୋତେ ଭଲପାଏ !

ମୋ ପାଖରୁ ଶ୍ରାବଣୀ କିଛି ଚାହିଁନି , କିଛି ଟଙ୍କା ଥାକରୁ ନେଇ ଫେରିବାଲାଠୁ ତୋର କାଠର ମୂର୍ତ୍ତିଟିଏ କିଣିଆଣି ରଖିଛି । ମୁଁ ରାଗିଗଲି ପ୍ରବଳ, ଲାଲ୍ ପଡ଼ିଗଲି, ଜୋର୍‌ରେ ପାଟିକଲି । ସ୍ତବ୍ଧ ଶ୍ରାବଣୀର ସୁନ୍ଦର ଦୁଇଆଖିର ଧାରଧାର ଲୁହ । ମଲ୍ଲୀମାଳକୁ ଟିକିଟିକି କରି ତୋ ବେକରୁ କାଢ଼ିଆଣି ଫିଙ୍ଗିଦେବାକୁ ଇଚ୍ଛା ହେଲା । ମାତ୍ର କାଇଁକି ହାତ ଗଲାନି........କାଇଁକି ? ମୁଁ କ'ଣ ତୋତେ ଏବେ ବି.... ଭଲପାଏ ?

କେଜାଣି ! ନିରୁତ୍ତର ନିର୍ବାକ୍ ଶ୍ରାବଣୀ, ଠିକ୍ ତୋରି ପରି । ତା' ହେଲେ କ'ଣ ସେ ତୋର ପ୍ରତିଛବି ବୋଲି, ମୁଁ ତାକୁ............. ?

ମୁଁ ଆଜି କ୍ଲୀବ ନୁହେଁ । ମୁଁ ମା' ପାଖକୁ ଯିବାକୁ ଆଜି ମନସ୍ଥ କରୁଛି । ମୋ ସହ ଶ୍ରାବଣୀ ବି ଗାଡ଼ିରେ ବସିଛି । ସେ ଜାଣେନାଁ ମୁଁ ତାକୁ କୁଆଡ଼େ ନେଉଛି । ମୋ ଭାଷା ସେ ବୁଝେ, ତା ଭାଷା ବୁଝିବାକୁ ମୁଁ ଚେଷ୍ଟା କରିନି ।

ମୋ ଗାଁର ମନ୍ଦିର । ମନ୍ଦିର ଦୁଆରେ ଦେବଦାସୀ, ପାଗେଳୀ, ବାୟାଣୀ ଆଦି ନାନା ଶବ୍ଦର କାହାଣୀ, ମୋ ମା' ! ସାମ୍ନାରେ ତୁ । ତୋତେ ମୁଁ ଜ୍ୱଳନ୍ତ ଦୃଷ୍ଟିରେ ଚାହିଁଛି । ତୁ ହସୁଛୁ ? ହସିପାରୁଛୁ ? କାହିଁକି ମୋର ମନେହେଉଛି ଆଜି

ତୋର ବିରାଟ ଦୁଇଟି ହାତ ମୋତେ ଆବୋରି ବସୁଛି, ଆବୋରି ବସୁଛି ସମଗ୍ର ପୃଥିବୀ । ତୋ ପାଦ ଦୁଇଟି ମୋ ଆଡ଼କୁ ଆଗେଇ ଆସୁଛି । ସତେ କ'ଣ ତୁ ଝୁଲିଝୁଲି ଆସୁଛୁ ? ତୋର ପହଣ୍ଡିବିଜେ ହେଉଛି, ନାଁ ମୋ ଆଖିର ବିସ୍ମୟ !

ଇନ୍ଦ୍ରଜାଲ ନାଁ ଯାଦୁ ?

ଆ.... ଆ.... ଆରେ ମଧୁର ସ୍ୱରରେ ତୁ ମୋତେ ଡ଼ାକୁଛୁ ? କରୁଣ ବେଦନା ବିଜଡ଼ିତ କଣ୍ଠରେ ତୁ କ'ଣ ମୋତେ ଡ଼ାକୁଛୁ ? ତୋତେ ମୁଁ ଗାଳିଦେଇଛି, ଅଭିମାନ କରିଛି, ଘୃଣା କରିଛି । ମୋର ପ୍ରତ୍ୟେକ ଅବସ୍ଥା ପାଇଁ ତୋତେ ଦାୟୀ କରିଛି । ଅଥଚ ତୁ.... ତୁ ମୋତେ ଭଲପାଉଛୁ । ଏବେ ବି ତୋ ଦେହରେ ମୋ ମା'ର ହାତଗୁନ୍ଥା ମଲ୍ଲୀର ଗଜରା, ଏବେ ତୋ ଦେହରେ ମୋ ବାପାଙ୍କର ଚନ୍ଦନ ତିଳକ, ଏବେବି ତୋର ମହମହ ବାସୁଥିବା ସେଇ ଦୟଣା, ତୁଳସୀର ବାସ୍ନା ।

ତୁ ଓହ୍ଲେଇ ଆସୁଛୁ, ତୋ ରତ୍ନସିଂହାସନ ଛାଡ଼ି, ଆଗରେ ରୁଣ୍ଡ ହୋଇଛନ୍ତି ଜନସମୁଦ୍ର । ତୁ ପାହୁଣ୍ଡ ପାହୁଣ୍ଡ ଆଗେଇ ଆସୁଛୁ । ପିତ୍ତଳଥାଳିରେ ତୋର ଥାଳି ଭର୍ତ୍ତିସିନ୍ଦୁର । ତୁ କାହାରିକୁ ନିଘା କରୁନୁ, ସତେ ଯେମିତି ଅୟୁତବର୍ଷର ଚିରସନ୍ଧାନୀ ଆଖି ତୋର ସେଇ ଇପ୍‌ସିତ ବସ୍ତୁକୁ ଆଜି ପାଇଯାଇଛି ହାତ ପାହାନ୍ତାରେ । ଏ କ'ଣ କରୁଛୁ ତୁ...... ? ମୋ ବାୟାଣୀ ମା'କୁ ଶୂନ୍ୟରୁ ମହାଶୂନ୍ୟକୁ ଉଠାଇ ନେଇଛୁ । ଘଟାଉଛୁ ଯୁଗାନ୍ତକାରୀ ବୈପ୍ଳବିକ ଘଟଣାଟେ, ମୋ ମା' ମଥାରେ ଢ଼ାଳିଦେଉଛୁ ମଥାଏ ସିନ୍ଦୁର, ମୋ ମା' ହାତରେ ପିନ୍ଧାଉଛୁ ରତ୍ନରଚୁଡ଼ି ।

ଆଃ...... କି ଅପୂର୍ବ ସେ ଦୃଶ୍ୟ ! ମୋ ମା' ବୈଧବ୍ୟରୁ ମୁକ୍ତ ହେଉଛି । ବୁଝିପାରୁନି ଏ ପାର୍ଥିବ ଶରୀରର ଦୁଇଚକ୍ଷୁ ମୋର କ'ଣ ଦେଖୁଛି ?

ଚମତ୍କାର ନାଁ ଇନ୍ଦ୍ରଜାଲ ! ମୋ ପାଖକୁ ଆସିଲୁ, ଆଖିରେ ଇସାରା କଲୁ, ମୁଁ ସମ୍ମୋହିତ ବାଳକଟେ ପରି ତୋ ହାତକୁ ସିନ୍ଦୁର ନେଇ ଶ୍ରାବଣୀକୁ ସିନ୍ଦୁରିତ କଲି । ଆଖି ବୁଜିଲି, ମୋଆଖିର ଧାରଧାର ଲୁହ ତୋ ପାଦକୁ ସିକ୍ତ କଲା ।

ଭୂଇଁରେ ଶୋଇଗଲି, ଧୂଳିରେ ଗଡ଼ିଗଡ଼ି ଆମେ ମା', ବୋହୂ, ପୁଅ କାନ୍ଦିବାକୁ ଲାଗିଲୁ ।

ଆଖି ଖୋଲିଲି ।

ମୋ ମା'ର ମୁଗ୍ଧ ଚେତନା, ବାଙ୍‌ମୟ ସେଇ ମହାଚେତନା ସହ ମହାମିଳନରେ ମୁକ୍ତି ହୋଇସାରିଥିଲା । ଆତ୍ମାପକ୍ଷୀ ତା'ର ସେଇ ମହାଶୂନ୍ୟରେ ତୋ ସହ ମିଳିତ ହୋଇ ମୋକ୍ଷ ଲଭିଥିଲା । କୋଇଲିର ମଧୁର କୁହୁତାନ, ମଧୁର ମଳୟ ମନକୁ ମୋହିନେଉଛି । ଶ୍ରାବଣୀ ହାତରେ ମଲ୍ଲୀ, ଦୟଣା, ତୁଳସୀର ମାଳ । ଲୁହଝରା ଆଖିରେ ସେ ତୋର ନିଇତି ଚରଣ ଧୋଉଛି । ମୁଁ.... ? ? ଚନ୍ଦନ ଚର୍ଚ୍ଚିତ କରି ତୋର ବିରାଟ ମୁହଁଟା ଦେଖି ମୁଗ୍ଧ ହେଉଛି । କି ରହସ୍ୟମୟ ଠାକୁର ତୁ ? ଭାବ କୁ ନିକଟ ଆଉ ଅଭାବୀକୁ ଦୂର ! ସତରେ ତୁ କାଠ କି ପଥର ନୁହେଁ ତୁ ଜୀବନ୍ତ । ତୁ ପ୍ରବଳ ଦ୍ୱୀପର ମୁକ୍ତା ।

ଆଉ ଏ ମଣିଷ ? ମଣିଷ କି ଜାଣେ ଚେନାଚେନା ଆକାଶ ଓ ମୁଠାମୁଠା ପୃଥିବୀକୁ ମୋର ମୋର କହି ସେ ବାନ୍ଧିରଖି ଘର କରିବାକୁ ଚେଷ୍ଟାକରେ, ହେଲେ ସେ କ'ଣ କିଛି ନିଜ ସହ ନେଇ ଯାଇପାରେ ? ମୋହ ମୁଦ୍‌ଗରରେ ବାନ୍ଧିଯାଏ ସେ !

ଅନନ୍ତ ମହାଶୂନ୍ୟରୁ ଆସିବା ବେଳେ ସେ ମଣିଷ ଆଣିଥାଏ ଶୂନ୍ୟତା, ସାଥିରେ ନେଇଯାଏ ଶୂନ୍ୟତା । ଆଉ ସବୁରି ମାନ ଅଭିମାନକୁ ଗଣ୍ଠି ପକାଇ ତୁ ବସିଥାଉ ଚିରିକାଳ !! ତୋର ସେଥିରେ ଯାଏ ଆସେ କେତେ । ତୋତେ କିଏ ବୁଝୁ ନବୁଝୁ । ତୁ ସଭିଙ୍କର ! ତୁ ସବୁରି ଜୀବନକାହାଣୀର ମୁକସାକ୍ଷୀ, ତୁ ଠିକ୍ ମୋ ପ୍ରେୟସୀ ଶ୍ରାବଣୀ ପରି !



# ତୃଷ୍ଣାର ଡ଼ାଏରୀ

ମନର କ୍ଷୁଧା, ଦେହର କ୍ଷୁଧା, ପେଟର କ୍ଷୁଧା ଆଉ ସେମାନଙ୍କର ଜ୍ୱାଳା । ଯେଉଁ ଜ୍ୱାଳା ପାଇଁ ମନୁଷ୍ୟ କରିପାରେନି, ସେଠି ପାପ ଓ ପୁଣ୍ୟର ବିଚାର ଶକ୍ତିଥିଲେବି ସାମର୍ଥ ନଥାଏ, ସାମର୍ଥ୍ୟ ଥିଲେ ବି ଅସହାୟତାର ଅକ୍ଟୋପାସ୍ ତାକୁ ଆବୋରି ବସିଥାଏ ।

ମନ ଏକ ଲୋହିତ ସାଗର !! ସେ ସାଗରର ଜଳର ରଙ୍ଗ ଲାଲ୍, ଏକଦମ୍ ଲାଲ୍, ସୂର୍ଯ୍ୟର ଆଭା ଆଉ 'ବୋଉ'ମାନଙ୍କର ସିନ୍ଦୁରର ରଙ୍ଗବି ସେଠି ଫିକାପଡ଼ିଯିବ ! ରଙ୍ଗମୟ ସେଇ ମନର ଦୁନିଆରେ ମାଲିକାନା ଜାହିର କରେ ଏଇ ମଣିଷ ! କେତେବେଳେ ବିଷାଦ ହୋଇ ଲୋହିତରୁ ଧୂସର ହୁଏ ତ ପୁଣି ପବିତ୍ରତାରେ ଭରିଯାଏ ଶ୍ୱେତ । କିନ୍ତୁ ପ୍ରେମରେ ଯେବେ ସେ ଉବୁଟୁବୁ ହୁଏ ସେତେବେଳେ ତା'ର ଲାଲିମାର ଆଭା ତା' ମନ ରୂପକ ସେଇ ଦର୍ପଣଟାରେ ସ୍ପଷ୍ଟ ଦେଖାଯାଏ । ସମସ୍ତେ ଦେଖନ୍ତି ମଣିଷରୂପୀ ସେଇ ଶରୀରଟାର ମୁହଁଟା କେମିତି ଚକ୍‌ଚକ୍ କରିଉଠିଛି ।

ତା'ର କ'ଣ ଅଧିକାର ଅଛି ସେଇ ନିଶିଦ୍ଧ ଫଳ ସେବନ କରିବାକୁ ? ତା'ର କ'ଣ ଅଧିକାର ଥିଲା ସେ ହୃଦୟ ନାମକ ସିଂହାସନରେ ଆପଣାରେ ଭାବୁଥିବା ଲୋକଟିକୁ ସମ୍ରାଟ କରିବାକୁ ? ତା'ର କ'ଣ ଦେହ, ମନ, ଆତ୍ମା, ବିବେକ, ଇଛା, ଅନିଛା କିଛି ଅଛି, ନା' ନାହିଁ ? ସେ ଚିତ୍କାର କରିଉଠିଲା । ତା'ର କିଛି ଅଧିକାର ନାହିଁ । ସେ ମଣିଷ ନୁହେଁ । ସେ ଏକ କାଠ କଣ୍ଢେଇ । ତାକୁ ନଚେଇବାର ଅଧିକାର ସମଗ୍ର ମଣିଷସମାଜର ଅଛି । ସେଇ ଅଧିକାର ତା'ର ଜନ୍ମପୂର୍ବରୁ ହିଁ ସମସ୍ତଙ୍କୁ ଦିଆସରିଛି, କାରଣ ସେ ଏକ ଧର୍ଷିତା !

ସେ ଏକ ଅସ୍ତିତ୍ୱ । ହେଲେ ତା'ର କିଛି ନାମ ନାହିଁ । ସେ କେତେବେଳେ ତୃଷ୍ଣା ତ କେତେବେଳେ ପୂଜା, କେତେବେଳେ ଅନାମିକା ତ କେତେବେଳେ ପ୍ରୀତିଲଗ୍ନା । ଅସଂଖ୍ୟ ନାମଥିବା ଏକ ନାମହୀନା ନାୟିକା ସେ ।

ଟ୍ରେନ୍‌ର ଗତିସହ ଆଗେଇ ଚାଲିଛି । ଲାଇନ ପାଖ ରାସ୍ତା କଡ଼ ବିଲ, ବଣ, ଗାଁ ଗଣ୍ଡା । ଦିନ ସରି ରାତି ଆସିଯାଉଛି । ଆକାଶର ଜହ୍ନ ବି ଆଗେଇ ଚାଲିଛି ରେଳଗାଡ଼ି ସହ । ସତେ ଯେମିତି ସେଇ ଗୋଟିଏ ଗନ୍ତବ୍ୟସ୍ଥାନକୁ ସେ ବି ଯିବାକୁ ଚାହୁଁଛି । ସେ ଆଖି ଠାରିଲା ଜହ୍ନକୁ କହୁଛି ଅସଂଖ୍ୟଦାଗ ? ତୁ ବି କ'ଣ ମୋ ପରି ? ନା' ନା' ତୁ ମୋ ପରି ନଷ୍ଟନୀଡ଼ର ବିହଙ୍ଗୀ ନୁହଁ ? ତୁତ ଏ ଜଗତକୁ ଅନ୍ଧାରରେ ରାସ୍ତା ଦେଖାଉଛୁ, ତୁ କିପରି ମୋ ପରି ହୋଇପାରିବୁ ? କାହିଁକି ବା ହେବୁ ? ତୋର କ'ଣ କେହି ସାଥି ନାହିଁ ? ମା' ବାପା ନାହାଁନ୍ତି ? ଭାଇଭଉଣୀ ନାହାନ୍ତି ? ଜହ୍ନ କି ଉତ୍ତର ଦେଇପାରେ ? ସେ ଖାଲି ଜ୍ୟୋସ୍ନା ଢ଼ାଳିପାରେ । ଆଉ ସେ ଜ୍ୟୋସ୍ନାବିଧୌତ ରଜନୀରେ ଦୂର ଗାଁମୁଣ୍ଡ ବଉଳଗଛମୂଳ ଚାନ୍ଦିନୀ ଯେଉଁଠି ବୁଢ଼ୀଠାକୁରାଣୀଙ୍କର ଛୋଟିଆପଥର ମୂର୍ତ୍ତିଟିଏ ଅଛି, ଆଉ ଅସଂଖ୍ୟ ନାଲିକନା ଓ ସିନ୍ଦୁରରେ କେତେକେତେ ମାନସିକ କାହାଣୀ ବି ସେଇଠି ରହିଛି । ସେଇଠିକୁ ରାତି ଅଧରେ ଚାଲିଯାଇ ଆକାଶକୁ ଚାହିଁଚାହିଁ ରାତି ବିତାଇବାକୁ । ଜହ୍ନ ସହ ଚୁପିଚୁପି କଥା ହୁଅନ୍ତା, ତାରାମାନଙ୍କ ସହ ତାଳି ମାରି ଖେଳନ୍ତା ବୋଲି ମନେକରୁଛି । ମାତ୍ର ତା' କି ହୋଇପାରେ ? ଅସଂଖ୍ୟ ସାଥୀହୀନା ନାୟିକା ସେ । ତା' ପାଇଁ ରାତି ଆସେ ଦିନର ବାର୍ତ୍ତା ନେଇ । ସେଏ ଭଙ୍ଗା ସିଲଟର କାହାଣୀ, ଯାହାକୁ କେହି କେବେ ପଢ଼ିବେନାହିଁ । ଛାଇନିଦ ଭାଙ୍ଗିଗଲା । ଟ୍ରେନ୍ ରହିବାର ଶବ୍ଦ ସହ ଷ୍ଟେସନ ଆସିଯାଇ ଥିବାର ସ୍ପଷ୍ଟ ଗୁଞ୍ଜରଣ । ଚାଇ, ଚାଇ, ପେପର, ଚକ୍‌ଲେଟ୍, ଚପ୍‌ସ୍, ବୁଟ୍‌ପାଲିସ୍ । ମା' ଭିକ ମୁଠେ ଦିଅ, ପଇସାଟିଏ ଦିଅ, ତୁମର ଛୁଆପିଲାଙ୍କର ମଙ୍ଗଳହେବ ମା' । ବୁଢ଼ୀ ମଣିଷଟିଏ ହାତପାତିଛି ପାଖରେ ଥରୁଥିବା ଝିଅଟିଏ ଧରି । ସେ ମନେମନେ ହସିଲା । ମା' ! ସେ କାହାର ମା' ! ସେ ପୁଣି ଭିକାରୁଣୀଟିକୁ ଭିକ ଦେବ ! ସେ ତ ନିଜେ ଏକ ଭିକାରୁଣୀ । ତଥାପି ସେ ତା'ର ପର୍ସ ଭିତରେ ହାତବୁଲାଇ କାଢ଼ି ଆଣିଲା ନୁଆ ଦଶଟଙ୍କିଆ ନୋଟ କେତୋଟି । ପକାଇଦେଲା ବୁଢ଼ୀର ପ୍ରସାରିତ ହାତ ଉପରେ । ବୁଢ଼ୀର ଚକ୍ଷୁ ବିସ୍ଫାରିତ ହୋଇଗଲା । ଏକ ଅବିଶ୍ୱାସନୀୟ ଭାବ ସଞ୍ଚରିଗଲା

ତା'ର ମୁଖମଣ୍ଡଳରେ । ହତବାକ୍ ହୋଇଗଲା ସେ । କୋଟରଗତ ଚକ୍ଷୁରୁ ବହିଗଲା ଟପ୍‌ଟପ୍ ଲୁହ । ସାରାଜୀବନରେ ସେ କେବେ ଭେଟିନାହିଁ ଏପରି ଏକବଦାନ୍ୟ ଦାତାଙ୍କୁ । ଅନାମିକା ମୁହଁ ବୁଲାଇ ନେବା ପୂର୍ବରୁ ଆଉଥରେ ସେଇ ଥରୁଥିବା ଝିଅଟି ଉପରେ ଦୃଷ୍ଟି ପହଁରାଇ ନେଲା, ସତେ ଯେମିତି ତା'ର ଅତୀତ ନାଚିଗଲା ତା ସମ୍ମୁଖରେ ସେ ସେଇ ଝିଅ ସ୍ଥାନରେ ନିଜେ ହୋଇଗଲା ଭିକାରୁଣୀର ଝିଅ ।

ଭିକାରୁଣୀଟି ତାକୁ କିଛି କହିବା ପୂର୍ବରୁ ହିଁ ଟ୍ରେନ୍‌ର ହୁଇସିଲ ଶବ୍ଦ ଶୁଣାଗଲା ଆଉ ସେ ଛୋଟଝିଅର ହାତଟାଣି ସେ ଦଉଡ଼ିବାକୁ ଲାଗିଲା । ହୁଏତ ତା' ପାଇଁ ଏବେ ଆଉ କିଛି ଦିନ ପାଇଁ ଭିକମାଗିବାର ଆବଶ୍ୟକତା ନଥିଲା, ସେ ଯିବାପରେ ସେଇ ରାସ୍ତାକୁ ଚାହିଁଲା ଅନାମିକା, କେତେ ଗୁଡ଼ିଏ କୌତୁହଳପୂର୍ଣ୍ଣ ଦୃଷ୍ଟି ଯେ ତା' ଉପରେ ନିବଦ୍ଧ ଅଛି ଏକଥା ସେତେବେଳେ ସେ ବୁଝିପାରିଲା । ତଥାପି ସେ ନିଶ୍ଚୁପ୍ ଥିଲା, ତରଙ୍ଗହୀନ, କ୍ରିୟା ପ୍ରତିକ୍ରିୟାହୀନ ଥିଲା । ସତେ ଯେମିତି ଭିକାରୁଣୀଟିକୁ ଦେବାପରି ଏକ ଅହେତୁକ ଦାନ ଦେବାରେ ସେ ପୂର୍ବରୁ ହିଁ ଅଭ୍ୟସ୍ତ ଥିଲା । ସେ ଏକ ରାଜଦୁଲାଳି ତା'ର ପୋଷାକପତ୍ର, ଚେହେରା ସାଜସଜ୍ଜା ସବୁ ତ ସେପରିଥିଲା । ସମସ୍ତେ ଭାବୁଥିଲେ ଦୁନିଆରେ ଧନରେ ତ ଧନୀ ଅନେକ, ମାତ୍ର ମନରେ ତ ସମସ୍ତେ ନୁହଁନ୍ତି ! ହେଲେ ଏ ଝିଅଟି ? କିଏ ଏଇ ରହସ୍ୟମୟୀ ?

ଗଭୀର ନିଦ୍ରରେ ଆଚ୍ଛନ୍ନ ସମଗ୍ର ଜଗତ । ଷ୍ଟେସନ ହୋଇଗଲା, ତା'ର ଗନ୍ତବ୍ୟସ୍ଥଳ ଆସିଯାଇଛି । ଛୋଟ ଏଇ ହିଲଷ୍ଟେସନ୍ । ଯେଉଁଠି ବେଶୀ ହୋ ହଲ୍ଲା ନାହିଁ । କାଁଭାଁ କେହି କେହି ଓହ୍ଲାଇଲେ । ଟ୍ରେନରୁ ଅନ୍ୟ ଏକ ଡ଼ବାରୁ ମଧ ଓହ୍ଲାଇଲେ ସୁଦର୍ଶନ ଯୁବକ ଜଣେ । ଯିଏ ଯାହାର ଆଗେଇଗଲେ, କେହି କାହାକୁ ନ ଚିହ୍ନିବାପରି ହାତଘଣ୍ଟାରେ ଆଖି ବୁଲାଇଲା ସେ ଭଦ୍ରବ୍ୟକ୍ତି ମଧ । ରାତି ଗୋଟାଏ ବାଜି ଚାଳିଶ୍ ମିନିଟ୍ । ଚତୁର୍ଦ୍ଦଗରେ ଘନଘୋର ଅନ୍ଧାର । ପାହାଡ଼ିଆ ରାସ୍ତାରେ ଆଗେଇ ଚାଲିଲା ହୋଟେଲର ଟାକ୍ସି ।

ପଛସିଟ୍‌ରେ ସେଇ ଅପରିଚିତ ଯୁବକ ଜଣକ । ନୀରବ ସବୁକିଛି । ଏ ସହର ସହରର ଲୋକମାନେ, ଗଛପତ୍ର, ଦୋକାନବଜାର ସମସ୍ତେ ନିଦ୍ରିତ ।

ଅଥଚ ସେ ଜାଣେ ସେ ଶୋଇପାରିବନି । ରାତ୍ରି ଆସେ ତା' ପାଇଁ ଭିନ୍ନ ବାର୍ତ୍ତା ନେଇ ।

ସେ ରାତ୍ରି ନାୟିକା । ଅଭିସାରିକାର ବେଶ, ମନ, ରୂପ ସାଜସଜ୍ଜା ନେଇ ତାକୁ ଆଗେଇଯିବାକୁ ହେବ । ସେ ମତ୍ସ୍ୟକନ୍ୟା । ତା'ର ଅର୍ଦ୍ଧେକ ଶରୀର ମାତ୍ର ମନୁଷ୍ୟର, ବାକି ଅର୍ଦ୍ଧେକ ମାଛର । ନା' ଜଳରେ ବୁଡ଼ି ରହିପାରେ ମାଛମାନଙ୍କ ସହ ସାଥୀ ହୋଇ, ନାଁ ସ୍ଥଳରେ ରହିପାରେ ମଣିଷମାନଙ୍କ ସହ ମଣିଷ ହୋଇ । ଦୁଇ ନାଆରେ ପାଦ ଥାପିଥିବା ମଣିଷଟିଏ ସେ । ସେ ବଞ୍ଚିବାକୁ ଚାହେଁ, ଅଥଚ ବଞ୍ଚିପାରେନା । ସେ ମରିବାକୁ ଚାହେଁ ତା' ବି ପାରେନା ।

ମୁନ୍‌ଲାଇଟ୍ ହୋଟେଲ ଆସିଗଲା । ଦୁହେଁ ଆଗେଇଗଲେ ।

ରୁମ୍ ନଂ ୨୦୪ । ମିଷ୍ଟର ଆଣ୍ଡମିସେସ୍ ଶର୍ମା । ତାଙ୍କ ଦେହରେ ଦାମୀ ସୁଟ୍ । ତା' ଦେହରେ ଦାମୀ ସାଲ୍‌ୱାର । ବିବାହିତର ସମସ୍ତ ଲକ୍ଷଣ ତା' ଦେହରେ । ମଥାଏ ସିନ୍ଦୁର, ହାତେ ଚୁଡ଼ି, ଭ୍ୟାନିଟି ବ୍ୟାଗ୍, ସୁଟ୍‌କେଶ । କାହାରି ସନ୍ଦେହର କୌଣସି ଅବକାଶ ନାହିଁ । ହୋଟେଲର କର୍ମଚାରୀମାନଙ୍କୁ ନିଦ ନଥାଏ, ଅତିଥି ଅଭ୍ୟାଗତଙ୍କର ସମସ୍ତ ଦାୟିତ୍ୱ ସେମାନଙ୍କର । ରାତ୍ରିର ଟ୍ରେନ୍‌ରୁ ଆସୁଥିବା ଦାମୀ ପାସେଞ୍ଜରମାନେ ସହରର ଏଇ ଭଲ ହୋଟେଲ୍‌ଟିକୁ ଖୁବ୍ ପସନ୍ଦ କରନ୍ତି । ଗରମପାଣି, ଗରମ ଚା, କଫି, ଖାଦ୍ୟ, ପାନୀୟ, ସଫା ବେଡ୍, ଲଣ୍ଡ୍ରି କେଉଁ ଜିନିଷର ଅଭାବ ନାହିଁ । ଟଙ୍କା ବିନିମୟରେ ଏଠି ସବୁକିଛି ମିଳିପାରେ । ପ୍ରଥମଥର ପାଇଁ ଏଠାକୁ ଆସିଥିବା ମିଷ୍ଟର ଶର୍ମାଙ୍କ ସହ ଥିଲେ ମିସେସ୍ ଶର୍ମା । ସମସ୍ତେ ତାଙ୍କୁ ଚିହ୍ନନ୍ତି, ଜାଣନ୍ତି । ଅଥଚ ସମସ୍ତେ ଏପରି ଅଭିନୟ କରୁଛନ୍ତି ଯେ ଯେପରି କେହି ତାଙ୍କୁ ଚିହ୍ନନ୍ତି ଜାଣନ୍ତି ନାହିଁ ।

ଓଃ.... ଏକସିଲେଣ୍ଟ ।

ତୁମର ପସନ୍ଦକୁ ତାରିଫ୍ ନ କରି ରହିପାରୁନି ।

ଛୁଟି କଟାଇବାକୁ ବୋଧେ ଯା ଠାରୁ ଅଧିକ ଭଲ ସ୍ଥାନ ମିଳିନଥାନ୍ତା

ସେ କିନ୍ତୁ ଥିଲା ଚୁପ୍ । ରିଆକ୍ସନ ନାହିଁ ତା'ର । ସେ ଜାଣେ, ସବୁ ଜାଣେ ।

କଫି ମଗାଇଲେ ମିଷ୍ଟର ଶର୍ମା । ସେ ଆଶ୍ଚର୍ଯ୍ୟ ହେଲା ମନେମନେ, କିଛି କହିଲା ନାହିଁ ।

ୱାଇନ୍ ବଦଳରେ କଫି ଶବ୍ଦଟି ହୁଏତ ପ୍ରଥମେ ଶୁଣିଲା । ବାଥ୍‌ରୁମ୍ ଆଡ଼କୁ ଆଗେଇ ଯାଉଯାଉ ସେ ଶୁଣିଲା ଆରେ ! ଆପଣ କଫି ପିଇବେନି ନାଁ କ'ଣ ? ଓଃ ନିଦ ଆସୁଥିବ ? ବୋଧହୁଏ ବହୁତ ଟାୟାର୍ଡ଼ ଫିଲ୍ କରୁଥିବେ । ନିଦ ? ଟାୟାର୍ଡ଼ ? ଆଜି କି ଶବ୍ଦ ସବୁ ଶୁଣୁଛି ସେ ! ସେ କାନକୁ ବିଶ୍ୱାସ କରିପାରୁନି । ସେ ମନେପକାଇଲା ଭିକାରୁଣୀଟିର ସେଇ ବିସ୍ଫାରିତ ଚକ୍ଷୁ ଆଉ ଅବିଶ୍ୱାସର ଭାବ ଥିବା ସେଇ ମୁହଁଟିକୁ । ଭିକାରୁଣୀଟି ଟଙ୍କା ତକ ଦେଖି ହତ୍‌ବାକ୍ ହୋଇପଡ଼ିଲା ତା' ପରେ ଦଉଡ଼ିବାକୁ ଲାଗିଲା ।

ହେଲେ କାହିଁକି ?

ଓଃ... ସେ ବୋଧେ ଭାବିଲା ଭଲରେ ଟଙ୍କାଗୁଡ଼ା ଦେଇପକାଇଛି ବୋଲି, କାଳେ ଝିଅଟି ପୁଣି ଟଙ୍କା ସବୁ ତା'ଠାରୁ ନେଇଯିବ । ସେ ଦାତାଙ୍କୁ ବି ଅବିଶ୍ୱାସ କଲା ଆଉ ତା'ର ଭାଗ୍ୟକୁ ବି । ସେଥିପାଇଁ ସେ ଦଉଡ଼ି ଚାଲିଗଲା । କିନ୍ତୁ ଏଠି ଏଇ ଶବ୍ଦଗୁଡ଼ାଙ୍କୁ ଅବିଶ୍ୱାସ କରିବାର କାରଣ କିଛି ନଥିଲା, ସେ ସବୁ ସତ ଥିଲେ । ସେ ବାଥରୁମ୍‌ରୁ ଫେରିଲା ନାଇଟ୍ ଗାଉନ୍ ପିନ୍ଧି । ଆଉ ଠିକ୍ ସାମ୍ନା ଟିପୟ ଉପରେ ଥିବା କଫିକପ୍‌କୁ ଉଠାଇନେଲା ଗୋଟେ । ବସିପଡ଼ିଲା ଗୋଟିଏ ଚେୟାର ଉପରେ, ଯାହାର ପାଖ ଚେୟାରରେ ବସିଥିଲେ ମିଷ୍ଟର ଶର୍ମା, ହାତରେ କପ୍ ଧରି । ବାମ୍ପ ଉଠୁଥିଲା କଫି କପ୍‌ରୁ ।

ତା'ର ମନଥିଲା ଥଣ୍ଡା । ଏତେ ଥଣ୍ଡାଯେ ଏକଦମ୍ ବରଫ । ସେ ସବୁବେଳେ ଏଇମିତି । ବେଶି କଥା କହେନାଁ । ତା' କାମ ସେ ଜାଣେ । ମିଷ୍ଟର ଶର୍ମା କଫି ପିଇଲେ । ଡ଼ବଲବେଡ଼ର ଗୋଟିଏ ପଟେ ଗଡ଼ିପଡ଼ିଲେ । ଆଉ

ପରମୂହୁର୍ତ୍ତରେ ଘୁଙ୍ଗୁଡ଼ି ଶବ୍ଦରେ କୋଠରୀ ଭରିଗଲା । ସେ ଆଶ୍ଚର୍ଯ୍ୟ ହୋଇଗଲା । ତାର କ୍ଳାନ୍ତ ଆଖିପତା ନଇଁ ଆସିଲା, ସେ ବି ଶୋଇଗଲା ସେଇ ଲମ୍ବା ସୋଫାଉପରେ ।

ଗୁଡ୍ ମର୍ଣ୍ଣିଂ, ନିଦ ଭାଙ୍ଗିଲା ତା'ର ! ହଠାତ୍ ମନେପଡ଼ିଲାନି ସେ ଶୋଇଛି କେଉଁଠି । ଓଃ......ବହୁତ ଦିନପରେ ରାତ୍ରିର ନୀରବ ପ୍ରହରରେ ସେ ଗଭୀର ନିଦ୍ରାରେ ଶୋଇଯାଇଥିଲା । ଏକ ଆତ୍ମତୃପ୍ତିରେ ମନ ତାର ଭରିଯାଇଥିଲା ! ଯେମିତି ଏଇ ଏବେ ମା' ଦୁର୍ଗାଙ୍କୁ ପୂଜା କରି ଉଠୁଛି ସେ । ସେ ଆଖି ମଳିମଳି ଉଠିଲା ଆଗରେ ମିଷ୍ଟର ଶର୍ମା ହାତର ବାମ୍ଫଉଠା ଚା' କପ୍ । ବହୁତ ଅପେକ୍ଷା କଲି, ଆପଣ ଉଠିଲେ ନାହିଁ । ମୋର ଟିକେ ବାହାରେ କାମ ଅଛି ମୁଁ ଯିବାକୁ ବାହାରିଛି, ସେଥିପାଇଁ ଆପଣଙ୍କ ସୁନ୍ଦର ନିଦଟିରେ ବ୍ୟାଘାତ ଆଣିଲି ।

ନାଇଁ.... ସେ କିଛି ନୁହେଁ । ଉଠିଲା ସେ । ସେ ସ୍ୱପ୍ନରେ ଭାସୁନି ତା' ପାଦତଳେ ମାଟିଅଛଇ । ସବୁପରୁଷ ସମାନ ନୁହେଁ ।

ଏଇ ହେଲେ ସେଇ ଶର୍ମା ଯିଏ ଦିନେ ଜେଲ୍ ଭିତରକୁ ତଥ୍ୟ ସଂଗ୍ରହ ପାଇଁ ବ୍ୟବସାୟୀ ବେଶରେ ଆସିଥିଲେ ସାମ୍ବାଦିକ ରଜତ୍ ଶର୍ମା ।

ସେ ଚିଡ଼ି ଉଠିଥିଲା, ଆକ୍ରମଣ କରିଥିଲା । ଶେଷରେ ବୁଝିଥିଲା ସବୁକିଛି । ସହଯୋଗ କରିଥିଲା ବିରାଟ ଜେଲର ପ୍ରାଚୀର ଭିତରେ ଘଟୁଥିବା ଅସଂଖ୍ୟ କଳାକହାଣୀକୁ ସେମାନେ ଲୋକଲୋଚନକୁ ଆଣିଥିଲେ । ଦୁନିଆ ଜାଣିଥିଲା କାଳକୋଠରୀରେ ଦିନକାଟିବା ଯେତେ ଭୟଙ୍କର ତା'ଠାରୁ ଆହୁରି ଲୋମହର୍ଷଣକାରୀ କାହାଣୀ ଏମାନଙ୍କର !

ରକ୍ଷକ ସାଜି ଭକ୍ଷକ ହୋଇ ଆସୁଥିବା ଭ୍ରଷ୍ଟମାନଙ୍କର କାହାଣୀତ କେବେ ବି ଅନ୍ତହେବନି, ତେବେ ନାରୀର ପ୍ରତିବାଦସ୍ୱରରେ ତ ଯେଉଁ ଜୁଆରିତ ଶକ୍ତିଥାଏ ତା କେବେ ବି ବ୍ୟର୍ଥ ଯିବନି । ଗୋଟିଏ ତୃଷ୍ଣାର ଡ଼ାଏରୀ ପଢ଼ି ଅସଂଖ୍ୟ ତୃଷ୍ଣା

ଆଗେଇ ଆସିବେ । ମିଷ୍ଟର ଆଣ୍ଡ ମିସେସ୍ ଶର୍ମା ହନିମୁନ୍‌ରେ ଆସିନାହାଁନ୍ତି । ଆସିଛନ୍ତି ଏକ ମିଶନରେ । ଏପରି ଅନେକ ତୃଷ୍ଣାଙ୍କୁ ଉଦ୍ଧାର କରିବାକୁ....... ।

ତୃଷ୍ଣାର ଡ଼ାଏରୀ ଖୋଲିଲେ ମି:ଶର୍ମା ପଢ଼ି ଚାଲିଲେ ଏକ ନିଃଶ୍ୱାସରେ.... ଏକ୍, ଦୁଇ, ତିନ୍.... କାରାଗାର ବିରାଟ ପ୍ରାଚୀର ଭେଦି ତା'ର ଚିତ୍କାର ବାହାରକୁ ଯିବା ସମ୍ଭବ ନଥିଲା । ସେମାନେ ତା'ର ଦୁଇହାତକୁ ଦୁଇପଟୁ ଭିଡ଼ିଧରି ତା'ଉପରେ ଅମାନୁଷିକ ଅତ୍ୟାଚାର କରି ଚାଲିଥିଲେ । ସେ ଲହୁଲୁହାଣ ହୋଇ ଭୂମିରେ ଗଡ଼ିପଡ଼ିଲା । ତା'ର ହୋସ୍ ଆସବା ବେଳକୁ ସେ ନିଜକୁ ଡ଼ାକ୍ତରଖାନାର ସଫେଦ୍ ଖଟରେ ଆବିଷ୍କାର କଲା ।

ସେ ଆବିଷ୍କାର କଲା ମଣିଷ ବାହାରର ସଫେଦ୍ ଆବରଣ ଭିତରେ ଲୁକ୍‌କାୟିତ ସେଇ କ୍ଷୁଧିତ ପଶୁକୁ, ଯାହାକୁ ସେ ହୁଏତ ଜେଲ ବାହାରେ କେବେ ଭେଟି ନଥିଲା । ସେ ମୁଣ୍ଡ ଉଠାଇବାକୁ ଚେଷ୍ଟା କଲା, ମାତ୍ର ପ୍ରବଳ ଯନ୍ତ୍ରଣାରେ ଶିହରିତ ହୋଇଗଲା ତା'ର ସମଗ୍ର ଶରୀର । ସେ ପୁଣି ବିଛଣାରେ ପଡ଼ିଗଲା । ହାତରେ ବ୍ୟାଣ୍ଡେଜ୍, ସାଲାଇନ୍, ମଥାରେ ପଟି, କିନ୍ତୁ ଏପରି ଅବସ୍ଥାରେ ବି ସେ ଦେଖିଲା ତା'ର ଗୋଡ଼ ଦୁଇଟି ଲୁହାର ଶିକୁଳିରେ ବନ୍ଧା ହୋଇଛି । ହାହାକାର କରି ଉଠିଲା ତା'ର ଅନ୍ତରାତ୍ମା । ବିଦ୍ରୋହର ଯେଉଁ ବହ୍ନିଟି ତା' ଭିତରେ ହୁତ୍‌ହୁତ୍ ହୋଇ ଜଳୁଥିଲା ସେ ଯେମିତି ଶତଶତ ମହାଦୀପର ପ୍ରଜ୍ଜ୍ୱଳନରେ ଆହୁରି ପ୍ରଜ୍ଜ୍ୱଳିତ କରିଉଠିଲା । ସମଗ୍ର ଜୀବନ ଯେମିତି ଖଣ୍ଡାଟିଏ ହୋଇ ତା' ମଥା ଉପରେ ଝୁଲିରହିଛି । ସେ ଭାବି ପାରୁନଥିଲା ସେ ଏବେ କରିବ କ'ଣ ? ସେଇ ଖଣ୍ଡାଟିକୁ ସେ ମଥାରେ ପଡ଼ିବାକୁ ଦେଇ ସେ ନିଜର ଜ୍ୱାଳାମୟ ଜୀବନର ଅବସାନ କରାଇବ ନାଁ ସେଇ ତଲୱାରକୁ ହାତରେ ନେଇ ସେ ରଣଚଣ୍ଡୀ ସାଜିବ । ସେ ଭାବିପାରୁନଥିଲା ଏହି ମହାସମରରେ ତା'ର ସାଥୀ କିଏ ?

କିଏ ସେଇ ଦେବତା ଯାହାଠାରୁ ଆୟୁଧ ନେଇ ସେ ଦଶଭୂଜା ସାଜି ସାରା ଦୁନିଆ ବିରୁଦ୍ଧରେ ଏକତରଫା ଯୁଦ୍ଧର ଘୋଷଣା କରିବ । ସେ ବଧ କରିବ ସେଇ ଶତଶତ ମହିଷାସୁରଙ୍କୁ । ଯେଉଁମାନେ ସ୍ତ୍ରୀଟିଏ ଦୁର୍ବଳ ବୋଲି ତାକୁ ଅତ୍ୟାଚାର

କରନ୍ତି । ତା'ର ସେଇ ନାରୀତ୍ୱର ଆପମାନ କରନ୍ତି । ଫୁଲଟିଏକୁ ଦଳିଚକଟି ସେଇ ନର୍କକୁଣ୍ଡରେ ପଡ଼ି ଛଟପଟ ହୋଇ ମରିଯିବାକୁ ଛାଡ଼ିଯାଆନ୍ତି । ପୁଣି ଆଇନ୍ ଆଖିରେ ଅନ୍ଧପୁଟୁଳି ବାନ୍ଧି, ତରାଜୁର ଦୁଇପଟର ଓଜନକୁ ନିଜହାତରେ ନିଜ ଇଚ୍ଛା ଅନୁସାରେ ତଉଲନ୍ତି । କୀଟଦ୍ରଂଷ୍ଟ କହି ସେଇ ଫୁଲକୁ ପଚିସଢ଼ି ନଷ୍ଟ ହେବା ପାଇଁ ତା' ଭାଗ୍ୟ ଭୋଗ କରିବାକୁ ଫିଙ୍ଗିଦିଅନ୍ତି । ଦୁନିଆଁର ନୀତି କ'ଣ ସବୁବେଳେ ଏମିତି ? କିନ୍ତୁ କାହିଁକି ? ତୃଷ୍ଣାର ତୃଷ୍ଣା କିନ୍ତୁ ଶେଷ ହୋଇନଥିଲା । ତା ମୁହଁରେ ପାଣି ଢ଼ଳାଚାଲିଥିଲା, ସେ ଆକଣ୍ଠ ପାନ କରୁଥିଲା ନର୍ସଟି ସେତେବେଳକୁ ରାଗିଯାଇଥିଲା । କେତେ ପାଣି ପିଉଛି ଏଇ ବେଶ୍ୟାଟା..... !

ବାସ୍..... ତୃଷ୍ଣାର ନୂଆନାମ ନର୍ସଟି ଦେଇଦେଲା, ଏବେ ଆଉ ତାକୁ ହଜାରେ ନାମ ଦେବାର, ନିଜ ନାମ ଲୁଚାଇବାର କୌଣସି ଆବଶ୍ୟକତା ନଥିଲା । କାରଣ ତାର ଅସଲ ସ୍ୱରୂପ ସମସ୍ତେ ଜାଣିସାରିଥିଲେ । କେହି ଜାଣିବାର କିଛି ଉପାୟ ନଥିଲା । ସେ କିନ୍ତୁ ନିଜ ହାତରେ ନିଜର ବିନାଶକୁ ନିମନ୍ତ୍ରଣ କରିଥିଲା । ସେ ହିଁ ପୋଲିସ୍‌କୁ ତା'ର ଅପରାଧ ବିଷୟରେ ଜଣାଇଥିଲା । ଯେଉଁଗଛରେ ସେ ଚଢ଼ିଥିଲା, ଯାହାର ଫଳମୂଳ ଖାଇ ସେ ବଞ୍ଚୁଥିଲା, ଯଦି ସେଇ ଗଛକୁ ସେ ନିଜେ କାଟିଦେବ ତେବେ ଭୂମିରେ ପଡ଼ି ତା'ର ଜୀବନ ଯିବନି ତ ଯିବ କାହାର ?

ସେ ପ୍ରତିବାଦ କରିବାକୁ ଚାହିଁଲା ନାହିଁ । ନର୍ସଟି ଉପରେ ତା'କୁ ଭୀଷଣ ଦୟା ଲାଗିଲା । ସେ ଏଇ ବେଡ୍‌ରେ ପଡ଼ିପଡ଼ି ଦେଖିଛି ବିଚାରୀଟିର ଜୀବନକୁ ଖୁବ୍ ପାଖରେ । ନର୍ସଟି ସିନା ଭାବୁଛି ତା' ବିଷୟରେ କେହି ଜାଣନ୍ତି ନାହିଁ ମାତ୍ର ସବୁରି ଅଲକ୍ଷ୍ୟରେ କେହି ଯେ ତାକୁ ଦେଖୁଛି ।

ସେ ଅନୁମାନ କଲା ବୋଧହୁଏ ସେ ନିଶ୍ଚୟ ସ୍ୱାମୀ ପରିତ୍ୟକ୍ତା ନହେଲେ ତା'ର ସ୍ୱାମୀ ମଦୁଆ, ଗଞ୍ଜୁଡ଼ି କିମ୍ୱା ଗୋଟିଏ ନଷ୍ଟଚରିତ୍ରର ବ୍ୟକ୍ତି । ନହେଲେ କି ସ୍ୱାମୀ ଥାଇ ସ୍ତ୍ରୀଟିଏ ଏତେ ଅସହାୟ ହୁଅନ୍ତା ? ପ୍ରତିଦିନ ସେ ଦେଖେ ଦିନ ଦୁଇଟାରେ ସୁନ୍ଦର ଗୁଲୁଗୁଲିଆ ଛଅ ସାତବର୍ଷର ପୁଅଟିଏ ଟିଫିନ୍ ବାକ୍ସ ଓ ସ୍କୁଲ ବ୍ୟାଗ ସହ ଆସେ ଏଇ ଡ଼ାକ୍ତରଖାନାକୁ । ଆଉ ମା' ପୁଅ ଦୁହେଁ ସେଇ ସ୍କୁଲ

ରିକ୍ସାରେ ବୋଧେ ତାଙ୍କ ଘରକୁ ଯାଆନ୍ତି । ପୁଣି ରାତି ଦଶଟାରେ ଆସେ ନର୍ସଟି, ସକାଳ ଯାଏ ତା'ର ଡ଼ିୟୁଟି କରିବାକୁ ।

ହାତଗୋଡ଼ ଚଳୁନାହିଁ ସିନା ମସ୍ତିଷ୍କ କାମ କରୁଛି, ଆଖି ଦେଖୁଛି, ମନ ସବୁ ବୁଝିପାରିଛି । ତୃଷ୍ଣା କହିବାକୁ ବହୁତ କିଛି ଚାହୁଁଥିଲା କିନ୍ତୁ ଚୁପ ରହିବାକୁ ଠିକ୍ ମନେ କରୁଥିଲା । କାରଣ ସେ ଜାଣେ ସେ ଏକ ପଦ୍ମ ନୁହେଁ ବରଂ ପଦ୍ମଫୁଲ ତଳର ସେଇ ପଙ୍କ । ତା'ଠାରୁ କିଛି ସମ୍ବେଦନର ଭାଷା ଶୁଣିବାକୁ କହେ ଚାହେଁନା । ସେ ଅପରାଧୀନି, ସେ ସମାଜ ଆଖିରେ ଏକ ପରିତ୍ୟକ୍ତା ନାରୀ । ସେ ସମାଜକୁ କଳୁଷିତ କରୁଥିଲା, ତା' ପାଇଁ ଆଜୀବନ କାରାଦଣ୍ଡ କିମ୍ବା ଫାଶୀର ବ୍ୟବସ୍ଥା ହିଁ ଉପଯୁକ୍ତ ଦଣ୍ଡ । ସେ ଚାହୁଁଥିଲା ନର୍ସଟିକୁ ତା'ର ନାଁ ପଚାରନ୍ତା, କାରଣ ସେ ଜାଣେ ନର୍ସଟିର ନାଁ ନର୍ସ ନୁହେଁ ବରାଂ ତା' ବାପା ମା' ବି ତାର ଗୋଟେ ସୁନ୍ଦର ନାଁ ଦେଇଥିବେ । ହୁଏତ ବହୁତ ମଧୁର ସ୍ମୃତିରେ ତା'ର ପିଲାଦିନ କଟିଥିବ । ତା'ର ବାପା ମା' ବି ତା ପାଇଁ କେତେ ସ୍ୱପ୍ନରମୀନାର ତୋଳିଥିବେ । ହେଲେ ଆଜି ? ଆଜି ତା'ର ଏ ଅବସ୍ଥା କାହିଁକି ? କିନ୍ତୁ ସେ କିଛି କହିପାରୁନଥିଲା । କାରଣ ସେ ଜାଣେ ଧଳା ପୋଷାକର ଆଢୁଆଳରେ କଳାକାମଟିଏ କରୁଥିବା ନାରୀଟିଏ କେତେ ଅସହାୟ !! କେତେ ବାଧ୍ୟ ସେ ନିଜକୁ ତିଳତିଳ କରି ହତ୍ୟା କରିବାକୁ । ପ୍ରତିଦିନ ରାତ୍ରିରେ ଡ଼ିଉଟି କରିବାକୁ ଆସୁଥିବା ନର୍ସଟିର କେବଳ ଯେ ପ୍ରୌଢ଼ ଡ଼ାକ୍ତରମାନଙ୍କ ଦ୍ୱାରା ସମସ୍ତ ନାରୀତ୍ୱ, ସତୀତ୍ୱ ଅପହୃତ ହୁଏ ସେ କଥା ନୁହେଁ, ସେଠାକୁ ଚିକିତ୍ସା ପାଇଁ ଆସୁଥିବା ନାମୀଦାମୀ ରାଜନେତା, ଶିଳ୍ପପତି ଆଉ ବିଶିଷ୍ଟ ବ୍ୟକ୍ତିମାନଙ୍କର ଶଯ୍ୟାସଙ୍ଗିନୀ ହେବାକୁ ବାଧ୍ୟ ହୁଏ । ତୃଷ୍ଣା ଭାବୁଥିଲା ବୋଧହୁଏ ତା'ର ସବୁ ଅସହାୟତା କେବଳ ସେଇ କୁନିପୁଅଟି ନୁହେଁ ବରଂ ତା' ଘରେ ଆଉ ବି କେହି ନିର୍ଭରଶୀଳ ବ୍ୟକ୍ତି ଥିବେ ଯେଉଁମାନଙ୍କୁ ବଞ୍ଚେଇବାର ପ୍ରୟାସରେ ସେ ନିଜକୁ ନିଜେ ଜାଳିପୋଡ଼ି ଛାରଖାର କରିଦେଉଛି । ସେ ଜାଣିଥିଲା ଯେ ତାକୁ ଦୁନିଆରେ ପ୍ରତ୍ୟେକଙ୍କ ଆଗରେ ବେଶ୍ୟା ଡ଼ାକି ତା'କୁ ଲାଞ୍ଛିତ ଅପମାନିତ କରି ନାନା କଥା କହି ନର୍ସଟି ନିଜର ସତୀତ୍ୱ ଜାହିର କରିବାକୁ ଚେଷ୍ଟା କରୁଥିଲା । କାରଣ ଏହି ପୃଥିବୀର ନିୟମ ହିଁ ଏମିତି । ଯିଏ ନିଜେ କିଛି ଭୁଲ କରିଥାଏ,

ଦୋଷ କରିଥାଏ ସେ ଅନ୍ୟର ଭୁଲ ଅନ୍ୟର ଦୋଷ ଆଡ଼କୁ ଆଙ୍ଗୁଳି ଦେଖାଇଲେ, ସାମଜ ଦୃଷ୍ଟି ସେଇ ଆଡ଼କୁ ସ୍ୱତଃ ଚାଲିଯିବ । ଆଉ ଏଇ ମଣିଷଟି ସବୁରି ଦୃଷ୍ଟି ପଥାରୂଢ଼ ହୋଇ ନିଜର ରାସ୍ତାରେ ନିଜେ ଦୋଷମୁକ୍ତଥିବା ଦର୍ଶେଇ ଆଗେଇ ଚାଲିବ କିନ୍ତୁ ସତରେ କ'ଣ ଦୁନିଁଆ ଆଖିରେ ଅନ୍ଧପୁଟୁଳି ବନ୍ଧା ହୋଇଛି, ନାଁ ଜାଣିଜାଣି ସେ ଗାନ୍ଧରୀ ସାଜିଛି ? ଜବାବ୍ ଦେବ କିଏ ?

ନର୍ସଟିର ଅସହାୟତାକୁ ଅନ୍ତଃକରଣର ସମସ୍ତ ଆବେଗ ଦେଇ ସେ ବୁଝୁଥିବାରୁ ସେ ତା' ଉପରେ ଆଦୌ ରାଗିପାରୁନଥିଲା । ବରଂ ଭାବୁଥିଲା କେବଳ ମାତ୍ର ଶାରୀରିକ ପ୍ରଭେଦଟିଏ ସ୍ତ୍ରୀକୁ ପୁରୁଷ ହାତରେ ଖେଳନା କରେ କାହିଁକି ? ସତରେ କ'ଣ କେହି ଭଗବାନ୍ କେଉଁଠି ଅଛନ୍ତି ? ଯଦି ଅଛନ୍ତି ସେ କ'ଣ ଜଣେ ପୁରୁଷ ? ନିଶ୍ଚୟ ଜଣେ ପୁରୁଷ ନହେଲେ ନାରୀକୁ ଏପରି ଅସହାୟ, ଦୁର୍ବଳ, ପରାଙ୍ଗପୁଷ୍ଟ କରି ନଥାନ୍ତେ । ଯଦି ସେଇ ଭଗବାନ୍ ନାରୀ ହୋଇଥାନ୍ତେ ତେବେ ଦୁନିଆରେ ଅସଂଖ୍ୟ ନାରୀଙ୍କର ଏପରି ଜ୍ୱାଳାଯନ୍ତ୍ରଣାର ଜୀବନକୁ ବସିବସି ତାଙ୍କର ବଡ଼ବଡ଼ ଆଖିରେ ଦେଖନ୍ତେ ଚୁପ୍‌ଚାପ୍ ? ସେ ଶେଷରେ ଏଇ ବିଚାରରେ ଉପନୀତ ହେଲାଯେ ଭଗବାନ୍ ନପୁଂସକ । ସେ କିଛି କରିବାର କ୍ଷମତା ରଖନ୍ତି ନାହିଁ । ଯିଏ ତାଙ୍କୁ ଭୋଗଦିଏ ସେ ଖାଇଦେଇ ତା'ରି ଗୁଣ କୀର୍ତ୍ତନ କରନ୍ତି । ପୁଣି ବିରାଟ ଦେଉଳ ଭିତରେ ବସିବସି ଶୋଇଶୋଇ ଦିନ କାଟିଦିଅନ୍ତି ଯେମିତି କାଟୁଛି ସେ ଏଇ ଡ଼ାକ୍ତରଖାନାରେ ।

ଧିରେଧିରେ ତାର ଅବସ୍ଥାରେ ଉନ୍ନତି ହେଉଛି ।

ପୁରାପୁରି ଭଲ ହୋଇଗଲା ! ସେ କ'ଣ ପୁଣି ଫେରିଯିବ ସେଇ କାରାଗାରର କଳାକୋଠରୀକୁ ? ଯେଉଁଠି ନାଗସାପ ଠାରୁ ଆହୁରି ଭୟଙ୍କର କାଳସର୍ପମାନେ ପୁଣି ତା'ର ଶରୀର ପ୍ରତ୍ୟେକ ଅଙ୍ଗପ୍ରତ୍ୟେଙ୍ଗକୁ ଚୋଟ ମାରିବେ । ପୁଣି ସେମାନଙ୍କର ବିଷାକ୍ତ ଜ୍ୱାଳାରେ ତା'ର ତନମନ ଜର୍ଜରିତ ହେବ । ମୃତ୍ୟୁ ଦିଅ ପ୍ରଭୁ, ମୃତ୍ୟୁ ହିଁ ଶ୍ରେୟସ୍କର । ଆଖି କୋଣର ଅବାରିତ ଲୁହଧାରା ଆଉ କଣ୍ଠରୁ ବାହାରି ଆସୁଥିବା ଚିତ୍କାରକୁ ସେ ଜବରଦସ୍ତ ବନ୍ଦ କରିବାକୁ ଚେଷ୍ଟା କଲା । ସେ ମର୍ମେମର୍ମେ

ଅନୁଭବ କରୁଥିଲା ତା'ର ବିବେକର ମୁକ୍ତିପାଇଁ ଆର୍ତ୍ତଚିତ୍କାର ଆଉ ମନର ଆକୁଳ କ୍ରନ୍ଦନ । ତା'ର ଛାତି ଭିତରଟା କେମିତି ଅସହାୟ, କେତେ ଅଭିଶପ୍ତ ଜୀବନ ତା'ର । ତା'ର କେବଳ ଗୋଟିଏ ଭୁଲ ଥିଲା ଯେ, ସେ ଥିଲା ଏକ ଏମିତି ଅସହାୟ ନାରୀର ଗର୍ଭରୁ ଜନ୍ମିଥିବା ଝିଅ । ଯାହାକୁ ଏମିତି କେତକ ଜାନ୍ତବ ପଶୁଙ୍କର ଶୀକାର ହେବାକୁ ପଡ଼ିଥିଲା । ପିଲାଦିନେ ସେ ତା ମା'ର ସମସ୍ତ ଅଥର୍ବପଣକୁ ଅନୁଭବ କରିଥିଲା । ସେ ଦେଖିଥିଲା ତା ମା' ପରଘରେ ଦିନଯାକ ଖଟିଖଟି ବି ମା' ଝିଅଙ୍କ ପେଟକୁ ପୁରାଗଣ୍ଡାଏ ଖାଦ୍ୟ, ଦେହ ଢ଼ାଙ୍କିବାକୁ କପଡ଼ା ବା ଘରଭଡ଼ାର ମାସିକ ଖର୍ଚ୍ଚ ଯୋଗାଡ଼ କରି ନପାରି କିପରି ରାତିରାତି ନିଜକୁ ବିକ୍ରି କରିବାକୁ ବାଧ ହେଉଥିଲା । ତା ମା' ମୁହଁର ଅଜସ୍ର ଅସଭ୍ୟ ଗାଳି ଭିତରେ ବି ସେ ଗଣ୍ଠିଧନ କରି ଝିଅକୁ ସାଇତି ରଖିଥିଲା । ତା'ର ବାପା କିଏ ଥିଲା, ସେ ଜାଣିନଥିଲା । ମାତ୍ର ସବୁବେଳେ ମା' ତାକୁ ଭଲ ଘରେ ବିବାହ କରିବାର ସ୍ୱପ୍ନ ଦେଖାଉଥିଲା । ଆଉ ନିଜେ ସେଇ ସ୍ୱପ୍ନରେ ମଜିରହି ନିଜର ଦୁଃଖକୁ ଭୁଲିଯାଉଥିଲା । ସେ ପ୍ରତୀକ୍ଷା କରୁଥିଲା ଏମିତି ଏକ ସକାଳକୁ, ଯେଉଁ ସକାଳର ଶୁଭ୍ରତା ତାଙ୍କ ଜୀବନ ସମସ୍ତ ଦୁଃଖ, ଦୈନ୍ୟ, ଅସହାୟତା, ହାହାକାରକୁ ପୋଛି ଦେଇ ଏକ ନୂତନ ସୂର୍ଯ୍ୟର ଆଭାରେ ସେମାନଙ୍କୁ ବିମଣ୍ଡିତ କରିଦେବ । ସେ ଭାବୁଥିଲା ତାଙ୍କର ସେଇ ରକ୍ତସ୍ନାତ ପୃଥିବୀର ଲାଲିମା ନିଶ୍ଚୟ ସୂର୍ଯ୍ୟଙ୍କର ଲାଲିମାରେ ରୂପାନ୍ତରିତ ହେବ । ସେମାନେ ଅହଲ୍ୟାଙ୍କ ପରି ମୁକ୍ତି ପାଇଯିବେ । ହେଲେ କେହି ଶ୍ରୀରାମ କେବେହେଲେ ଆସୁନଥିଲେ । ତା ଦେହରେ ବୟସ ବଢ଼ିବା ସହ ରୂପର ବିକାଶ ହେଉଥିଲା । ସେ ନିଜର ସୌନ୍ଦର୍ଯ୍ୟକୁ ମା'ର ଭଙ୍ଗା ଆଇନାରେ ଦେଖି ଖୁସି ହେଉଥିବା ବେଳେ ସ୍ପଷ୍ଟ ଦେଖିପାରୁଥିଲା ମା' ଆଖି କୋଣରେ ଚକ୍‌ଚକ୍ କରୁଥିବା ଲୁହବିନ୍ଦୁମାନଙ୍କୁ । ମା'ତ କହୁଥିଲା ସେ ସୁନ୍ଦରୀ ଅଛି ବଡ଼ଘରେ ବାହା ହୋଇଯିବ ତେବେ ମା' କାନ୍ଦେ କାହିଁକି ?

ଛୋଟିଆ କୁଡ଼ିଆ ଘରର ଗୋଟିଏ କଣରେ ସେ ଜାକିଜୁକି ଶୋଇଯାଏ । ସେ ଜାଣେ ମା' ତା'ର ଚେଇଁ ରହିବ ତମାମ୍ ରାତି ! ମା' ତାକୁ ବାହାରକୁ

କେବେହେଲେ ଛାଡୁନଥିଲା । କାମ କରିଗଲା ବେଳେ ତାକୁ ବାହାରେ ତାଲା ପକାଇ ଯାଉଥିଲା । ହେଲେ ଦିନେ ମା' କାମ କରିବାକୁ ଯାଇ ଆଉ ଫେରିଲା ନାହିଁ । ସେ କବାଟରେ ପିଟିଲା, ଆମ୍ପୁଡ଼ିଲା, ଚିତ୍କାର କଲା । ସେ ଉଦ୍ଧାରପାଇ ଆସିଲା ଗୋଟିଏ କନ୍ୟାଶ୍ରମକୁ ! ସେ ଖୁସିହେଲା ଯାହାହେଉ ଏବେ ତା'ର ସ୍ୱପ୍ନସାର୍ଥକ ହେଲା ସେ ପ୍ରଜାପତି ପଛରେ ଦଉଡ଼ିଲା, ଗୁଣୁଗୁଣୁ ଗୀତ ଗାଇଲା ପାଠ ପଢ଼ିଲା, ଚିତ୍ର ଆଙ୍କିଲା, ଗୀତ ଗାଇଲା । ସେ ଭାବିଲା ଭଲ ହୋଇଛି ସେ ବଦମାସ୍ ମା'ଟା ମରିଗଲା ! ହେଲେ ସେ ଜାଣିନଥିଲା ମା' ତାକୁ ଢ଼ାଙ୍କୁଣୀ ହୋଇ ଢ଼ାଙ୍କି ରଖିଥିଲା କାହିଁକି ? କାହିଁକି ଦୁନିଆ ଆଖିରୁ ତାକୁ ଲୁଚାଇରଖିଥିଲା । ତା'ର ଲମ୍ବା କେଶକୁ ମୁଠିମୁଠି କରି ବେଣୀ ବାନ୍ଧୁଥିଲା ବେଳେ ମା' ଯେ ଝିଅ ହେଲୁ କାହିଁକି ବୋଲି କହି କାନ୍ଦୁଥିଲା, ତାର ମାନେ କିଛି ସେ ବୁଝିପାରୁନଥିଲା । ବାହାର ପୃଥିବୀ ଏତେ ସୁନ୍ଦର, ଏତେ ଭଲ ଏଠାକାର ଲୋକମାନେ । ମା' ସମସ୍ତଙ୍କୁ କାଳସର୍ପ ବୋଲି କହୁଥିଲା କାହିଁକି ? ମା'ଟା ସତରେ ଭାରୀ ଖରାପ ଥିଲା । ଲୋକ କହୁଛନ୍ତି ମା' କୁଆଡ଼େ ଭଲ କାମ କରୁନଥିଲା, ସେଥିପାଇଁ ସେମାନେ ତାକୁ ମାରିଦେଲେ । ଭଲ ହୋଇଛି ସେ ମରିଗଲା ।

ତା'ର ଦିନଗୁଡ଼ିକ ଖୁବ୍ ଭଲରେ କଟୁଥିଲା । ଏଇଠି ହିଁ ତା'ର ନାମ ସୁକୁଟିରୁ ବଦଳି ତୃଷ୍ଣା ହୋଇଥିଲା ।

ବେଳଅବେଳରେ ସେ କନ୍ୟାଶ୍ରମ ପଛପଟେ ଥିବା ସେଇ ମୁଣ୍ଡିଆ ପାହାଡ଼ଟା ପାଖକୁ ଧାଇଁ ଯାଉଥିଲା ଯେଉଁଟା କି ପୁରାପୁରି ତା ମା'ର ନିର୍ବିକାର ମୁହଁ ପରି ଦିଶୁଥିଲା । ଶ୍ରାବଣର ବର୍ଷାଝରା ଆକାଶ ତଳେ କେତେବେଳେ କେମିତି ସେଠାକୁ ଗଲେ ତାକୁ ଲାଗୁଥିଲା ଯେମିତି ତା' ମା'ର ସଜଳଆଖି ଦୁଇଟା ତାକୁ ସତୃଷ୍ଣ ନୟନରେ ଚାହିଁ ରହିଛି । ଏବେଏବେ ତା' ମା' କଥା ତା'ର ଖୁବ୍ ମନେପଡୁଛି । ମନ ଭିତରେ ମା'ର ସେଇ ମମତାମୟୀ ମୂର୍ତ୍ତିଟା ଝଲମଲ କରିଉଠୁଛି । ସେ ହୃଦୟର ଭିତରେ କେଉଁଠି ଗୋଟେ ହଲଚଲ ଅନୁଭବ କରିଛି ଯେଉଁଟାକି ତା'ର ସ୍ପନ୍ଦନ ସହ ତାଳଦେଇ ଗୋଟେ ନିଜର ପଣ ଜାହିର କରୁଛି । ତା' ଆଖିତଳେ

ଜମିଉଠିଥିବା ଲୁହବୁନ୍ଦାଗୁଡ଼ା କାଚ କି ଅଭ୍ରଗୁଣ୍ଡ ପରି ମନେ ହେଉଛି । ଏବେ ସେ ବୁଝିପାରିଲାଣି ତା' ମା' ମନତଳର ଅଦେଖା ସ୍ନେହକୁ ଯେଉଁଟା କେବଳ ମା'ଟିଏ ହିଁ ଛୁଆକୁ ଦେଇପାରେ ଦୁନିଁଆର ଆଉ କେହି ନୁହେଁ ? ସକାଳ ଆସେ ସବୁଦିନ ପୁଣି ଶେଷ ହୋଇ ସନ୍ଧ୍ୟା, ତାପରେ ରାତି । ସମୟ ସହ ତାଳଦେଇ ସବୁରି ଜୀବନ ବି ଆଗକୁ ଆଗକୁ ଧାଇଁଚାଲେ । ଜୀବନଟା ଯେଉଁ ରାଜରାସ୍ତା ବାଛି ଆଗେଇ ଚାଲୁଥାଏ ତା'ର ଶେଷ କେଉଁଠି ?

ଚୁପ୍‌ଚାପ୍, ଶାନ୍ତ, ନିର୍ବିକାର ପାଞ୍ଚଫୁଟର ଝିଅଟି । ବୟସ ଚଉଦବର୍ଷ । ତା ସହିତ ଆସିଥିବା କେତେ ପିଲା କୁଆଡ଼େ ଗଲେଣି ହେଲେ ସେ ରହିଯାଇଛି । ଏହି ଆଶ୍ରମ ହିଁ ତାର ଘର । ଏଠାକୁ ଯିଏ ଆସେ ଦରିଦ୍ରମାନଙ୍କ ପ୍ରତି କରୁଣ ଚାହାଁଣୀ ଅପେକ୍ଷା ଦୟାର ଭିକମୁଠାଏ ଫିଙ୍ଗିବାକୁ ଆସେ । ଯେଉଁଟାକି ତାକୁ ଭୀଷଣ ବିରକ୍ତ ଲାଗେ । ନୂଆ ଲୋକ ଆସିଲେ ସେମାନଙ୍କୁ ଧାଡ଼ିବାନ୍ଧି ଠିଆ କରାଯାଏ । ଭଲ ଜାମା ପେଣ୍ଟ ପିନ୍ଧାଇ, ମୁଣ୍ଡ କୁଣ୍ଡାଇ ଅଣାଯାଏ, ସେମାନଙ୍କୁ ଦେଖେଇ ଦିଆଯାଏ ସେଇ ଦାତାମାନଙ୍କୁ । ଚିଡ଼ିଆଖାନାର ପଶୁମାନଙ୍କ ପରି ଯେଉଁମାନଙ୍କର ହାତଟେକା ଅନ୍ନରେ ପ୍ରତିପାଳିତ ହୁଅନ୍ତି ସେମାନେ ସବୁ ଅନ୍ତେବାସିନୀମାନେ । କାହାରି କାହାରି ଆଖିରେ ଦୟା, କରୁଣତ, ସ୍ନେହ ଦେଖିଲାବେଳେ କେହି କେହି ଏମିତି ଏକ ଦୃଷ୍ଟିରେ ଚାହାନ୍ତି ଯେ ତାକୁ ନିଜପ୍ରତି ଅସମ୍ଭବ ଭାବରେ ଘୃଣା ଲାଗେ । ତାକୁ ଲାଗେ ଯେମିତି ସେଇ ଲୋକମାନଙ୍କର ଚକ୍ଷୁ ତା' ଶରୀର ପ୍ରତି ଅଙ୍ଗପ୍ରତ୍ୟଙ୍ଗକୁ ବ୍ୟବଚ୍ଛେଦ କରିପକାଉଛି, ସେ ତା'ର ମୁକୁଳା ଦେହ ନେଇ ସେମାନଙ୍କ ସାମ୍ନାରେ ଅତ୍ୟନ୍ତ ଦୟନୀୟ ହୋଇ ଠିଆ ହୋଇଛି । ସେଇ ନଗ୍ନନଟୀର ଭଙ୍ଗୀରେ ଯେଉଁଗୁଡ଼ା କେବେ ଗୋଟେ ମନ୍ଦିର ବୁଲିବାକୁ ଯାଇ ମନ୍ଦିରର ପଥର କାନ୍ଥରେ ଦେଖିଥିଲା । ସେ ନଗ୍ନଦେହୀ ମହିଳାଗୁଡ଼ା ଲଜ୍ଜାହୀନ ଭାବେ ଯେଉଁ ନୃତ୍ୟର ଭଙ୍ଗୀରେ ଠିଆହୋଇଥାନ୍ତି ସେମାନଙ୍କୁ ଦେଖି ତାକୁ ଏତେ ଲାଜ ଲାଗେ ଯେ ସେ କେବେ ହେଲେ ସେଇ ମନ୍ଦିରମାନଙ୍କୁ ଯିବାକୁ ଭଲପାଏନା । ମନ୍ଦିର ଭିତରର ସେଇ ଭଗବାନ୍‌ମାନଙ୍କୁ ଜାଣିବାର, ବୁଝିବାର ପ୍ରୟାସ ସେ କେବେ ହେଲେ କରିନାହିଁ ।

ବରଂ ସେଇ ଦାତାମାନେ ହିଁ ତାକୁ ଭଗବାନ୍ ମନେହୁଅନ୍ତି ଯେଉଁମାନେ ତା'ପରି ହଜାରେ ଅନାଥଙ୍କୁ ବଞ୍ଚେଇ ରଖନ୍ତି କିନ୍ତୁ ସେଇ ନଙ୍ଗୁଳୀ ଝିଅ ଗୁଡ଼ାଙ୍କର ଦେହ ଯେ ପଥରରେ ଗଢ଼ା ! ସେ ତ ରକ୍ତମାଂସ ଶରୀରର ମଣିଷଟିଏ । ତା' ଭିତରେ ଗୋଟେ ମନ ଅଛି, ଆତ୍ମା ଅଛି, ବିବେକ ଅଛି । ଠିକ୍, ଭୁଲର ବାଛବିଚାର କରି ନ ଜାଣିଲେ ବି ଭଲ, ମନ୍ଦ ସେ ବୁଝିଲାଣି । ବୟସର ଅପରିପକ୍ୱତା ଅପେକ୍ଷା ସମୟର ନିଷ୍ଠୁର ଅଭିଜ୍ଞତା ତାକୁ ଅଧିକ ଅର୍ନ୍ତମୁଖୀ କରାଉଛି । ସେ ତା' ଦେହର ବସନ୍ତ ଅପେକ୍ଷା ଅଧିକ ଅଭିଜ୍ଞ ହୋଇଉଠୁଛି । ଏବେ ଏବେ ସେ ମା'କୁ ବେଶୀ ଝୁରୁଛି ।

ତାଙ୍କ ଆଶ୍ରମର କୃଷ୍ଣଚୂଡ଼ା ଗଛର ଲାଲଫୁଲ ଅବା ତା'ର ସବୁଜପତ୍ର ତାକୁ ଖୁବ୍ ନିଜର ମନେ ହୁଅନ୍ତି । ସେ ସେମାନଙ୍କ ସହ କଥାହୁଏ । ତା'ମନରେ ଏକ ଅହେତୁକ ଭୟ ସବୁବେଳେ । ଏକ ସନ୍ତ୍ରସ୍ତ ପାଦ ଆଉ ବିହ୍ୱଳିତ ମନ ନେଇ ସେ ଆସେ ଫୁଲ ବଗିଚାକୁ । ତା' ଭିତରେ ଗୋଟେ ଝଡ଼ ବହୁଛି ପ୍ରତି ସମୟରେ । ତାକୁ ଆଶ୍ରମରେ ରଖିବା ଆଉ ସମ୍ଭବ ହେଉନି । ଯେତିକି ସେମାନେ ପାରିଲେ କଲେ, ଆଇ ଅଧିକ କରିବା ସମ୍ଭବ ନୁହେଁ । ଆଶ୍ରମର ଦିଦି ଆସି କହି ଯାଇଛନ୍ତି, ପଢ଼ିଲୁ, ଲେଖିଲୁ, ଖାଇଲୁ, ରହିଲୁ ଆଉ କେତେ କରିପାରିବୁ ଆମେ ? ଏଥର ନିଜରାସ୍ତା ଦେଖିବାକୁ ହେବ । ଏମିତି ବଢ଼ିଲା ଝିଅମାନଙ୍କୁ ରଖିଲେ ଦିନକୁ ଦିନ ଆଶ୍ରମ ବିପଦ ଆଡ଼କୁ ଟାଣିହୋଇଯାଉଛି । ସେମାନେ କୌଣସି ବିପଦବରଣ କରିବାକୁ ପ୍ରସ୍ତୁତ ନୁହଁନ୍ତି । ସତକଥା, ସମସ୍ତେ ତ ମା' ହୋଇପାରିବନି । ମା' ସିନା ଛାତିରେ ଛୁଆକୁ ଜାକି ରଖେ ସବୁଦିନ ସବୁକ୍ଷଣ । ଗୋଟେ ଦମ୍ଭ, ଗୋଟେ ଗର୍ବ ସେମାନଙ୍କ ଛାତିତଳେ ଥାଏ । ହେଲେ ତା'ର କିଏ ଅଛି ?

ଆଶ୍ରମରେ ସଭିଁଏ ତୃଷ୍ଣାକୁ ଭଲପାଆନ୍ତି, ପୁଷିଠାରୁ ଶୁଆ ଯାଏ, କୁକୁରଠାରୁ ଗେଟ୍ ଜଗୁଆଳ ଯାଏ । ମାତ୍ର ଭଲପାଏନାଁ ସେଇ ଦିଦି ଜଣକ । ସେ ସବୁବେଳେ ତା'କୁ ଗାଳିଦେଉଥାଏ, ମାରୁଥାଏ । ବ୍ୟସ୍ତ ହୋଇପଡ଼େ ସେ । ପୂର୍ବରୁ ଯେଉଁ ଦିଦି ଥିଲେ ସେ କେତେ ଭଲ ପାଉଥିଲେ ତାକୁ । ପାଖରେ ବସାନ୍ତି, କେତେ ଗପ

କହନ୍ତି । ଆକାଶରେ ତାରା, ଜହ୍ନ ଦେଖାନ୍ତି, ପୁଣି ଘଡ଼ଘଡ଼ି ବିଜୁଳି ମାରିଲେ ସେ ଯେତେବେଳେ ତାଙ୍କ ପାଖକୁ ଧାଇଁଆସେ ତାକୁ ଛାତିରେ ଜାକି ଧରନ୍ତି ମା' ପରି । ସେ ବଦଳି ହୋଇ ଚାଲିଗଲା ପରେ ଯେଉଁ ନୂଆ ଦିଦି ଆସିଲେ ତାକୁ ଆଡ଼ ଆଖିରେ ଦେଖି ସହିପାରୁ ନାହାଁନ୍ତି । ସବୁବେଳେ ତା' ଉପରେ ଚିଡ଼ଚଡ଼୍ । ଦେଖିବାକୁ ଅତ୍ୟନ୍ତ କଦାକାର ହୋଇଥିବା ହେତୁ ତାଙ୍କର ସବୁ ରାଗ ତୃଷାର ସୁନ୍ଦର ରୂପ ପାଇଁ । ସତେଯେମିତି ତାଙ୍କର ଏପରି ଚେହେରା ପାଇଁ ତୃଷା ହିଁ ଦାୟୀ । ଆଶ୍ରମର ଯେତେ କାମ କଲେ ବି ସେ ସନ୍ତୁଷ୍ଟ ନୁହଁନ୍ତି । ଯେତେ ଖଟିଲେ ବି ପେଟପୁରା ଖାଇବାକୁ ଦେବା ତ ଦୂରର କଥା ତେଲ କି ସାବୁନ୍‌ଟିଏ ଦେଖିବା ତା'ପାଇଁ ସ୍ୱପ୍ନ ହୋଇଉଠିଲା । ତଥାପି କେମିତି ଦେବୀ ପ୍ରତିମା ପରି ତା' ଦେହ ଝଲସି ଉଠେ ସେ ନିଜେ ବି ବୁଝିପାରେନା । ଭଙ୍ଗା ଆଇନାରେ ନିଜର ପ୍ରତିବିମ୍ବ ଦେଖି ସେ ଚମ୍‌କି ଉଠେ । ନିଜକୁ ନିଜେ ଛେପ ପକାଏ, ଏଇ ଚେହେରାକୁ କେତେ ଭଲପାଉଥିଲା ମା', ହେଲେ କାହିଁକି ଯେ ଏଇ ରୂପ ହିଁ ତା' ପାଇଁ କାଳ ହେବ । ସତରେ କ'ଣ ମା' ଠିକ୍ କହୁଥିଲା ? ସେଥିପାଇଁ ଦିଦି ତାକୁ ଏତେ ରାଗୁଛନ୍ତି ? ସମସ୍ତଙ୍କ ଠାରୁ ବଡ଼ ହୋଇଥିବାରୁ ସେ ହିଁ ଦିଦିଙ୍କ ଗୋଡ଼ ଡ଼େରି ରାତିଯାଏ ଘଷେ । ଏମିତି ଘଷିଘଷି କେତେବେଳକେ ତାକୁ ନିଦ ଆସେ । ସେ ନିଦରେ ଘୁଙ୍ଗୁଡ଼ି ମାରନ୍ତି ଆଉ ପାଦ ଚିପିଚିପି କ୍ଳାନ୍ତ ହୋଇ ଧାଇଁଆସେ ତା'ର ବିଛଣାକୁ । ତା'ର ଛୋଟ କ୍ଳାନ୍ତ ଦେହଟା ନିମିଷକରେ ନିଦ୍ରାରେ ଆଚ୍ଛନ୍ନ ହୋଇପଡ଼େ । ସେ କେତେ ରକମର ସ୍ୱପ୍ନ ଦେଖିଗଲେ ତମାମ୍ ରାତି । ଯାହା ପାଇଁ ବାସ୍ତବତା କଣ୍ଟାଠାରୁ ଅଧିକ ତୀକ୍ଷ୍ଣ, ସଂଘର୍ଷ କରି ଜୀଉଁଥିବା ଜୀବନଟିଏ, ସ୍ୱପ୍ନରେ ମନ ନ ଭୁଲାଇଲେ ବଞ୍ଚିବ କେମିତି ? କେମିତି ଆରଦିନ ପାଇଁ ସେ ଜୀଇଁବାର ଉପାଦାନଟିଏ ଯୋଗାଡ଼ କରିବ । ସେଇ ରାତି ପାହିଗଲେ ନୂଆ ସକାଳଟିଏ ହେବ । ଯେଉଁ ସକାଳ ଧୋଇଦେବ ତା'ର ସବୁ ଦୁଃଖ, କଷ୍ଟ, ଯନ୍ତ୍ରଣା ଓ ବେଦନାର କାହାଣୀ । ଅପାପବିଦ୍ଧା କିଶୋରୀଟିର ସେଇ ପୁରୁଣା ରାତି ପାହି ଆସିଯାଏ । ସକାଳ ହେଲେ ସେଇ ସକାଳରେ କିଛି ହେଲେ ନୂତନତା ନଥାଏ ।

ଠକୋଇଟା, ଠକିକରି ପଳାଉଛି, ଦେହହାତ ଏତେ ବିନ୍ଧା ହେଉଥିଲା ଟିକେ ବି ଘଷି ଦେଲାନି, ଗଛରେ ପାଣି ଦେଲାନି, ରନ୍ଧାବଢ଼ାରେ ସାହାଯ୍ୟ କଲାନି... ଇତ୍ୟାଦି ନାନା ନିନ୍ଦା ଅଭିଯୋଗ ଦିଦିଙ୍କର । ନିର୍ବିକାର ତୃଷ୍ଣା ! ଚୁପ ରହିବାକୁ ବାଧ୍ୟ । ନହେଲେ ଦିଦି ମାରିବେ ପୁଣି ଦୁଇଦିନ ଉପାସ ବି ରଖିବେ, ତୃଷ୍ଣା ଭୀଷଣ ଡ଼ରିଯାଏ, ଚୁପଚାପ୍ କାମ କରିଯାଏ, ସକାଳୁ ରାତିଯାଏ, ଘଣ୍ଟା ଆଗେଇଯାଏ ।

ଏକ ନିଃସର୍ତ୍ତ ଆତ୍ମସର୍ମପଣରେ ସମର୍ପିତ । କିଛି ଅଭିଯୋଗ କି ଇଚ୍ଛା ଅନିଚ୍ଛାର ପ୍ରଶ୍ନ ହିଁ ନାହିଁ । ଯାହା ତାକୁ କୁହାଯିବ ସେ କରିବାକୁ ବାଧ୍ୟ । ସକାଳୁ ରାତି ଯାଏ କାମ ଖଟିଲେ ବି ତାକୁ ଆହୁରି କରିବାକୁ ହେବ । ନିଜ ପେଟ ପାଇଁ ଦାନା ଗଣ୍ଡାଏ, ଦେହକୁ କନା ଖଣ୍ଡେ ଯୋଗଡ଼ କରିବା ହିଁ ପ୍ରତ୍ୟେକ ମଣିଷ ପାଇଁ ସବୁଠାରୁ ବଡ଼ କାମ । ଏଇତକ ପାଇଁ ହିଁ ସବୁ ମଣିଷଙ୍କୁ ଏକ ମାରାଥାନ ରେସ୍‌ରେ ଦଉଡ଼ିବାକୁ ପଡ଼େ । ପଛରେ କିଏ ପଡ଼ିଯାଏ, କିଏ ବା ରାସ୍ତା ମଝିରେ ପଡ଼ିଯାଏ । କିଏ ଅବା ରହିଯାଏ ଏକଥା ଆଗରୁ ଦଉଡ଼ି ଚାଲିଥିବା ବ୍ୟକ୍ତିଟି ଦେଖିପାରେନି । ସେ ବାସ୍ ନିଜକଥା ହିଁ ଭାବି ଦଉଡ଼ିଚାଲେ ତାକୁ ସମସ୍ତଙ୍କୁ କାଟି ପ୍ରଥମ ହେବାକୁ ହିଁ ହେବ, ଏଇ ଚିନ୍ତା ହିଁ ତାର ପ୍ରଥମ । ଯିଏ ପାଖରେ ପଡ଼ିଯାଉଥିବ ତାକୁ ଉଠାଇବାକୁ ରହିଲେ କି' ପଛରେ ପଡ଼ିଥିବା ସାଥିଟିକୁ ଚାହିଁ ନିଜେ ଧିମେଇଗଲେ ସେ ଆଉ କେବେ ହେଲେ ପ୍ରତିଯୋଗିତାରେ ଭାଗ ନେବାର ସାର୍ମଥ୍ୟ ପାଏନା । ଆଶ୍ଚର୍ଯ୍ୟ ଏଇ ଜୀବନ !

ଆଶ୍ରମର ପ୍ରାଚେରୀ ଭିତରେ ରହି ନିଜପାଇଁ ସୁରକ୍ଷିତ ପୃଥିବୀର ସବୁକିଛି ଯୋଗାଡ଼ କରିବା ଆଉ ସମ୍ଭବ ନୁହେଁ ତେଣୁ ସେଦିନ ଆଶ୍ରମ ଗାଡ଼ିରେ ବସି ଆଉ କେତେକଙ୍କ ସହ ତାକୁ ବି ବାହାରିବାକୁ ହେଲା ଚାନ୍ଦା ପାଇଁ ସହରକୁ । ସେହି ଦାତା ମାନଙ୍କ ପାଖକୁ ଯେଉଁମାନେ ତା'ର ପଣତକାନିରେ ଅଯାଡ଼ି ଦେବେ ଦୁନିଆର ସବୁ ସୁଖ ସ୍ୱାଚ୍ଛନ୍ଦ୍ୟ । ଦିଦି ତାକୁ ପୂର୍ବରାତିରେ ଖୁବ୍ ବୁଝାଇଥିଲେ । ଜୀବନ ବଞ୍ଚାଇବାକୁ କିଛି ଜୀବିକା ତ କରିବାକୁ ହେବ । ବସି ଖାଇଲେ କିଏ ଯୋଗାଇବ

ତେଣୁ ଏଥିପାଇଁ ତାକୁ ବି କିଛି ଯୋଗାଡ କରିବାକୁ ହେବ । ସେ ବି ଖୁସି ହୋଇଥିଲା, ଯାହାହେଉ ଏଥର ସେ ବି କିଛି କରିପାରିବ । ଆଉ କାହାରି ଦୟା ବା ଦାନରେ ସେ ବଞ୍ଚିବ ନାହିଁ । ନିଜେ ନିଜ ପାଇଁ ରୋଜଗାର କରିବାର କ୍ଷମତା ତା' ଭିତରେ ବି ଅଛି ଜାଣି ସେ ପୁଲକିତ ହୋଇଗଲା । ଗୋଟେ ଆନନ୍ଦ ଆନନ୍ଦ ଭାବରେ ଅନନ୍ୟ ଅନୁଭୂତିରେ ରାତିସାରା ଶୋଇ ପାରିଲାନି । ଥଣ୍ଡା ରାତିରେ କାକର ଭିଜା ସ୍ପର୍ଶରେ ସେ ମାଦକିତ ହେଲା । ପବନର ମିଠା ଚୁମ୍ବନ ତା'ଭିତରେ ବି ମିଠା ଅନୁଭବଟିଏ ଆଣିଦେଲା । ସେ ଭାବିଲା ଗୀତଟିଏ ଗାଇବାକୁ । ନାଇଁ ସମସ୍ତେ ଉଠିପଡ଼ିବେ । ସେ ଭାବିଲା ତା'ର ଦୁଇଟି ସୁନ୍ଦର ଡ଼େଣା ହୋଇଯାଇଛି । ଯେଉଁଥିରେ ଖୁବ୍‌ଶକ୍ତି ଭରିଯାଇଛି । ଆଉ ସେଇ ଡ଼େଣାନେଇ ସେ ସାରା ପୃଥିବୀ ପୁଣି ପୃଥିବୀରୁ ଆକାଶ, ଆକାଶରୁ ଗ୍ରହ ଗ୍ରହାନ୍ତର ବୁଲୁଛି । ସେଇ ରାତି ତା' ପାଇଁ ନୂଆ ସକାଳର ଆବାହନ କରୁଥିଲା ମା'ର ମୁହଁ ତା'ର ମନେପଡୁଥିଲା । ମା ହିଲେ କେତେ ସୁନ୍ଦର ଦିଶୁଥିଲା ସେ ଭାବିଲା ।

ଯେତେବେଳେ ସେ ଗାଡ଼ିରେ ବସି ଯାଉଥିଲା ତା' ମନଭିତରେ ଅସଂଖ୍ୟ ରାଗର ରାଗିଣୀ ବାଜୁଥିଲା । ତା'ର ସାରା ଦେହ ମନ ରୋମାଞ୍ଚିତ ହୋଇଉଠୁଥିଲା । ବାହାର ପୃଥିବୀ ଦେଖିବା ଏଇ ତା'ର ପ୍ରଥମ । ଏକ ଅଦ୍ଭୁତ ଆବେଗରେ ସେ ଆବେଗାୟିତ ହୋଇଉଠୁଥିଲା । ଗାଡ଼ି ଯାଇ ବିରାଟ ଏକ ଅଫିସ୍ ଆଗରେ ରହିଲା । ଏକ ଅଜ୍ଞାତ କମ୍ପନ ତା'ର ପାଦଠାରୁ ମଥାଯାଏ ପ୍ରବାହିତହେଇ ଦେହ ଝିମ୍‌ଝିମ ହେବାକୁ ଆରମ୍ଭ କଲା । ମଥାରେ ବିନ୍ଦୁବିନ୍ଦୁ ଝାଳ ଜମିଗଲା । ଦିଦିଙ୍କ ସହ ସେ ଓହ୍ଲାଇଗଲା । ସେମାନେ ପହଞ୍ଚିଲେ ଗୋଟିଏ ସୁଦୃଶ୍ୟ ଅଫିସ୍ ଘର ସମ୍ମୁଖରେ । ବସିଲେ, ପିଅନ ଡ଼ାକିବାରୁ ସେମାନେ ଗଲେ । ଯଥା ସମ୍ଭବ ନିଜ ଭିତରର ଭୟକୁ ଗୋପନ ରଖିବାକୁ ଚେଷ୍ଟା କଲା ତୃଷା । ନମସ୍କାର ଆଦାନ ପ୍ରଦାନ ପରେ ସେମାନେ ବସିଲେ । ସମ୍ମୁଖରେ ମଧ୍ୟବୟସ୍କ ସୁଦର୍ଶନ ପୁରୁଷ ଜଣେ । ଘର ଚତୁର୍ଦ୍ଦିଗରେ ଥରେ ଆଖିବୁଲାଇ ଆଣିବାକୁ ଭାବୁଥିଲେ ବି ନିଜ ଭିତରର ଆଶଙ୍କା ପାଇଁ ସେ ମୁଣ୍ଡପୋତି ବସିରହିଲା । ଦିଦି ହିଁ ପ୍ରଥମେ କଥା ଆରମ୍ଭ କଲେ ।

ଅନୁଷଙ୍ଗିକ କଥାବାର୍ତ୍ତା ସରିବା ପରେ ଭଦ୍ରବ୍ୟକ୍ତି ଜଣଙ୍କ ଗୋଟିଏ ଚେକ୍ ବଢ଼ାଇଦେଲେ । ତାଙ୍କ ମୁହଁକୁ ସିଧା ନ ଚାହିଁଲେ ବି ତୃଷା ବୁଝିପାରୁଥିଲା ଯେ ତାଙ୍କ ଦୃଷ୍ଟି ତା'ରି ଉପରେ ହିଁ ନିବଦ୍ଧ ରହିଛି । ତା' ମନର ମାଟି ଟା ଓଦା ହୋଇଯାଉଥିଲା । ସେ ଅଣନିଶ୍ୱାସୀ ଭାବଟିଏ ଅନୁଭବ କରୁଥିଲା । କେମିତି ଗୋଟେ ଅହେତୁକ ଭୟ ତାକୁ ଗ୍ରାସ କରିଯାଇଥିଲା । ତା'ର ଅଭିଜ୍ଞତା ଦୁନିଆ ବିଷୟରେ ବେଶୀ ନୁହେଁ । ତଥାପି ସେ ଜାଣିଥିଲା ଯେ ଭଲଠାରୁ ଖରାପ ଲୋକହିଁ ଅଧିକ ଅଛନ୍ତି । ତା' ମନରେ କେବେହେଲେ କୌଣସି ରଙ୍ଗୀନ୍ ପ୍ରଜାପତି ଉଡ଼ି ନଥିବାରୁ ସେ ରଙ୍ଗହୀନ ଜୀବନ କଥା ହିଁ ଅଧିକ ଜାଣିଥିଲା ।

ତୁମର ନାଁ କଣ ଝିଅ ? ପ୍ରଶ୍ନଟି ପଚାରି ଦେଇ ଭଦ୍ରବ୍ୟକ୍ତି ନିଜେ ବି ଅପ୍ରସ୍ତୁତ ବୋଧ କଲା । ତାଙ୍କର ମନତଳର କୌତୁହଳ ଯେ ଅପ୍ରତ୍ୟାଶିତ ଭାବରେ ଶବ୍ଦ ହୋଇ ଓଠରୁ ଖସିସାରିଛି ଏକଦମ ଆଶ୍ଚର୍ଯ୍ୟ ହୋଇଗଲେ ସେ । କ'ଣ ଅବା କରିନ୍ତେ । ବେଳେବେଳେ ଓଠ ବି ନିଜ ଇଚ୍ଛାରେ ନଥାଏ ଏକଥା ସେ ବୁଝିସାରିଥିଲେ । ତୃଷା ବି ଅବାକ୍ ହୋଇଗଲା । ଆଜିଯାଏ ଏପରି ନରମ ସ୍ୱରରେ ଝିଅ ବୋଲି କେହି ତାକୁ ଡ଼ାକି ନଥିଲେ । ସେ ଥିଲା ଜଣେ, ଯିଏ ବେଳଅବେଳରେ ସ୍ୱରରେ ଅହେତୁକ ମମତା ଭରି ତାକୁ ଝିଅ ଡ଼ାକୁଥିଲା । କିନ୍ତୁ ସେଇ ସ୍ୱର ତ କେଉଁଦିନ ମରିହଜି ଗଲାଣି । ପବନରେ ବା ସେଇ ଶବ୍ଦ ଏତେଦିନ ପରେ ଶୁଣାଯାଆନ୍ତା କେମିତି ?

ନିର୍ବିକାର, ନୁରଉାପ ଅଥଚ ତୀକ୍ଷ୍ଣ ସ୍ୱରରେ ସେ ଜବାବ୍ ଦେଲା- ତୃଷା ! ସୁନ୍ଦର ନାମଟିଏ । କିଏ ଦେଇଛନ୍ତି ? ଦିଦି । ଆଶ୍ରମରେ । କେବେଠାରୁ ଆଶ୍ରମରେ ଅଛ ? ତୁମର ଆଉ କିଏ ଅଛନ୍ତି ? ଏଥର କିନ୍ତୁ ଉତ୍ତେଜିତ ହୋଇପଡ଼ିଲା । ମୋର କେହିଥିଲେ ମୁଁ ସେଠାରେ ରହନ୍ତି କାହିଁକି ? ମୁଁ ବହୁବର୍ଷ ଧରି ସେଠାରେ ଅଛି, ସେଇ ମୋର ଘର, ପରିବାର ସବୁକିଛି । ସେମାନେ ଉଠିଲେ । ବଦାନ୍ୟ ବ୍ୟକ୍ତିଙ୍କର ବଦାନ୍ୟତା ଆଗରେ ମଥାନତ କରି ମନେମନେ ସେ ଭାବିଲା ଦୁନିଆରେ ଏଇମାନେ ହିଁ ତ ଭଗବାନ୍ । ଦିନପରେ ଦିନ ଗଡ଼ି ଚାଲିଲା ଚିରାଚରିତ ରୀତିରେ ।

ହଠାତ୍ ଦିନେ ଦିଦି ଧାଇଁଧାଇଁ ଆସିଲେ । ବାବୁ ଆସିଛନ୍ତି ତୋତେ ଦେଖାକରିବାକୁ । ତୃଷା ଅବାକ୍ ହୋଇଗଲା ! ରୋଷେଇ ଘରୁ ଯିବାବେଳକୁ ତାର ଦେହ ହାତ ଝିମ୍‌ଝିମ୍ ହେବାକୁ ଆରମ୍ଭ କଲା, ସେ ଖୁବ୍ ଭୟଭୀତ ହୋଇପଡ଼ିଲା ଏକ୍‌ଦମ୍ ଥିଲା ତାକୁ ଦେଖା କରିବାକୁ କେହି କେବେ ଆସିବ ଏହା ତାର ସ୍ୱପ୍ନର ବାହାରେ ଥିଲା । ବହୁକଷ୍ଟରେ କିଛି ପାଠ ପଢ଼ିଥିବା ତୃଷା ଚାକିରୀଟିଏ କରି ନିଜ ପେଟ ପୋଷିବା ସହ କିପରି ଆଶ୍ରମ ପାଇଁ କିଛି କରିପାରିବ ସେଇ ଚିନ୍ତାରେ ହିଁ ମଗ୍ନ ରହୁଥିଲା । ଦୁନିଆରେ କେହି ନାହାଁନ୍ତି ତା'ର ତାହେଲେ ସେ ବାବୁ ତାକୁ ଦେଖା କରିବାକୁ ଆସିଛନ୍ତି କାହିଁକି ? ଦିଦିଙ୍କ ଆଖିର ବିସ୍ମୟ ସହ ଆଶ୍ରମର ସମସ୍ତଙ୍କ ସନ୍ଦେହୀ ଦୃଷ୍ଟି ତା ଉପରେ ଘୁରି ବୁଲୁଥିଲା । ବାରଣ୍ଡାଟି ପାର ହେବାକୁ ଯେମିତି ଗୋଟିଏ ଯୁଗ ଲାଗିଲା । ସମସ୍ତଙ୍କ ଭିତରେ ଏକ ଅସ୍ପଷ୍ଟ ଚାପା ଗୁଞ୍ଜରଣ ତା' ଭିତରେ ବି ସନ୍ଦେହ ସହ ଏକ ଭିତୀ ସଞ୍ଚାର କଲା । ଧିର ପାଦରେ ସେ ଯାଇ ପରଦା ପଛରେ ଠିଆ ହେଲା । ପରଦାଟି ହଲିବା ଦେଖି ଭଦ୍ରବ୍ୟକ୍ତି ବୋଧହୁଏ ଜାଣିଗଲେ ସେ ଆସିଯାଇଛି ବୋଲି । ତାଙ୍କର ସ୍ନେହଛଳଛଳ ଆବେଗିତ ସ୍ୱର ଚତୁର୍ଦ୍ଦିଗରେ ପ୍ରତିଧ୍ୱନିତ ହେଲା ।

ଆସ ଝିଅ ! ତୁମ କଥା ମନେପଡ଼ିଲା ତ ଚାଲିଆସିଲି । ତା ମୁହଁର ପ୍ରଶ୍ନବାଚୀ ପଢ଼ିବାକୁ ତାଙ୍କୁ ସମୟ ଲାଗିଲାନି । ସେ ମୁହଁ ପୋତିଲା । ତୁମ ମା'ଙ୍କର ନାମ କ'ଣ ଅନିମା ଥିଲା ? ହଠାତ୍ ଯେମିତି ବିରାଟ ବିସ୍ଫୋରଣଟିଏ ହେଲା । ଯାହାର ଶବ୍ଦରେ ପୃଥିବୀର କୋଣ ଅନୁକୋଣ ଦୋହଲିଗଲା । ତା' ମା'ର ନାମ ଅନିମା ଥିଲା ବୋଲି କେବଳ ଜାଣେ ତୃଷା ! ଆଉ କେହି ନୁହେଁ, ତାହେଲେ ଏହି ବ୍ୟକ୍ତି ଜଣକ ଜାଣିଲେ କେମିତି ?

ସେ ଅନେକ କଥା ! ଅନେକ କାହାଣୀ । ତୁମ ମା'ଙ୍କୁ ମୁଁ ଜାଣେ । କେଉଁ ପରିସ୍ଥିତିରେ ପଡ଼ି ଗୋଟିଏ ଭଲଘରର ଝିଅ ହୋଇ ବି ସେ କେତେ ଛୋଟକାମ କରିବାକୁ ବାଧ୍ୟ ହେଲା ଏକଥା ବି ଜାଣେ । ହେଲେ ସେସବୁ କହିବାକୁ ଏବେ

ମୋତେ ସମୟ ନାହିଁ ଏଠାରେ କହିବା ମଧ୍ୟ ଠିକ୍ ନୁହେଁ । ତୁମେ ମୋ ସହ ଚାଲ ।

କୁଆଡ଼େ ?

ମୋ ଘରକୁ !

ଆଶ୍ଚର୍ଯ୍ୟ ହୋଇଗଲା ସେ ।

ତା' ମୁହଁରୁ କଥା ପଦେ ବି ବାହାରିଲା ନାହିଁ ।

ଘର ?

ଏଇ ଶବ୍ଦଟି ତା'ପାଇଁ ନିହାତି ଅପରିଚିତ, ଅବାସ୍ତବ ବି, ସ୍ୱପ୍ନ ପରି କ'ଣ ଯେ ଘଟିଚାଲିଛି ସେ କିଛି ବୁଝିପାରୁନଥିଲା ।

ତୁମକୁ ମୁଁ ପୋଷ୍ୟକନ୍ୟା ଭାବରେ ମୋ ଘରକୁ ନେବା ପାଇଁ ଚାହେଁ ।

ଏତିକି ଶବ୍ଦ ପାଇଁ ଏଇ ଦିନଟି ପାଇଁ କେତେ ପ୍ରତୀକ୍ଷା ଥିଲା ତା'ର । ଅଥଚ ଆଜି ସେ ଖୁସି ହୋଇପାରୁନାହିଁ କାହିଁକି ? ଜାଣିବାକୁ ଚାହେଁ ତା' ମା' ବିଷୟରେ, ତା ନିଜ ବିଷୟରେ ସବୁକିଛି ! ତା' ପରେ ଯାଇ ଯାହା !

କିଏ ଏହି ବ୍ୟକ୍ତି ? ଅଥଚ ସେ କିଛି କହିଲେ ନାହିଁ । ସେ ଯିବାକୁ ବାଧ୍ୟ ହେଲା । ଆଶ୍ରମର ତାହା ହିଁ ନିୟମ । ପୋଷ୍ୟକନ୍ୟା ଭାବରେ କିଏ ନେବାକୁ ଚାହିଁଲେ ଝିଅମାନେ ଆଶ୍ରମ ଛାଡ଼ିବାକୁ ବାଧ୍ୟ ।

ସେ ଆଶ୍ରମ ଛାଡ଼ିବାକୁ ଇଚ୍ଛା କରୁନଥିଲା । ଅଥଚ ଗଲା । ସେ ଜାଣେ ପୃଥିବୀରେ କେବେ ବି କିଛି ତା' ଇଚ୍ଛାରେ ହେବ ନାହିଁ । ଯେଉଁ ଦିଦି ତାକୁ ଏତେ ଯନ୍ତ୍ରଣା ଦେଉଥିଲେ, ଏତେ ତିରସ୍କାର କରୁଥିଲେ, ଆଜି ତାକୁ ଛାତିରେ ଚାପିଧରି ଖୁବ୍ କାନ୍ଦିଲେ । ଆଶ୍ରମର ସବୁ ଝିଅ ଏମିତିକି ପୋଷା ବିଲେଇ, କୁକୁର, ତା' ହାତ ଲଗା ସବୁ ଗେଣ୍ଡୁଗଛମାନେ ବି ତାକୁ ବିଦାୟ ଦେବାବେଳେ ଖୁବ୍ ଲୁହ ଝରାଇଲେ । ଅଥଚ ବହୁତ କିଛି କହିବାକୁ ଯାଇ, କାନ୍ଦିବାକୁ ଚାହିଁ ବି ସେ

ପାରୁନଥିଲା । ତାକୁ ସବୁକିଛି ମିଛ ଲାଗୁଥିଲା, ଅବାସ୍ତବ ମନେ ହେଉଥିଲା । ସେ ନିଃସ୍ତରଙ୍ଗ, ନିର୍ବିକାର ଝିଅଟାଏ । ପୃଥିବୀପୃଷ୍ଠରେ କ'ଣ ଘଟୁଛି ତା'ର ଯେମିତି କିଛି ଯାଏ ଆସେ ନାହିଁ । ସେ ପଥର ଦେହରେ ନିହାଣମୂନରେ ଖୋଦିତ ହୋଇଥିବା ଶିଳାଲିପିଟିଏ ତାର ଜୀବନ ନାହିଁ । ଭାବିବାଶକ୍ତି ନାହିଁ, ଖାଲି ଚାହିଁ ରହିବା ବ୍ୟତୀତ ତା'ର ପଲକହୀନ ଚକ୍ଷୁ ଦୁଇଟି ଆଉ କିଛି କହି ପାରିବନାହିଁ । ଅଥଚ ତା' ହୃଦୟ ଅରଣ୍ୟରେ ନିଆଁଟାଏ ହୁତ୍‌ହୁତ୍ କରି ଜଳୁଥିଲା, ଯେଉଁ ବାଡ଼ବାଗ୍ନୀ ହୁଏତ ଜାଳି ଦେଇପାରେ ସାରା ଦୁନିଆଁ !

କେବେ ଥରେ ଆଶ୍ରମରୁ ଯାଇଥିଲେ ସେମାନେ ପୁରୀ ଶ୍ରୀକ୍ଷେତ୍ର । ସେଠି ଦିଦି କହୁଥିଲେ ଏଇ ହେଲେ ଜଗତଯାକର ଠାକୁର । ସବୁ ମଣିଷର ସୁଖ, ଦୁଃଖର ସାକ୍ଷୀ । ଅନ୍ତର ସହିତ ଡ଼ାକିଲେ ସେ ସବୁ ଦୁଃଖ ହରଣ କରନ୍ତି । ତାଙ୍କର ବିରାଟ ଆଖି କିନ୍ତୁ ତାକୁ କେମିତି ଗୋଟେ ଅଦ୍ଭୁତ ଲାଗିଥିଲା, ଯେଉଁ ଆଖିର ମାୟାରେ ସେ ସବୁ ଭୁଲିଯାଇ ଆତ୍ମ ବିସ୍ମୃତ ହୋଇଥିଲା । ଆଶ୍ରମରେ ସମସ୍ତଙ୍କୁ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରାଙ୍କ ଫଟୋ ଦିଆହୋଇଥିଲା । ସେଇ ଛୋଟ ଫଟୋଟିକୁ ସେ ସାଇତି ରଖିଛି । ତାଙ୍କରି ପାଖକୁ ଯାଇ ସେ ନୀରବରେ କିଛି ସମୟ ସେଇ ଆଖି ଦୁଇଟିକୁ ଚାହିଁ ରହିଲା । ଆଖିରୁ ଦୁଇବୁନ୍ଦା ଲୁହ ଝରିଗଲା ତା'ର ! ସେ ଯିବାକୁ ବାହାରିଲା ।

କ'ଣ ତା'ର ଭବିଷ୍ୟତ ସେ କିଛି ଜାଣେନା । ସେ ଖାଲି ଗୋଟିଏ ଟ୍ରେନ୍‌ରେ ବସିଯାଉଛି, କିନ୍ତୁ ଗନ୍ତବ୍ୟସ୍ଥଳ ସେ ଜାଣେନାଁ । ସେଇ ବଡ଼ଗାଡ଼ିରେ ବସି ସେମାନେ ପହଞ୍ଚିଲେ ବିରାଟ ଗୋଟେ ଲୁହାର ଗେଟ୍ ପାଖରେ । ଭଦ୍ରବ୍ୟକ୍ତି ଗାଡ଼ିରୁ ଓହ୍ଲାଇବାକୁ ତାକୁ ଇଶାରା କଲେ । ସେ ଧିରେ ଓହ୍ଲାଇ ତଳେ ଠିଆ ହେଲା । ସେ ଜାଣିନଥିଲା ତା' ପାଦତଳର ମାଟିର ଦୃଢ଼ତା କେତେ ! ସେ ମାଟି ତାକୁ ଗୋଟେ ଆଶ୍ରା ଦେବ କି ଧସେଇ ପଡ଼ିଯିବ, ଆଉ ତାକୁ ବି ମାଟିରେ ମିଶାଇଦେବ । ତା' ମଥା ଉପରେ ଥିଲା ବିରାଟ ଛାତଟିଏ !

ହଠାତ୍ କେଉଁଠୁ ଗୋଟିଏ ଯୁବକ ଦଉଡ଼ି ଆସିଲା ଖୁବ୍‌ଯୋର୍‌ରେ ଜାବୁଡ଼ି ଧରିଲା ତାକୁ । ଆସିଗଲା, ଆସିଗଲା ! ମୋ କଣେଇ ଦିଅ, ଦିଅ ବୋଲି ତାକୁ

ଏମିତି ହଲାପଟା କଲା ଯେ, ସେ କ'ଣ କରିବ କିଛି ବୁଝିପାରିଲାନି ଅବାକ୍ ହୋଇଯିବା ସହ ସେ ଏତେ ଭୟଭୀତ ହୋଇପଡ଼ିଲା ଯେ କେବଳ ଠକ୍‌ଠକ୍ ହୋଇ ଥରିବାକୁ ଲାଗିଲା । ତା' ଆଖିର ଧାରଧାର ଲୁହ ସହ ଏମିତି ଏକ ପରିବେଶ ସୃଷ୍ଟି ହେଲା ଯେ ସେ କିଂ କର୍ତ୍ତବ୍ୟ ବିମୂଢ଼ ହୋଇ କେବଳ ଠିଆ ହୋଇରହିଲା । ଘର ଭିତରକୁ ଯାଇଥିବା ବ୍ୟକ୍ତି ଜଣକ ଦଉଡ଼ି ଆସିଲେ, ସାଥିରେ ଜଣେ ସ୍ତ୍ରୀଲୋକ । ସେମାନେ ଦୁହେଁ ଦୁଇପଟୁ ଭିଡ଼ିଧରିଲେ ପିଲାଟିକୁ ଟାଣିଟାଣି ଭିତରକୁ ନେଇଗଲେ । ତାଲା ପଡ଼ିବାର ଶବ୍ଦ ଶୁଭିଲା । ସେଇ ଗୋଟିଏ ଅବସ୍ଥାରେ ଠିଆ ହୋଇରହିଲା ତୃଷା ! ସେମାନେ ଆସିଲେ । ତା'ର ଟିକେ ମୁଣ୍ଡ କାମ କରୁନି ତ ! କ'ଣ ଡ଼ରିଗଲ କି ? ଆସ, ଆସ । ଡ଼ର ନାଁ, ସେ ଘର ଭିତରେ ତାଲାପଡ଼ି ରହିଛି ଆଉ ଆସିବନାହିଁ । ତା'ର ପାଦ ଚଳୁନଥିଲା । ବାମନ ଅବତାରରେ ଯେମିତି ବଳିର ମଥା ଉପରେ ପ୍ରଭୁପାଦ ଚାପିଦେଇଥିଲା । ତାକୁ ମନେ ହେଉଥିଲା ସେଇ ଏକପାଦଭୂମିତଳେ ଚାପି ଯାଇଛି ସମଗ୍ର ପୃଥିବୀର ଆୟୁଷ । ଆଉ ଘୁରିବ ନାହିଁ ।

ସମସ୍ତେ ମୃତ ହୋଇଯାଇଛନ୍ତି । ଆଉ ଚଳଚଞ୍ଚଳ ହେବନାହିଁ କିଛି ଅଥଚ ସବୁକିଛି ଥିଲା ପୂର୍ବପରି ।

ସେ ବାଧ୍ୟରେ ଆଗେଇଲା । ଛାତିଟା ଯୋର୍‌ରେ ଥରୁଥିଲା ମନରେ ଏବେ ବି ସେଇ ଦୃଶ୍ୟଟା ଖେଳିଯାଉଛି । ଆଖିଟା ସନ୍ତ୍ରସ୍ତ ହୋଇ ଖୋଜିଯାଉଛି ।

ଧିରେଧିରେ ସେମାନେ ଗୋଟିଏ ଶିଢ଼ିପାହାଚ ପାଖରେ ପହଞ୍ଚିଲେ । ପାଖରେ ପଡ଼ିଥିଲା ସୋଫାସେଟ୍ । ସେମାନେ ବସିଲେ । ହାତରେ ଚା ଧରି ଗୋଟିଏ ଲୋକ ପହଞ୍ଚିଲା । ମୁଁ ଚାହା ପିଏନାହିଁ କହିଲେ ବି ସେମାନେ ଶୁଣିଲେ ନାହିଁ । ତାକୁ ବାଧ୍ୟକରି ଚା ବିସ୍କୁଟ ଖୁଆଇଲେ । ସେ ଦେଖିଲା । ବିରାଟ ବାରଣ୍ଡା । ତା' ତଳକୁ ସୁନ୍ଦର ଫୁଲ ବଗିଚା । ଗୋଟିଏ ଧାଡ଼ି ଘର । ସବୁକିଛି ପରିଷ୍କାର, ପରିଚ୍ଛନ୍ନ । ଅଥଚ କେହି ଲୋକ ନାହାନ୍ତି । କିଏ ଏମାନେ ? କାହିଁକି ଏଠାକୁ ଆଣିଛନ୍ତି ତାକୁ ?

ଦିଦି କହୁଥିଲେ ସହରର ଲବ୍ଧ ପ୍ରତିଷ୍ଠିତ ବ୍ୟବସାୟୀ ଚନ୍ଦ୍ରଶେଖର ମହାପତ୍ର ତାକୁ ଝିଅ କରି ନେଉଛନ୍ତି, ସେଇଟା କୁଆଡ଼େ ତାର ଭାଗ୍ୟ ! କିନ୍ତୁ କାହିଁକି ? ସେ ବ୍ୟସ୍ତ ହେଉଥିଲା ଭିତରେ ଭିତରେ । କେତେବେଳେ ସେ ସବୁକଥା ଶୁଣିବ ?

ଅଥଚ ସେମାନେ ତାକୁ କିଛି କହିଲେ ନାହିଁ । ଶିଢ଼ି ଦେଇ ଉପରକୁ ଉଠିବା ପରେ, ସେଠି ବି ଗୁଡ଼ାଏ ଘର ଦେଖିଲା ସେ । ବାରଣ୍ଡାର ଶେଷମୁଣ୍ଡର ଘରଟି ତା'ର ବୋଲି ସ୍ତ୍ରୀ ଲୋକଜଣଙ୍କ କହିଲେ । ସମ୍ଭବତଃ ଭଦ୍ରବ୍ୟକ୍ତିଙ୍କର ସ୍ତ୍ରୀ ।

ମଥାରେ ବିରାଟ ସିନ୍ଦୁର ଟିପା ନାହିଁ ସତ ମଧ୍ୟବୟସ୍କା ନାରୀଙ୍କ ଦେହରେ । ଆଭିଜାତ୍ୟର ଛାପଟା ସ୍ପଷ୍ଟ ।

ତମେ ଏଇଠାରେ ଟିକେ ବିଶ୍ରାମ ନିଅ । ମୁଁ ଟିକେ ଜିତୁ ପାଖରୁ ଆସୁଛି ।

ତଳୁ ଗୋଟିଏ ବିରାଟ ଚିତ୍କାର ଶୁଭିଲା, ସ୍ତ୍ରୀଲୋକ ଜଣକ ଯୋର୍‌ରେ ଦୌଡ଼ିଗଲେ, ଯିବାକୁ ଚାହିଁ ବି ସେ ଯାଇପାରିଲାନି । କ'ଣ ଗୋଟେ ଯେମିତି ତା' ପାଦକୁ ଜାବୁଡ଼ି ଧରିଛି, ସେ ପଙ୍ଗୁ ହୋଇଯାଇଛି । ଗୋଟିଏ ଭୟ, ଗୋଟିଏ ଶିହରଣ ତା' ଦେହରେ ଖେଳିଗଲା । ସେ ଘର ଭିତରେ ପଶି, ଯୋରରେ କବାଟ ବଂଦ କରିଦେଲା ଏବେ ବି ସେ ଥରୁଥିଲା, କେତେ ସମୟ ସେହିପରି ସେ ବସିରହିଛି ସେ ଜାଣିନି । ସମ୍ବିତ ଆସିଲା ବେଳକୁ କବାଟରେ କେହି କରାଘାତ କରୁଛି । ଉଠିବାକୁ ବି ସେ ବଳ ପାଉନଥିଲା । ସବୁ ଶକ୍ତି ସଞ୍ଚୟ କରି ସେ ଉଠିଲା । ସେଇ ରହସ୍ୟମୟ ବ୍ୟକ୍ତି ଆଗରେ । ପାଖରେ ସ୍ତ୍ରୀ ଲୋକଜଣକ । ସେମାନେ ଘର ଭିତରକୁ ଆସିଲେ ।

ସେ କ'ଣ କହିବ, ପଚାରିବ କିଛି ବୁଝିପାରୁନି । ସତର ବର୍ଷରେ ସତୁରୀବର୍ଷର ଅଭିଜ୍ଞତା ତା'ର, ତେଣୁ ସେ ଚୁପ୍‌ଚାପ୍ ବସିରହିଲା । ଭଦ୍ରବ୍ୟକ୍ତି କଥା ଆରମ୍ଭ କଲେ । ୟେ ମୋର ଭଉଣୀ ଚନ୍ଦ୍ରକାନ୍ତା !

ଜିତୁ ତା'ର ପୁଅ ! ମୋ ମା' ? ପାଟିରୁ ବହୁ କଷ୍ଟରେ ଏତିକି ହିଁ ଶବ୍ଦ ବାହାରିଲା ତୃଷାର । ଚୁପ କର ! ସେ ଚଣ୍ଡାଲୁଣୀର ନାଁ ଧରନି । ଗର୍ଜି ଉଠିଲେ

ସ୍ତ୍ରୀ ଲୋକଜଣକ । ସେ ଚମ୍‌କି ଉଠିଲା । ଚୁପ୍ ହୋଇଗଲା । ତା' ମା' ଏମାନଙ୍କର କ'ଣ ! ଏମାନେ କେମିତି ଜାଣିଲେ ସେ ଅନିମାର ଝିଅ ବୋଲି ।

ତୋ ଚେହେରାଟା ପୂରା ତୋ ମା' ପରି ଦିଶୁଥିବାରୁ ପ୍ରଥମ ଦିନରୁ ମୁଁ ଜାଣିପାରିଲି ତୁ ଅନିମାର ଝିଅ ଭଦ୍ରବ୍ୟକ୍ତି କହିଲେ । ତାକୁ ସବୁ ରହସ୍ୟମୟ, ବାଷ୍ପାଚ୍ଛନ୍ନ ଲାଗୁଥିଲା । ଆସ୍ତେ ଆସ୍ତେ ସବୁ ଜାଣିପାରିବ । ତମେ ଏଠାରେ ରୁହ । କେମିତି ଦିନ ଯାଇ ରାତି, ରାତି ଯାଇ ଦିନ ହେଉଥାଏ ସେ ଜାଣି ପାରୁନଥାଏ । ସେମିତି ଦୁଇଦିନ କଟିଲା । ଖାଇବା ସମୟରେ ତାକୁ ତଳକୁ ଯିବାକୁ ହେଉଥିଲା । ସେଇ ଚିତ୍କାର ଆଉ ଯୁବକଟି ତା'ର ମନେପଡ଼ିଲେ ତା ତଣ୍ଟି ପାଖରେ ଖାଦ୍ୟ ଅଟକି ଯାଉଥିଲା । ବେଳେବେଳେ ସେଇ ବିକଟ ଚିତ୍କାର ଗୋଟିଏ ଘର ଭିତରୁ ଭାସି ଆସୁଥିଲା । ସ୍ତ୍ରୀ ଲୋକଜଣକ ଦଉଡ଼ି ଯାଉଥିଲା । ସେ ଦଉଡ଼ି ଆସୁଥିଲା ଉପରକୁ । ରୁମ୍ ବନ୍ଦକରି ସେ କାନ୍ଦିଉଠୁଥିଲା ହେ ଭଗବାନ୍ କେଉଁଠିକୁ ଆଣିଲ ମୋତେ !

ଅବ୍ୟକ୍ତ ଏକ ବେଦନାରେ ଛଟପଟ ହୋଇ ସେ ମୁକ୍ତି ପାଇଁ ବ୍ୟାକୁଳ ଭାବରେ ସେଇ ଜଗନ୍ନାଥଙ୍କୁ ଡ଼ାକିବାକୁ ଲାଗିଲା । ସେଇ ଛୋଟ ଫଟୋ ଭିତରର ବଡ଼ଠାକୁର କିନ୍ତୁ ତା' ପାଇଁ ଅସହାୟ ଥିଲେ । ସେ ଗୋଟିଏ ବନ୍ଦୀର ଜୀବନ ବିତାଇବାକୁ ଲାଗିଲା । ଚତୁର୍ଦିଗରେ ବିରାଟ୍ ମେଘନାଦ ପାଚେରୀ । ଗେଟ୍‌ରେ ଜଗିଥିବା ଦରୱାନ୍ । କେହି ଲୋକବାକ ଯିବା ଆସିବା ନାହିଁ । କାଉ କୋଇଲିଟେ ସାଥି ନାହାଁନ୍ତ, ଖାଇବା ବେଳେ ସେ ଦୁଇଜଣଙ୍କ ସହ ଦେଖାହୁଏ, ସେମାନେ ନୀରବ ଥାଆନ୍ତି । ଏହିପରି କିଛି ଦିନ ଯିବା ପରେ ଧିରେଧିରେ ସେ ଟିକେ ସହଜ ହେବାକୁ ଚେଷ୍ଟା କଲା । ଏଇ କିଛିଦିନ ହେଲା ସେ କିଛି ଚିତ୍କାର ଶୁଣିନାହିଁ । ତେଣୁ ଟିକେ ଆଶ୍ୱସ୍ତ ହୋଇଛି, ଭୟଟିକେ କମିଛି । ଚାରିପଟେ ବଡ଼ ୟୁକାଲିପ୍‌ଟାସ୍ ଆଉ ଦେବଦାରୁ ଗଛ ପାଚେରୀକୁ ଲାଗିଲାଗି ତା ଭିତରୁ ସୂର୍ଯ୍ୟଙ୍କ କିରଣ ଦେଖଯାଏ, ଆଉ ସୁସ୍ଥ ପବନର ସଂଗୀତ ବି ଶୁଣାଯାଏ । ତା' ଭିତରେ ବିରାଟ ଫୁଲ ବଗିଚା ।

ଲୋକଟିଏ କାମ କରୁଛି ବଗିଚାରେ । ରୋଷେଇ କରିବାକୁ ବି ଲୋକ ଅଛନ୍ତି । ସେ ଏବେ ଏଇ ଘର ବିଷୟରେ କିଛି କିଛି ଜାଣିଲାଣି ମାତ୍ର ଜାଣିପାରୁନି ଆଉ କିଛି ।

ତାଙ୍କୁ ଭେଟିବାକୁ କେହି ଆସନ୍ତି ନାହିଁ ମାତ୍ର ଖାଇବା ଟେବୁଲରେ ମୁହଁ ପୋତି ବସିଖାଉଥିବା ବେଳେ ତାକୁ ଭଦ୍ରବ୍ୟକ୍ତି ଜଣକ କିଛିକିଛି କଥା ପଚାରନ୍ତି ।

ଏଇ ଯେମିତି କିଛି ଅସୁବିଧା ହେଉଛି କି ରହିବାରେ ! ଖାଇବାରେ ପିନ୍ଧିବାରେ ! ନାଁଇ...... ସଂକ୍ଷିପ୍ତ ଉତ୍ତର ତୃଷାର ।

ଆସିବା ଦିନ ସେ ଦେଖିଥିଲା ତା ଘର ଆଲମାରୀରେ ଥାକଥାକ ଶାଢ଼ୀ ଓ ଭଲିକି ଭଲି ଡ୍ରେସ୍ । ସଜ ଜିନିଷର ଅଭାବ ନାହିଁ ।

ଆଲମାରୀ ଭର୍ତ୍ତି ବହି ।

କାହାର ଏସବୁ ?

ପଚାରିନି କେବେ, ଉତ୍ତର ପାଇଛି ! ଏସବୁ ତୁମର । ଚନ୍ଦ୍ରକାନ୍ତ କହିଥିଲେ ଆସିବାର ଦୁଇଦିନ ପରେ । ଆହୁରି କହିଥିଲେ ସେ' ଯାହା ଇଚ୍ଛା ତାଙ୍କୁ ଡ଼ାକିପାରେ, ଏଘର ତା' ନିଜର ବୋଲି ସେ ଭାବୁ ଇତ୍ୟାଦି ମାତ୍ର ତା'ପରେ କେବେ ସେ କାହା ସହ କିଛି କଥା ହୋଇନାହିଁ, ସହଜ ହୋଇପାରିନି ସେମାନଙ୍କ ସହ, ନିଜର ଭାବି ପାରିନି ସେଇ ମଣିଷ ଦୁହିଙ୍କୁ ମନଭିତରେ ସେଇ ପ୍ରଶ୍ନର ଘୂର୍ଣ୍ଣି ସବୁ ସମୟରେ । ତା' ମା' ବିଷୟରେ ସତ୍ୟତାଟା କ'ଣ ? ହେଲେ ସେ ଉତ୍ତର ପାଇନି । ସେଇ କନ୍ୟାଶ୍ରମର ଶାଢ଼ୀ ପିନ୍ଧୁଛି ଏ ଯାବତ୍ । ବହିପଢ଼ାରେ ସମୟ କଟୁଛି ତା'ର । ତା'ର ଜୀବନ ଯେ ଏମିତି ଏକୁଟିଆ ହୋଇଯିବ, ଚାରିକାନ୍ଥ ଦିଆ ଗୋଟିଏ ଇଟା ସିମେଣ୍ଟରେ ବିରାଟ ଘର ହିଁ ଘର ବୋଲି ତାକୁ ମିଳିଛି ଏକଥା ଭାବିଲେ ତାକୁ ଖୁବ୍. କଷ୍ଟ ହେଉଥିଲା, ହତାଶ୍ ଲାଗୁଥିଲା । କାନ୍ଦକାନ୍ଦ ଲାଗୁଥିଲା । ଗୋଟିଏ ସ୍ନେହୀ ମା'ର ଛଳଛଳ ଆଖିର କରୁଣ ଚାହାଣୀ ତା ସାମ୍ନାରେ ନିର୍ଝରିଣୀ ପରି ବହିଯାଉଥିଲା ।

ଦିନେ ଚନ୍ଦ୍ରକାନ୍ତ ଆସିଲେ ତା' ରୁମ୍‌କୁ । ସେ କେବେ ତଳକୁ ଯାଏନା । ସେ ନିଜକୁ ନିଜେ ହିଁ ଏମିତି ରଖିଛି । ସେଇଠି ସେ ନିଜେ ରାଣୀ ହୋଇ କେତେ

କର୍ମଚାରୀଙ୍କୁ ହୁକୁମ୍ କରୁଥାଏ ପୁଣି କେତେ ଦରିଦ୍ରଙ୍କର ସେବା ବି । ତା' ମନର ମାଲିକ ତ ସେ ନିଜେ, ଦେହର ସିନା ନୁହେଁ । କ'ଣ ଯେମିତି କହିବେ କହିବେ ହେଉଛନ୍ତି ଅଥଚ ଶବ୍ଦଗୁଡ଼ା ତଣ୍ଟିର ଦରଜା ସେପଟେ ଅଟକି ଯାଉଛନ୍ତି ଅତ୍ୟନ୍ତ ବେପରୁଆ ହୋଇ । ଏକ୍‌ଦମ୍ ନାରାଜ ମନର ବୋଲି ମାନିବାକୁ କିନ୍ତୁ ସେ ଆଜି ଦୃଢ଼ ପ୍ରତିଜ୍ଞା ନେଇ ଆସିଛନ୍ତି ନିଶ୍ଚୟ । ତାଙ୍କ କହିବା କଥା କହିସାରି ହିଁ ଯିବେ । ମାସଟିଏ ବିତିଗଲାଣି କିଛି କହିନାହାନ୍ତି ଝିଅଟିକୁ । ଏଭିତରେ ବଡ଼ଘରେ ଚଳିବାର କିଛି ଆଦବକାଇଦା ବି ଝିଅଟି ଶିଖିଗଲାଣି, ଆଉ ଅସୁବିଧା କିଛି ନାହିଁ । ସେ ଆରମ୍ଭ କଲେ ତମେ ସେଇ ପୁରୁଣା ଲୁଗାଗୁଡ଼ା ଫୋପାଡ଼ି ଦିଅ । ତୁମକୁ ଏସବୁ ଶୋଭା ଦିଶୁନି, ବଡ଼ଘରର ଚଳଣୀ ସବୁ ଶିଖିନିଅ ।

କିନ୍ତୁ..... ତୃଷ୍ଣାଠାରୁ କଥା ଛଡ଼ାଇ ନେଇ ପୁଣି କହିଲେ କିନ୍ତୁ ଫିନ୍ତୁ କିଛିନାହିଁ । ତମେ ଆଉ ଅନାଥ ଆଶ୍ରମର ପାଳିତା ଝିଅ କି ଅନିମା ସାମନ୍ତ ରାୟର ଝିଅ ନୁହଁ ତମେ ଚନ୍ଦ୍ରକାନ୍ତ ଛୋଟରାୟର ବୋହୂ ହେବାକୁ ଯାଉଛ । ତୁମର ଅତୀତ ସରିଯାଇଛି, ଭବିଷ୍ୟତ ମୁଁ ଗଢ଼ିବି । ଝଡ଼ ପରି ଆସି ବତାସ ପରି ସେ ଘର ଭିତରୁ ବାହାରିଗଲେ । ତୃଷ୍ଣା ଆଚମ୍ବିତ ହୋଇ ଖାଲି ଚାହିଁ ରହିଥିଲା ।

ରାତି କେମିତି ବିତିଲା ସେ ଜାଣିନାହିଁ ।

ସକାଳେ ବି ସେ ତଳକୁ ଗଲାନାହିଁ । ସେ କିଂ କର୍ତ୍ତବ୍ୟ ବିମୂଢ଼ ହୋଇ ବସି ରହିଥିଲା । ଏକ ଅନୂଢ଼ା କିଶୋରୀରୁ ବୟସ୍କା ମହିଳାର ଅନୁଭବଟି ଥିଲା । ଝାପ୍‌ସା ହୋଇ ନାଚିଗଲା ଛୋଟବେଳର ଘଟଣାଟିଏ । କନ୍ୟାଶ୍ରମର ପୁରୁଣା ଦିଦି ପ୍ରତିବର୍ଷ କାର୍ତ୍ତିକ ମାସରେ ଚଉରା ମୂଳରେ ଦୀପ ଜାଳନ୍ତି ପୁଣି ଅନ୍ଧାରୁ ଉଠି ମୂରୁଜ ପକାଇ କେତେ ପୂଜା କରନ୍ତି । ସେ ନିରେଖି ନିରେଖି ସେ ସବୁ ଚିତ୍ର ଗୁଡ଼ିକ ଦେଖେ । ଦିନେ ଦିଦିଙ୍କର ଦେହ ଭାରି ଖରାପ ହେବାରୁ ବ୍ରତ ଭାଙ୍ଗିଯିବା ଭୟରେ ତାକୁ ଟିକେ ମୂରୁଜ ପକାଇବାକୁ କହିଲେ । ସେଦିନ ଅତ୍ୟନ୍ତ ମନଖୁସିରେ ବିଭିନ୍ନ ରଙ୍ଗ ଦେଇ ସେ ଏତେ ସୁନ୍ଦର ଆଙ୍କିଥିଲା । ସେ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ସତେ ଯେମିତି ଜୀବନ୍ତ ଠାକୁରଙ୍କ ପରି ମନେହେଉଥିଲେ । ସକାଳୁ ଶନିବାର ସ୍କୁଲ ବି ସେଦିନ ଯାଇପାରିନଥିଲା । ତା' ହାତରେ ଚିତା, ମୂରୁଜ ଏତେ ଭଲ ହେଲା ଯେ

ଏଥର ପ୍ରତିବର୍ଷ ସେ ହିଁ ସେଇ କାମ କରେ । ସେତବେଳ ଦିଦି ହିଁ ତାକୁ କହିଥିଲେ ସେଇ ମୂରୁଜରେ ଆଙ୍କୁଥିବା ସିଢ଼ିଟି ସ୍ୱର୍ଗକୁ ଯିବାର ସିଢ଼ି । ଭଲକାମ, ଧର୍ମକାମ କରୁଥିବା ଲୋକମାନେ ହିଁ ସ୍ୱର୍ଗକୁ ଯାଆନ୍ତି ଆଉ ସେଇଟି ନିଶୁଣୀ ।

ଆଜି ତା'ର ମନେହେଲା ବୋଧେ ସେଇ ସିଢ଼ିଟି ତାକୁ ମିଳିଯାଇଛି । ନହେଲେ କି ତାକୁ ଏତେ ବଡ଼ ଘରର ବୋହୂ ହେବାର ଭାଗ୍ୟ ମିଳନ୍ତା ! ବିବାହ କ'ଣ, କ'ଣ ବା ସଂସାର ସେ କିଛି ଜାଣି ନଥିଲା । ପିଲାଟି ଦିନରୁ ସେ ସୁନ୍ଦର ଚେହେରାଟି ପାଇଛି । ବଡ଼ଘରେ ବାହାହୋଇ ରାଣୀ ହୋଇ ରହିବ ବୋଲି ମା' ତାକୁ କହିଥିଲା । ଆଜି ହଠାତ୍ ତା' ଜୀବନରେ କ'ଣ ସବୁ ଘଟିଯାଉଛି ସେ କିଛି ବୁଝିପାରୁନି । ସେତ ନିଃସଙ୍ଗ ପକ୍ଷୀଟିଏ, ପ୍ରଜାପତିର ନାନାରଙ୍ଗ ଦେଇ ଉଡ଼ିବୁଲିବା ସେ କେବେ ଶିଖିନାହିଁ । ବାସ୍ତବତା ସହ ସଂଘର୍ଷ କରି ବଞ୍ଚୁଥିବା ଜୀବନଟେ ସ୍ୱପ୍ନ ଦେଖିବାକୁ ଭୟ କରେ ! ଜୀବନର ଅନେକ ବର୍ଷ ହାହୁତାଶମୟ ହୋଇ କଟିଯିବା ପରେ କିଛି ପରିବର୍ତ୍ତନର ସମୟ ଆସେ ।

କାମ କରୁଥିବା ଲୋକଟି ଉପରକୁ ଆସିଲା ଡ଼ାକିବାକୁ । ସେ ଭଲ ଶାଢ଼ୀଟିଏ ବାଛି ପିନ୍ଧିଲା । ଯଥାସମ୍ଭବ ନିଜକୁ ପ୍ରସ୍ତୁତ କରି ସେ ଯେତେବେଳେ ବିରାଟ ଦର୍ପଣ ଆଗରେ ନିଜକୁ ଦେଖିଲା, ଚମକି ପଡ଼ିଲା । ଏତେ ରୂପ, ଏତେ ସୌନ୍ଦର୍ଯ୍ୟ ତା' ନିକଟରେ ଅଛି ? ନିଜର ପ୍ରତିଛବିକୁ ସେ ବିଶ୍ୱାସ କରିପାରିଲା ନାହିଁ । ପୁଣି ଥରେ ଲୋକଟି ଉପରକୁ ଆସିଲା ତାକୁ ନିକଟରେ ଦେଖି ତୃଷ୍ଣାକୁ ବି ଭାରି ଅପ୍ରତିଭ ଲାଗିଲା । ତା' ମନରଡ଼େଣାରେ ସ୍ୱପ୍ନ ଅୟୁତ ଶକ୍ତି ଭରିଦେଇଥିଲା । ଈଷତ୍ ଆକାଶୀରଙ୍ଗର ଶାଢ଼ୀକୁ ଲାଲ ଜରିବର୍ଡ଼ର, ମ୍ୟାଚିଂ ବ୍ଲାଉଜ୍, ଅଳ୍ପ ଗହଣା ସତରେ ସେ ଅପରୂପା ଥିଲା ।

ଅଠର ବର୍ଷର ତୃଷ୍ଣା ତା'ର ଅପୂର୍ବ ରୂପର ସମ୍ଭାର ନେଇ ସିଢ଼ି ଦେଇ ତଳକୁ ଓହ୍ଲାଇଗଲା । ଏକ ବଡ଼ଘରର ରୁଚିସମ୍ପନ୍ନା ନାରୀର ସବୁଗୁଣ ତା' ଦେହରେ ମହଜୁଦ୍ ଥିଲା । ତାକୁ ଦେଖି ଠିଆ ହୋଇଗଲେ ଚନ୍ଦ୍ରଶେଖର ବାବୁ ଓ ଚନ୍ଦ୍ରକାନ୍ତା

ଦେବୀ । ସେ ନଇଁପଡ଼ି ସେମାନଙ୍କ ପାଦ ଛୁଇଁଲା । କୋଳେଇ ନେଲେ ଚନ୍ଦ୍ରକାନ୍ତା ଦେବୀ ତା'ଣ ଭାବୀ ଶାଶୁ । ସେ ଲାଜେଇ ଗଲା । କିନ୍ତି ସେଇ ରାଜକୁମାର ?

କେଉଁଠି ତା'ର ଶ୍ୱଶୁରଘର ?

ନୂଆପ୍ରଶ୍ନର ସମାହାରରେ ସେ ପୂରୁଣା ପ୍ରଶ୍ନଟିକୁ ଭୁଲିଗଲା । ଅନିମା ସାମନ୍ତରାୟ ତା'ର ମା'ର କାହାଣୀ କିଏ କହିବ ତାକୁ ?

ସ୍ୱପ୍ନ ପରି ଘଟଣାଗୁଡ଼ା ଘଟିଚାଲିଲା । ଭଳିକି ଭଳି ଗହଣା, ଶାଢ଼ୀ ଆଣି ଗାଦେଇ ଦେଲେ ଚନ୍ଦ୍ରକାନ୍ତା ଦେବୀ । ବାହାଘର ଦିନ ପାଖେଇ ଆସିଲା । ସେ କିନ୍ତୁ ପଚାରିପାରୁନି କାହାରିକୁ ତା'ର ସ୍ୱାମୀଙ୍କ ବଷୟରେ । କିଏ ସେ, କେଉଁଠି କ'ଣ କରୁଛନ୍ତି । କିପରି ଦେଖିବାକୁ ! ଯାହା ସବୁ କୁଆଁରୀ ଝିଅଙ୍କର ସ୍ୱପ୍ନଥାଏ । ସେ ଖାଲି ସେଇ ଜଗନ୍ନାଥଙ୍କୁ ଡ଼ାକୁଥାଏ ସବୁ ଭଲରେ ହେଉ, ତା' ଜୀବନ ତା' ମା' ପରି ନହେଉ । କନ୍ୟାଶ୍ରମର ଦିଦି ଆସିଥିଲେ, କେତେକ ଝିଅ ବି । ସେମାନେ ବି ଖୁବ୍ ଖୁସି ଥିଲେ ଏଇ ଖବରରେ, ଈଷତ୍ ଈର୍ଷା ବି ସେମାନଙ୍କ ଆଖିରେ ଦେଖିପାରିଲା ତୃଷା । ଅକ୍ସକଥା କୁହା ଝିଅଟି ସେଦିନ ପ୍ରଗ୍‌ଲଭ ଝରଣା ହୋଇଯାଇଥିଲା । ସେ ଖାଲି ଏତିକି ଲକ୍ଷ୍ୟ କରିଥିଲା ଚନ୍ଦ୍ରଶେଖରଙ୍କ ମୁହଁରେ ଛାଇଥିଲା କଳା ବାଦଲଟିଏ । ଯେମିତି ଅସହ୍ୟ ବେଦନାରେ ଉବୁଟୁବୁ ହେଉଛନ୍ତି ସେ । କିଛି କହିବାକୁ ଚାହିଁ ବି କହିପାରୁନାହାନ୍ତି । ତୃଷା ଭାବୁଥିଲା ସେ କ'ଣ କହିବାକୁ ଚାହୁଁଛନ୍ତି ? ଜୀବନର ସବୁ ଜ୍ୱାଳା ଯନ୍ତ୍ରଣାର ଦିନ ସରିଯାଇଛି ଆରମ୍ଭ ହେବ ଶୁଭ ସକାଳଟିଏ ।

ବାହାଘର ଦିନ ଆସିଗଲା ।

କିଛି ହଇଚଇ, ଲୋକବାକ, ଗହଳିଚହଳି ନାହିଁ । ସେ ଆଶ୍ଚର୍ଯ୍ୟ ହେଉଥାଏ ମନେମନେ, ତଥାପି ଏକ ପୁଲକିତ, ମାଦକିତ ଭାବରେ ସମ୍ମୋହିତ ହୋଇ ଏଇ କେତେଦିନ ଯେ ସେ କେମିତି କାଟିଛି ସେ ନିଜେ ବି ଜାଣେନା । ଭବିଷ୍ୟତର

ସୁନେଲି ସ୍ୱପ୍ନରେ ସେ ଦେଖିପାରୁଥିଲା ଗୁଲୁଗୁଲିଆ ଛୁଆଗୁଡ଼ାଙ୍କ ମୁହଁ । ଯେଉଁମାନଙ୍କୁ ସବୁ ସ୍ନେହମମତା ଦେଇ ସେ ଗଢ଼ିବ, ଯାହା ସେ ନିଜେ ଝୁରିହୋଇଛି ତମାମ୍ ଜୀବନ ।

ତା'ର କେହି ନାହାନ୍ତି । ଚନ୍ଦ୍ରକାନ୍ତ ହିଁ ସଜାଇଦେଇ ଯାଇଛନ୍ତି ତାକୁ । ଓଢ଼ଣା ଫାଙ୍କରୁ ସେ ନିଜକୁ ଚାହୁଁଛି ବାରମ୍ବାର ଲାଜଲାଜ କରି ।

ବେଦୀ ଉପରକୁ ଯିବାପରେ ପୁରୋହିତ ମନ୍ତ୍ରୋଚ୍ଚାରଣ କଲେ । ଉଛକିତ ମନ ତା'ର ଉଚ୍ଛନ୍ନ ହେଉଥାଏ । କିଛି ଆଶଙ୍କା କେମିତି ହୋଇଥିବ ସ୍ୱାମୀ ତା'ର । କିପରି ଭାବରେ ଗ୍ରହଣ କରିବେ ତା'ପରି ଅନାଥଶ୍ରମରେ ବଢ଼ିଥିବା ଝିଅଟିକୁ । ତା'ପରି ଗୋଟେ ଜାରଜ ସନ୍ତାନ ଯାହାର ପିତା କିଏ ସେ ନିଜେ ବି ଜାଣେନା । ତାକୁ ଯିଏ ବୋହୂ କରି ନିଜ ଘରକୁ ନେଉଛନ୍ତି ସତରେ କେତେ ମହାନ୍ ସେ । ସମ୍ମାନ ଓ ଶ୍ରଦ୍ଧାରେ ମଥାନତ କଲା ତୃଷ୍ଣା । ତା'ପରି ଅଭାଗିନୀ ଭାଗ୍ୟରେ ପୁଣି ଏତେ ସୁଖ ଲେଖାଥିଲା ! ଦୁନିଆରେ ସତେ ଏତେ ଭଲ ଲୋକ ଅଛନ୍ତି ବୋଲି ସେ ଜାଣିନଥିଲା । ପିଲାଟି ବେଳୁ ମା'ର ସଂଗ୍ରାମ ଓ ସଂଘର୍ଷକୁ ଦେଖି ସେ ଖାଲି ଏତିକି ବୁଝିଥିଲା ଏ ଦୁନିଆଁ ଭାରି ଖରାପ । ଏଠି ଭଲ ଲୋକ କେହିନାହାନ୍ତି ଅଥଚ ଏବେ ଜାଣୁଛି ସେ କେତେ ଭୁଲ ଭାବିଥିଲା । ପୁରୋହିତଙ୍କର ଦଶକର୍ମ ଆରମ୍ଭ ହେଲା ଖୁବ୍‌କମ୍ ସମୟ ମଧ୍ୟରେ ହିଁ ବିବାହ ସରିଲା । କେବଳ ହାତଗଣ୍ଠି ପଡ଼ିବ ବର ବେଦୀକୁ ଆସିଲେ । ତୃଷ୍ଣାର ଛାତି ଜୋରରେ ଧଡ଼ଧଡ଼ ହେବାକୁ ଆରମ୍ଭ କଲା । ହାତଗଣ୍ଠି ପଡ଼ିଲା ଗୋରା ସୁନ୍ଦର ହାତଟି ଉପରେ ହାତରଖି ସତେ ଯେମିତି ସ୍ୱର୍ଗର ଚାନ୍ଦକୁ ହାତ ମୁଠାରେ ପାଇଯାଇଥିବାର ଏକ ଅନନ୍ୟ ଅନୁଭବ ହେଲା ତା'ର ।

ହଠାତ୍ ଘଟିଗଲା ସେଇ ଅଭାବନୀୟ ଘଟଣାଟି ।

ତା' ବେକକୁ ଜୋରରେ ଝୁଙ୍କାଇ, ଓଢ଼ଣାକୁ ଟାଣି ଘୋଷାରି ତା' ମୁହଁକୁ ଧରି ସବୁ ବଳ ଖଟାଇ ତା' ବର ଚିତ୍କାର କଲା ମୋ କଣ୍ଢେଇ, ମୋ କଣ୍ଢେଇ ଇଏ

ମୋ ସହ ଖେଳିବ । ତା'ର ବିକଟାଳ ରଡ଼ି ଓ ଅଧାପୋଡ଼ା ମୁହଁକୁ ଦେଖି ବେହୋସ ହୋଇ ପଡ଼ିଲା ତୃଷା !

ସ୍ୱପ୍ନର କାଚଘର ନିମିଷକେ ଭାଙ୍ଗି ଚୁନା ହୋଇଗଲା ।

ହୋସ୍ ଆସିବା ବେଳକୁ ସେ ହଠାତ୍ କିଛି ମନେପକାଇ ପାରିଲାନାହିଁ । ମୁଣ୍ଡଟା ଭାରି ଭାରି ଲାଗୁଛି । ପୃଥିବୀଯାକର ସବୁ ବୋଝ ଯେମିତି ତା'ର ମଥା ଉପରେ ହିଁ ଲଦା ହୋଇଛି । ଖୁବ୍‌କଷ୍ଟରେ ମଥା ଝୁଙ୍କି ସେ ଦେଖିଲା ସେ ତା'ର ସେହି ରୁମ୍ ଭିତରେ ଶୋଇଛି । ହାତରେ ସାଲାଇନ୍ ଛୁଞ୍ଚିଟା ଆହୁରି ଗଭୀରକୁ ଭେଦିଗଲା ପରି ମନେହେଲା । ଯେତେବେଳେ ସେ ଧିରେଧିରେ ସବୁକଥା ମନେପକାଇଲା ତା'ର ଚଳଚଞ୍ଚଳ ପୃଥିବୀଟା ସ୍ଥିର ହୋଇଗଲା ପୁଣି । ସବୁ ଯେମିତି ଅହେତୁକ ଭାବରେ ଘଟିଗଲା । ହଠାତ୍ ସେ ସବୁ ସିନା ଅନ୍ୟମାନଙ୍କର ପୂର୍ବପ୍ରସ୍ତୁତ ଯୋଜନା ଥିଲା ହେଲେ ତା' ପାଇଁ ? ତାକୁ ଶ୍ୱାସରୁଦ୍ଧ ହୋଇଯାଉଥାଏ, ସେ ଯନ୍ତ୍ରଣା କାତର ସ୍ୱରରେ ଚିତ୍କାର କଲା ହେ........ଭଗବାନ୍ !

ଛୋଟ ଫଟୋଟିର ବଡ଼ ଠାକୁର କିନ୍ତୁ ସେମିତି ନିର୍ବିକାର, ଅବିଚଳିତ ଥିଲେ କାରଣ ସେ ସବୁର ଦ୍ରଷ୍ଟା । ସେ ସବୁ ଜାଣନ୍ତି ତେଣୁ ତାଙ୍କପାଇଁ ଏଥିରେ ବେଦନାପ୍ଲୁତ ହେବା ବା ଆଶ୍ଚର୍ଯ୍ୟ ହେବାର କାରଣ କିଛି ନଥିଲା । ତେବେ ଅବ୍ୟକ୍ତ ଏକ କରୁଣା ସ୍ପଷ୍ଟ ଦେଖିପାରିଛି ତୃଷା ତାଙ୍କ ଆଖିରେ । ସେ ଆଖି ବନ୍ଦ କରୁକରୁ ଝଡ଼ପରି ପଶିଆସିଲେ ଚନ୍ଦ୍ରକାନ୍ତା ଦେବୀ ।

କ'ଣ ପାଇଁ ଏସବୁ ନାଟକ ଚାଲିଛି ? ଦୟାକରି ତୋତେ କୂଳରେ ଲଗାଇବାକୁ ମୁଁ ଜିତୁ ସହ ତୋର ବାହାଘର କଲି । ମୋତେ କ'ଣ ଝିଅମିଳୁନଥିଲେ ? ତୋ ପରି ଗୋଟେ ଜାରଜକୁ ମୁଁ ବୋହୂ କରି ଆଣିଥାନ୍ତି ?

ଆରେ ! ଛୋଟରାୟ ବଂଶର କୂଳବଧୂ ହେବା କେତେଜଣଙ୍କ ଭାଗ୍ୟରେ ମିଳେ ? ତୋ କାହାଣୀ ନ ଜାଣେ କିଏ ? ଅନିମା ପରି ପାପିନୀର ଝିଅ ତୁ ! ତୁ ଯେଉଁଠିକୁ ଯିବୁ ତୋ ପୂର୍ବରୁ ପହଞ୍ଚିଯିବ ତୋର କାହାଣୀ । ତୋର ଜନ୍ମ ଇତିହାସ । ତୋତେ କିଏ ବାହାହୋଇଥାନ୍ତା !

କ'ଣ ମୋର ଇତିହାସ ଯେଉଁଥିପାଇଁ ଆପଣ ମୋର ଜୀବନ ମାଟି କଲେ ? ଚିତ୍କାର କରି ଉଠିଲା ତୃଷ୍ଣା ! ତା ପରି ଶାନ୍ତଶିଷ୍ଟ ଝିଅର ଏପରି ପାଟିଶୁଣି ଚନ୍ଦ୍ରକାନ୍ତା ଆଶ୍ଚର୍ଯ୍ୟ ହୋଇଗଲେ । ସେ ନିଜେ ବି ଚମ୍‌କି ପଡ଼ିଲା । ତା' ଆଖିରୁ ଝରୁଥିଲା ଉତ୍ତପ୍ତଲାଭାର ଲାଲ୍ ରଙ୍ଗ । ଅଗ୍ନୀଉଦ୍‌ଗୀରଣର ସ୍ପଷ୍ଟ ଲକ୍ଷଣ ତା' ଶରୀରର ପ୍ରତି ଅଙ୍ଗେଅଙ୍ଗେ ଫୁଟି ଉଠୁଥିଲା, ତା' ଦେହ ଠକ୍‌ଠକ୍ ହୋଇଥରୁଥିଲା ।

ସ୍ୟାଲାଇନ୍ ବୋତଲଟି ତଳେ ପଡ଼ି ଚୁରମାର୍ ହୋଇଯାଇଥିଲା । ସେ ସବୁକୁ ଭ୍ରୂକ୍ଷେପ ନ କରି ସେ ଖଟ ତଳକୁ ଡ଼େଇଁ ପଡ଼ିଲା । ସତେ ଯେମିତି ସେଇ ଦୃଢ଼ ପ୍ରତ୍ୟୟ ଦ୍ୱାରା ତା ପ୍ରତି ହୋଇଥିବା ସବୁ ଅବିଚାରର ସେ ଏଇ ସଙ୍ଗେ ସଙ୍ଗେ ପ୍ରତିଶୋଧ ନେଇଯିବ । ତା' ହାତଚୁଡ଼ି ତା ମଥାର ସିନ୍ଦୂରର ଲାଲିମା ତା ପାଇଁ ଶୂନ୍ୟତାର ହାହାକାରର ହାଇଫେନ୍ ପରି ମନେ ହେଉଥିଲା । ସେ କୋହ ଉଠାଇ କାନ୍ଦିବାକୁ ଲାଗିଲା । ସେତବେଳକୁ ଚନ୍ଦ୍ରକାନ୍ତା ଦେବୀଙ୍କର ଚକିତ ଭାବଟି କଟିଯାଇଥିଲା । ସେ ଧିରେଧିରେ କହିବାକୁ ଆରମ୍ଭ କଲେ । ତୋ ମା' ଅନିମା ଏ ଘରର ବୋହୂଥିଲା, ଭାଇଙ୍କର ଏକମାତ୍ର ପୁଅ ଅତନୁର ସ୍ତ୍ରୀ ।

ଖୁବ୍ ସୁନ୍ଦରୀ, ଶିକ୍ଷିତା ଭଲ ଘରର ଝିଅଟିଏ । ସେମାନେ ସ୍ଥିର କରିଥିଲେ ଜୀବନକୁ ଖୁବ୍ ଉପଭୋଗ କରିବେ । ସପ୍ତମଙ୍ଗଳା ପର ଦିନହିଁ ସେମାନେ ହନିମୁନ୍ ପାଇଁ ନେପାଳ ଚାଲିଗଲେ । ମାସେ ରହିବା ପରେ । ଫେରିବା ପୂର୍ବଦିନ ରାତିରେ ହିଁ ଘଟିଲା ସେଇ ଦୁର୍ଘଟଣାଟି ।

ସେମାନେ କୌଣସି ଏକ ସ୍ଥାନରୁ ଫେରୁଥିଲେ, କାରଟି ପାହାଡ଼ିଆ ଘାଟି ରାସ୍ତାରେ ଖରାପ ହୋଇଗଲା । ସାହାଯ୍ୟ ଦେଇ ସାଙ୍ଗରେ ଆଣିଥିବା ଅନ୍ୟଗୋଟିଏ ଗାଡ଼ିର ଯୁବକମାନଙ୍କ ଦ୍ୱାରା ଅତନୁ ସମ୍ମୁଖରେ ହିଁ ଧର୍ଷିତା ହେଲା ଅନିମା । ତୁ କହ ସ୍ୱାମୀ ଆଗରେ ଯେଉଁ ସ୍ତ୍ରୀର ସତୀତ୍ୱ ଲୁଟିହୋଇଯାଏ ସେ କ'ଣ କେବେହେଲେ ସେଇ ସ୍ତ୍ରୀକୁ ଗ୍ରହଣ କରିପାରିବ ? କହୁନୁ କହ ?

ଆଉ ସମାଜ ? କେବେହେଲେ ଗୋଟିଏ ଧର୍ଷିତା ନାରୀକୁ ସମାଜ ଗ୍ରହଣ କରିଛି ଯେ ଅତନୁ ଗ୍ରହଣ କରିଥାନ୍ତା ? ଲୋକେ କ'ଣ କହିଥାନ୍ତେ ? ତଥାପି ସେ

ଲଢ଼ିଥିଲା, କେଶ୍ କରିଥିଲା । ହେଲେ ସେଇ ଦୁର୍ବୃତ୍ତମାନେ କେହି ବି ଧରାପଡ଼ିନଥିଲେ । ସେଠୁ ଫେରିବା ପରେ ବି ଅତନୁ ଅନିମା ପାଇଁ ଚିନ୍ତା କରିଥିଲା । ସେ ଭିତରେ ଜଣା ପଡ଼ିଥିଲା ଯେ ଅନିମା ମା' ହେବାକୁ ଯାଉଛି । ଅତନୁ ଛୁଆଟାକୁ ନଷ୍ଟ କରିବାକୁ ବହୁତ ଅନୁରୋଧ କରିଥିଲା, ହେଲେ ଅନିମାର ଯିଦ୍ ଆଗରେ ସବୁ ହାର୍ ମାନିଥିଲେ । ସେ ମା' ହୋଇ ଗୋଟିଏ ଶିଶୁର ହତ୍ୟାକରିଣୀ ହେବନାହିଁ । ଏଇଟା କି ଅଜବ ଯୁକ୍ତି ? ଗୋଟିଏ ଧର୍ଷିତା ସ୍ତ୍ରୀର ଜାରଜ ସନ୍ତାନକୁ ଜନ୍ମ ଦେବା ପାଇଁ ଯାଇ ସ୍ତ୍ରୀଟି ନିଜ ଜୀବନକୁ ବାଜି ଲଗାଇଦେଲା ।

ଅତନୁ ଡ଼ାଇଭର୍ସ କଲା ତାକୁ । ଅନିମା ଘର ଛାଡ଼ିଲା, ତା'ପରର କଥା ତୁ ସବୁ ଜାଣୁ । ଏବେ ତୁ କହ ତୋତେ ବାହାହେବ କିଏ ? ତୁ ଅନିମାର ଅବିକଳ ପ୍ରତିଛବି ହୋଇଥିବାରୁ ଆମେ ତୋତେ ଚିହ୍ନିପାରିଲୁ, ଘରକୁ ଆଣିଲୁ । ନହେଲେ ତୋ ପରି ଅବାଞ୍ଛିତ ଘୃଣିତ ସନ୍ତାନକୁ କିଏ ଗ୍ରହଣ କରିବ ?

ମୋ ପୁଅ ଜନ୍ମରୁ ମାନସିକ ଭାବରେ ନ୍ୟୁନ ସତ । ମାତ୍ର ପୁଅଟି ମଣିଷଟିଏ । ମୋର ସମସ୍ତ ସମ୍ପତ୍ତିର ମାଲିକ । ତାକୁ ବାହା ହୋଇ ତୋର ଜୀବନ ମାଟି ହୋଇଯାଇନାହିଁ ବରଂ ତୋ ମା'ର ଭୁଲର ପ୍ରାୟଶ୍ଚିତ କରିଛୁ ତୁ । ଏ ଘରର ପୁଅହୋଇ ବି ଅତନୁ ଆଉ କେବେ ଏଠାକୁ ଫେରିନାହିଁ । ସେଇ ଆମେରିକାରେ ଘର ବସେଇ ତା ସ୍ତ୍ରୀ ଛୁଆ ସହ ରହିଗଲା । ଏଡ଼େବଡ଼ ଘର ଭାଇଙ୍କର, ମୋ ଶ୍ୱଶୁର ଘରର ସଂପତ୍ତି ସବୁର ମାଲିକ କେବଳ ମୋ ପୁଅ । ତା' ସ୍ତ୍ରୀ ହିସାବରେ ତୁ ବି ଏବେ ତା'ର ହକ୍‌ଦାର । ଆଉ କ'ଣ ଦରକାର କହୁନୁ ତୋର ?

ସେଇ ଗୋଟିଏ ଅବସ୍ଥାରେ କାଠ ହୋଇଯାଇଛି ତୃଷା । କିଂ କର୍ତ୍ତବ୍ୟ ବିମୂଢ଼ । କ'ଣ କହିବ କିଛି ବୁଝିପାରୁନି । ବାକ୍‌ରୁଦ୍ଧ, ଶ୍ୱାସରୁଦ୍ଧ, ପୃଥିବୀର ବାୟୁ ବି ସ୍ଥିର ହୋଇଯାଇଛି ।

ତା ପାଇଁ ତା' ମା' କି ଦୁଃଖ, କଷ୍ଟ ନ ସହିଛି । ଆହା ! ବିଚାରୀଟା କେଡ଼େ ବେଦନା ଯନ୍ତ୍ରଣାରେ ମରିଗଲା । ହେ ପ୍ରଭୁ ମୋ ମା' ପ୍ରତି କାହିଁକି ଏମିତି ଅନ୍ୟାୟ କଲ ଚିତ୍କାର କରି ଉଠିଲା ସେ । ଦଉଡ଼ି ଯାଇ ସେ ଫୋପାଡ଼ି ଦେବାକୁ ଉଠାଇଲା ତା'ର ଅତି ପ୍ରିୟ ଜଗନ୍ନାଥଙ୍କ ଫଟୋକୁ ମାତ୍ର ପାରିଲାନି । ତା'ର

ବେହୋସ ଦେହ ଖସିପଡ଼ିଲା ଭୂମି ଉପରେ । ବେଡ଼ରୁ ଉଠିଲା ସେ, ଜୀବନଟା ଗୋଟିଏ ମୃତ ମନ ଭିତରେ ଆବଦ୍ଧ ହୋଇରହିଲା । ହାତର ଲାଲ ଶଂଖା, ମଥାର ସିନ୍ଦୂର ସତେ ଯେମିତି ତାକୁ ତାଚ୍ଛଲ୍ୟ କରୁଥିଲେ, ବିଦ୍ରୁପ କରୁଥିଲେ ତା'ର ନାରୀତ୍ୱକୁ । ତୃଷ୍ଣା ସବୁଦିନ ପାଇଁ ତୃଷିତ, କ୍ଳାନ୍ତପଥିକ ହୋଇ ରହିଯିବ । ଯାହାର ତୃଷ୍ଣା କେବେହେଲେ ନିବାରିତ ହେବନାହିଁ । ଏକ ବ୍ୟର୍ଥ ନାରୀର ଆହତ ଦୀର୍ଘଶ୍ୱାସ ପବନକୁ ବେଦନା ଦେଇ ଛାତି ତଳର କେଉଁ ଗଭୀରତାରୁ ବାହାରିଗଲା । ଆଖିର ସମୁଦ୍ରଯାକର ଲୁହ ଶୁଖାଇ ମନର ଅଯୁତ ବେଦନାକୁ ଲୁଚାଇ ସେ ଉଠି ଠିଆ ହେଲା । ତା' ପାଦରେ ଯୋର୍ ନଥିଲା ତଥାପି ସେ ଟାଣି ହୋଇ ଚାଲିବାକୁ ଚେଷ୍ଟା କଲା । ହଠାତ୍ ପଶି ଆସିଲେ ଚନ୍ଦ୍ରଶେଖର ବାବୁ ଓ ଚନ୍ଦ୍ରକାନ୍ତା ଦେବୀ । ଚନ୍ଦ୍ରଶେଖର ବାବୁ ଧାଇଁ ଆସି ତା'ର ହାତ ଧରିପକାଇ ତାକୁ ସାହାରା ଦେଲେ । ତାଙ୍କ ଆଖିରେ ଫୁଟି ଉଠୁଥିବା ସ୍ନେହ ଓ ଯନ୍ତ୍ରଣାର ଏକ ଅଦ୍ଭୁତ ଭାବକୁ ସେ ତୀକ୍ଷଣ ନଜରରେ ଚାହିଁ ରହିଲା । ସେ ଭଦ୍ରବ୍ୟକ୍ତି ମୁହଁ ପୋତିଲେ । ସତେ ଯେମିତି ସେ ହିଁ ସବୁ ପାପ କରିପକାଇଛନ୍ତି । ସେ ଧିରେଧିରେ ଯାଇ ବାଥ୍ରୁମ୍‌ରେ ପଶିଲା, ପଛକୁ ବୁଲି ଚାହିଁଲା ନାହିଁ ଦୁଇଜଣ କରୁଛନ୍ତି କ'ଣ ! ମନଭରି ଥଣ୍ଡାପାଣିରେ ଗାଧୋଇଲା । ଟ୍ୟାପ୍‌ର ଜଳରାଶି ସହ ତା' ମନ ଶାନ୍ତି ପର୍ଯ୍ୟନ୍ତ କାନ୍ଦିଚାଲିଲା ସେ । ବହୁ ସମୟ ପରେସେ ତୃପ୍ତ ହୋଇ ବାହାରିଲା । ଏଥର ତା' ମୁଖମଣ୍ଡଳ ଶାନ୍ତ ଥିଲା । ଅଗ୍ନୀଉଦ୍‌ଗୀରଣ ପରେ ଲାଭା ଥଣ୍ଡା ହୋଇ ଯେପରି ମୁଗୁନି ପଥର ହୋଇଯାଏ ସେମିତି ଚକ୍‌ଚକ୍ କରୁଥିଲା ମୁହଁ ତାର ।

ବାଛିବାଛି ଲାଲ୍ ଶାଢ଼ୀଟିଏ ପିନ୍ଧିଲା । ଦର୍ପଣସାମ୍ନାରେ ବସି ସେ ଭାବିଲା ଅନେକ କିଛି । ଯନ୍ତ୍ରଣାର ଜଉଘରେ ଜଳିବାକୁ ହେବ ତ ସାରାଜୀବନ ତେବେ ହସିହସି ସନ୍ଧ୍ୟାଦୀପ ପରି ଜଳିଲେ କ୍ଷତି କ'ଣ ? ଅନ୍ୟକୁ ଆଲୋକ ଦେଖାଇ ଯଦି ଅନ୍ୟଜଣକ ଜୀବନରୁ ସେ ଅନ୍ଧାର ଦୂର କରିପାରିବ ତେବେ ତାହାହିଁ ସାର୍ଥକତା ଆଣିଦେବ ଜୀବନରେ ତା'ର । ଏମିତିରେ ତ ଅଲୋଡ଼ା, ଅଖୋଜା ଅସ୍ପୃଶ୍ୟାଟି ସେ । ଯେଉଁଦିନ କେଡ଼େ କଷ୍ଟରେ ମାଟ୍ରିକ୍‌ପାସ କରିଥିଲା ସେଦିନ ସେ କେତେକଥା ଭାବିଥିଲା । ବହୁତ ପାଠ ପଢ଼ିବ, ବଡ଼ଚାକିରୀ କରିବ, ବଡ଼ ଘରେ ବାହାହୋଇ

ମା'ର ସ୍ୱପ୍ନ ପୂରଣ କରିବ । ତା' ମା' ତା ପାଇଁ କେବଳ ଏଇ ସ୍ୱପ୍ନ ଦେଖିଥିଲା । ବଡ଼ ଘରେ ବାହାହୋଇ, ଭଲ ସ୍ତ୍ରୀଟିଏ, ବୋହୂଟିଏ ହୋଇ ଗୋଟିଏ ସୁରକ୍ଷିତ ଜୀବନ ବିତାଉ ବୋଲି । ଯେଉଁ ସୁରକ୍ଷିତ ଜୀବନ, ସ୍ନେହୀ ସୁଖି ପରିବାରଟିଏ ମା' କେବେହେଲେ ପାଇ ନଥିଲା, ତାହାର ସ୍ୱପ୍ନ ସେ ଝିଅ ପାଇଁ ଦେଖିଥିଲା । ମା' ତାକୁ କେବେହେଲେ ବାହାରକୁ ଛାଡୁନଥିଲା । ମା' ଆଖିରୁ ସେହି ଆତଙ୍କିତ ଚାହାଣୀର ଅର୍ଥ ସେଦିନ ସିନା ସେ ବୁଝି ନଥିଲା ହେଲେ ଆଜି ! ଛାତିଭେଦି ଗଭୀର ଦୀର୍ଘନିଶ୍ୱାସଟିଏ ବାହାରିଗଲା ।

ସେ ଝରକା ବାହାରର ସୁନ୍ଦର ପୃଥିବୀକୁ ଚାହିଁଲା, ଆକାଶକୁ ଦେଖି ମା'କୁ ଖୋଜିଲା, ହାତଯୋଡ଼ି ପ୍ରଣାମ କଲା ମା'କୁ ତା'ର ।

ଆଖିରେ ପଡ଼ିଲା ବଗିଚାର ସୁନ୍ଦର ଫୁଲ ସବୁ । ତୃଷ୍ଣାର ମନେହେଲା ତା' ଜୀବନରେ ଏମିତି ସବୁଜିମା ଭରିଯାଇଛି । ସବୁଗ୍ଲାନି, ପରିତାପ, ଯନ୍ତ୍ରଣାଦଗ୍ଧ ମନକୁ ସେ ଛାତି ଭିତରେ କବର ଦେଇଦେଲା ।

ଉଠି ଠିଆହେଲା ସେ, ଧିର ଅଥଚ ଦୃଢ଼ ପଦ ନେଇ ସେ ସିଡ଼ି ତଳକୁ ଓହ୍ଲାଇଗଲା । ସମୟ ହୋଇଯାଇଥିଲେବି ଟେବୁଲପାଖକୁ କେହି ଆସି ନଥିଲେ । ସବୁକିଛି ସଜାଇହୋଇ ରହିଥିଲେବି ସେ ଟିକେ ସଜେଇ ଦେଲା, ମଝିରେ ଥିବା ଫ୍ଲାୱରଭେସ୍‌ଟି ଖାଲିପଡ଼ିଥିବା ଦେଖି ସେ ବାରଣ୍ଡାତଳର ବଗିଚାକୁ ଓହ୍ଲାଇଗଲା । ବାଛିବାଛି ବଡ଼ ରକ୍ତଗୋଲାପ ସହ କିଛି କ୍ରୋଟନ୍ ପତ୍ର ତୋଳି ଆଣିଲା । ହଠାତ୍ ସେ ଦେଖିଲା ବଗିଚାରେ କାମ କରୁଥିବା ଲୋକଟି ବିସ୍ମାରିତ ନୟନରେ ତାକୁ ଚାହିଁରହିଛି ।

ସେ ହସିଲା ସୁନ୍ଦର ହସଟିଏ ।

କାକା ମୁଁ ଏଘରର ନୂଆବୋହୂ ।

ବୋହୂ ମା ! ସତେ ଯେମିତି କେଉଁ ଦୂର ଅତୀତରେ ହଜିଗଲା ବୁଢ଼ାଲୋକଟି । ତୃଷ୍ଣା ଜାଣିପାରିଲା ତା' ଚେହେରାରେ ସେ ମା'କୁ ଦେଖୁଛି ।

ତା' ଆଖିରୁ ଧାରଧାର ଲୁହ ବହିଯାଉଥିଲା, ତୃଷା ବି କାନ୍ଦି ପକାଇଥାନ୍ତା ଅଥଚ ସେ କାନ୍ଦିଲାନି । କହିଲା କାନ୍ଦନାହିଁ କାକା ମୁଁ ଫେରିଆସିଛି ବୋଲି ଖୁସିହୁଅ । ମୁଁ ଫୁଲକୁ ଭାରି ଭଲପାଏ, ମୋ ଫୁଲମାନଙ୍କର ଯତ୍ନ ନିଅ । ସେ ଚାଲି ଆସିଲା ଟେବୁଲ ପାଖକୁ, ପଛରେ ଖୁସିରେ ଗଦଗଦ ହେଉଥିବା ଲୋକଟିକୁ ଛାଡ଼ି ।

ସେ ଟେବୁଲ ଉପରେ ଫୁଲଦାନୀରେ ଫୁଲଗୁଡ଼ିକୁ ସଜାଇ ବସି ରହିଲା । କିଛି ସମୟ ପରେ ହିଁ ଚନ୍ଦ୍ରକାନ୍ତା ଦେବୀ ଆସିଲେ ସେ ତାଙ୍କ ପାଦତଳେ ପ୍ରଣାମ କଲା । ଦେଖିଲା ତାଙ୍କ ଆଖିରେ ବି ଧାରଧାର ଲୁହ ଝରିଯାଉଛି, ସେ ତାକୁ ଆଉଯାଇ ନେଲେ । ବଡ଼ପାଟିରେ ଡ଼ାକିବାକୁ ଲାଗିଲେ ଭାଇ ଭାଇ ଏପଟକୁ ଆସନ୍ତୁ, ବୋହୂ ଆସିଲାଣି । ଚନ୍ଦ୍ରଶେଖର ବାବୁ ତାଙ୍କ ରୁମ୍ ଭିତରୁ ଧାଇଁ ଆସିଲେ । ତାଙ୍କୁ ବି ପ୍ରଣାମ କଲା ସେ । ଦୁଃଖ ଆଉ ସୁଖର ଗୋଟିଏ ଅପୂର୍ବ ମିଶ୍ରଣ ।

ସେମାନେ ଟେବୁଲପାଖରେ ଚେୟାର଼ରେ ବସିଲେ । ସେ ଠିଆହୋଇ ରହିଲା । ମୁଁ ତାଙ୍କୁ ଟିକେ ଦେଖିବାକୁ ଚାହେଁ, ସେ ସ୍ପଷ୍ଟ କଣ୍ଠରେ କହିଲା । ଚନ୍ଦ୍ରକାନ୍ତ ଦେବୀ ଉଠି ଠିଆହେଲେ ତା' ହାତକୁ ଧରିଲେ ଆଉ ନେଇ ଆଗେଇ ଚାଲିଲେ । କବାଟରେ ତାଲା ପଡ଼ିଥିଲା , ସେ ଝରକା ବାଟେ ଜାଲି ଦେଇ ଦେଖାଇଦେଲେ ଆଙ୍ଗୁଠିର ଇଶାରାରେ । ସେ ଦେଖିଲା ନିବିଷ୍ଟ ଚିତ୍ତରେ କ'ଣ ଦେଖୁଛି ଝରକା ବାହାରକୁ, ଏମାନଙ୍କୁ ପଛକରି ସେଇ ପିଲାଟି । ତଳେ ପଡ଼ିରହିଛି ଅଜସ୍ର ଖେଳଣା କଣ୍ଢେଇ । ମନଭିତରଟା ତା'ର ହାହାକାର କରିଉଠିଲା । ଏଇ ତା'ର ଦେବତା, ଶଙ୍ଖା ସିନ୍ଦୂରର ମାଲିକ । ଛୋଟଶିଶୁଟିଏ ମନନେଇ ଏଇ ପୃଥିବକୁ ଆସିଛନ୍ତି, ଏଇ କ'ଣ ତାର ଭାଗ୍ୟ ? ହୃଦୟଟା ମକ୍ଟି ହୋଇଗଲା, ଅଥଚ ସେ ସଙ୍ଗେସଙ୍ଗେ ଦୃଢ଼ ହୋଇଗଲା ଧିର ପାଟିରେ କହିଲା ତାଲା ଖୋଲନ୍ତୁ ।

ତୁ ଜାଣିନୁଁ ମା' । ସେ ବେଳେବେଳେ ଖୁବ୍ ହିଂସ୍ର ହୋଇଉଠେ । ସେତେବେଳେ ସେ ଯାହାପାଏ ଭାଙ୍ଗେ, ପିଟେ, ତାକୁ କେହି ବି ଅଟକାଇ ପାରିବେନି । ଏଇ ତ କାଲି ସେପରି କରିଥିଲା । ତାର ଜିଦ୍ ନ ରହିଲେ ସେ ସେପରି କରେ ।

ଆପଣ ଖୋଲନ୍ତୁ ମା', ମୁଁ ସବୁ ସମ୍ଭାଳି ନେବି । ସେ କଥାରେ କି ଦୃଢ଼ତା ଥିଲା କେଜାଣି, ଚନ୍ଦ୍ରକାନ୍ତା ଦେବୀ କାନିରେ ବନ୍ଧା ହୋଇଥିବା ଚାବି ନେନ୍ଥର ଗୋଟିଏରେ ତାଲା ଖୋଲିଲେ ।

ସେମାନେ ଦୁହେଁ ଘର ଭିତରେ ଧାଦ୍ଧ ଦେଲେ । ବରଫ ପରି ଶୀତଳ ଭରିରହିଛି ସେ ଘରେ ।

ମା' ଡ଼ାକିଲେ ପୁଅକୁ

ଜିତୁ !

ସେ ଚାହିଁଲା ନାହିଁ

ଜିତୁ ନାଁ ରେ !

ରାଗିଛୁ ବାପା, ମୋ ଉପରେ ? ଦେଖିଲୁ କିଏ ଆସିଛି ?

ପିଲାଟି ବୁଲିଚାହିଁଲା, ତୃଷ୍ଣା ଉପରେ ଆଖି ପଡ଼ିଗଲା କ୍ଷଣି ତା' ଆଖିରେ ଗୋଟିଏ ଚମକ ଖେଳିଗଲା, ସେ ଧାଇଁ ଆସିଲା । ମୋ କଣ୍ଢେଇ, ମୋ କଣ୍ଢେଇ, ବେକରେ ଓହଳିପଡ଼ିଲା ସେ, ଏଥର ସଂପୂର୍ଣ୍ଣ ପ୍ରସ୍ତୁତ ହୋଇ ରହିଥିଲା ସେ, ଯଥା ସମ୍ଭବ ଦୃଢ଼ ହେଲେ ବି ସେ ତଳେ ପଡ଼ିଗଲା ।

ଛାତି ଭିତରଟା ଅସମ୍ଭବ ଭାବରେ ଥରିଲା ତା'ର । ତଥାପି ସେ ଉଠି, ତାକୁ ଟେକି ଉଠାଇଲା । ଦୁହେଁ ବସିରହିଲେ । ପିଲାଟି ଧାଇଁଗଲା । ଖେଳଣା ଗୁଡ଼ିକୁ ଗୋଟେଇ ଆଣି ତା ପାଖରେ ରଖିଲା । ଗୋଟିଏ ବୋହୂ କଣ୍ଢେଇର ମୁହଁଟି ଟୋକିଧରିଲା ତା' ମୁହଁପାଖରେ, ବାଃ ବାଃ ମୋ କଣ୍ଢେଇ ସୁନ୍ଦର କେତେ ସୁନ୍ଦର ।

ଏତିକି କଥାରେ ସ୍ତ୍ରୀଟିଏ ଲାଜରେ ସରମରେ ମରିଯାଇଥାନ୍ତା ଅଥଚ ତୃଷ୍ଣାର ଛାତି କୁରି ହୋଇଗଲା । ସେ ଲୁହଝରା ଆଖିରେ କେବଳ ଚାହିଁ ରହିଲା ତା'ର ସ୍ୱାମୀକୁ । ହଠାତ୍ ଦଉଡ଼ି ଆସି ସେ ତାକୁ ଟେକି ଉଠାଇନେଲା ଆଉ ଖଟ ଉପରକୁ ଫିଙ୍ଗିଦେଲା ହାତରେ ଧରିଥିବା କଣ୍ଢେଇ ସହ । ବଡ଼ଜୋରରେ ତୃଷ୍ଣାର ମଥା ଖଟଧାରରେ ପିଟି ହୋଇ ଫାଟିଗଲା ସେ ତଳେ ପଡ଼ିଗଲା ।

ଚନ୍ଦ୍ରକାନ୍ତା ଦେବୀ ସ୍ଥାଣୁ ପାଲଟି ଯାଇଥିଲେ ନିମିଷକରେ ଘଟିଗଲା ଘଟଣାଟି । ସମ୍ବିତ ଫେରିବା ବେଳକୁ ଦେଖିଲେ ରକ୍ତରେ ଜୁଡୁବୁଡୁ ହୋଇ ତୃଷା ତଳେ ପଡ଼ିଛି ଆଉ ତା' ଉପରେ ବସିଛି ଜିତୁ । ସେ ଦଉଡ଼ିଗଲେ ଜବରଦସ୍ତ ପୁଅକୁ ଭିଡ଼ି ଫୋପାଡ଼ି ଦେବାକୁ । ଚେଷ୍ଟା କରି ଡ଼ାକିଲେ ବଂଶୀ, ବଂଶୀ..... ହୃଷ୍ଟପୁଷ୍ଟ ବିରାଟ ଲୋକଟିଏ ସେ ଘର ଭିତରକୁ ଧାଇଁ ଆସିଲା । ଟାଣି ଘୋଷାଡ଼ି ଜିତୁକୁ ଉଠାଇ ତୃଷାକୁ ତା କବଳରୁ ମୁକ୍ତି କରି ସେମିତି ଟେକିଧରି ବାହାରକୁ ଦଉଡ଼ିଲା । ତୃଷା ନିର୍ବାକ ହୋଇ କେବଳ ଯନ୍ତ୍ରଣାରେ ଦେହ ମନ ଦେଇ ଜଗନ୍ନାଥଙ୍କୁ ମନେପକାଉଥିଲା । ଲୋକଟି ତାଙ୍କୁ ପାଖ ଘରର ଖଟଟି ଉପରେ ବସେଇ ଦେଇ ଚାଲିଗଲା ।

ପରମୁହୂର୍ତ୍ତରେ ହିଁ ଚନ୍ଦ୍ରକାନ୍ତା ଦେବୀ, ଚନ୍ଦ୍ରଶେଖର ବାବୁ ଓ ଆଉ ଜଣେ ଯୁବକ ସେ ଘର ଭିତରକୁ ଆସିଲେ । ସେ ଥିଲେ ଡାକ୍ତରବାବୁ, ସୁଦର୍ଶନ ଯୁବକ ଜଣେ । ତା' ମଥାରେ ବ୍ୟାଣ୍ଡେଜ କରି ସେ କହିଲେ ଏପରି ଦୁଃସାହସ ଆପଣଙ୍କର ଉଚିତ୍ ନଥିଲା ମିସେସ୍ ଛୋଟରାୟ ! ମିସେସ୍ ଛୋଟରାୟ ? କିଏ ? ସେ ନିଜେ ? କିପରି ଗୋଟିଏ ଶିହରଣ ଖେଳିଗଲା ତା' ଦେହରେ । ସେ ଦେଖିଲା ତାକୁ ଦେଖି ତାଙ୍କ ଆଖିରେ ବି ଗୋଟିଏ ଚମକ୍ ଖେଳିଯାଉଛି, ସେ ଆଖିତଳକୁ କଲା । ଧିରେ ଉଠି ସେ ଚାଲିବାକୁ ଲାଗିଲା, ପଛରୁ ଚନ୍ଦ୍ରକାନ୍ତା ଦେବୀ କହିଉଠିଲେ ରହ ମା' ମୁଁ ଯାଉଛି । ସେ ରହିଗଲା ସେ ତା'ର ହାତଧରି ଚାଲିଲେ । ମୋତେ କ୍ଷମା କରି ଦେ ମା' । ମୁଁ ପୁତ୍ରପ୍ରେମରେ ଅନ୍ଧ ହୋଇ ତୋ ଜୀବନ ନଷ୍ଟ କରିଦେଲି । ମୋ ଭୁଲ ମୁଁ ବୁଝିସାରିଲିଣି । ତୁ ମୁକ୍ତ ! ତୁ ଯୁଆଡ଼େ ଚାହୁଁଛୁ ଚାଲି ଯା', ସୁଖରେ ରହ !

ଶିଢ଼ି ଦେଇ ସେମାନେ ଉପରକୁ ଉଠିଗଲେ । ଦେହର ଯନ୍ତ୍ରଣାଠାରୁ ମନର ଯନ୍ତ୍ରଣା ଅଧିକ ଥିଲା, ହାତର ଇଂଜେକ୍‌ସନ ପାଇଁ ସେ ଗଭୀର ନିଦ୍ରାରେ ଅଚେତନ ହୋଇଗଲା ।

ସିନ୍ଦୁରା ଫାଟିଛି ଏଇ ଏବେ !

ଲାଲ ସୂର୍ଯ୍ୟ ଆକାଶରେ ଉଠିଛନ୍ତି

ତୃଷ୍ଣା ନିଜକୁ ପ୍ରସ୍ତୁତ କଲା !

ତଳକୁ ଓହ୍ଲାଇଗଲା, ହାତରେ ଲାଲ ଫୁଲ କିଛି ଧରି ସେ ଶିଡ଼ିର ଶେଷମୁଣ୍ଡର ସେଇ ରହସ୍ୟମୟ ଘର ଆଡ଼କୁ ଆଗେଇଗଲା । ଝରକା ଦେଇ ସେ ଭିତରକୁ ଚାହିଁଲା ଖୁବ୍ ସର୍ନ୍ତପଣରେ ସେ ଠିଆ ହୋଇ ରହିଲା ଅନେକ ସମୟ । ଅର୍ଦ୍ଧଅନ୍ଧକାର ଅର୍ଦ୍ଧଆଲୋକ ରୁମ୍ ଭିତରେ । ଦେହସାରା କମଳ ଘୋଡ଼ି ହୋଇ ଶୋଇଥିବା ବ୍ୟକ୍ତିଟିର ମୁହଁଟି ଅଳ୍ପ ଦିଶୁଥାଏ । ସେଇ ମୁହଁଟି ନିରୀହ, ନିଷ୍ପାପ ଫୁଲଟିଏ ପରି ଲାଗିଲା ତାକୁ । ସେ ଆଶ୍ଚର୍ଯ୍ୟ ହେଲା ଏତେ ହିଂସା, ଭୟଙ୍କର କାହିଁକି ଓ କେମିତି ତାଙ୍କ ଭିତରେ ଦେଖାଦିଏ ! ଆହା ! ଭଗବାନ୍‌ଙ୍କ ସୃଷ୍ଟି ଏତେ ବିଚିତ୍ର କାହିଁକି ? ଯାହାବି ହୁଅନ୍ତୁ, ଯେମିତି ବି ହୁଅନ୍ତୁ ସେ ହିଁ ତାର ସ୍ୱାମୀ, ତା'ର ଇହକାଳ ପରକାଳର ଦେବତା । ହଁ ଏଇକଥା ତ ଦିଦି ତାକୁ ଆଶ୍ରମରେ ବୁଝାଇଥିଲେ । ଝିଅମାନଙ୍କର ସୁରକ୍ଷିତ ପୃଥିବୀ କେବଳ ତା'ର ସ୍ୱାମୀପାଖରେ ହିଁ ନିହିତ ଥାଏ । ସେ ହିଁ ତା'ର ଦେବତା । କିନ୍ତୁ ତା'ର ଦେବତା ଜଣେ ପାଗଳ !

ହାହାକାର କରି ଉଠିଲା ମନ ତା'ର

ଆଖିରୁ ଠପ୍‌ଠପ୍ ହୋଇ ଲୁହ ବହିଚାଲିଲା । ସେ ବିକଳରେ ଚାହିଁଲା କବାଟରେ ପଡ଼ିଥିଲା ତାଲାଟି ।

ଏହି ମଣିଷଟି ତା'କୁ ସତରେ କ'ଣ ସୁରକ୍ଷା ଦେଇପାରିବ ଜୀବନ ଭରି ? ଯିଏ ନିଜେ ନିଜକୁ ସୁରକ୍ଷା ଦେଇପାରିନାହିଁ ? କେତେବେଳୁ ଏମିତି ଠିଆହୋଇଛୁ ମା' ? ଚମ୍‌କି ପଡ଼ି ଚାହିଁଲା ତୃଷ୍ଣା, ଆଗରେ ଚନ୍ଦ୍ରକାନ୍ତା ଦେବୀ ସେ କିଛି କହିଲା ନାହିଁ ।

ଏବେ ହିଁ ସେ ମଥାର ଯନ୍ତ୍ରଣାକୁ ଅନୁଭବ କଲା । ସେ ବୁଲିପଡ଼ି ଚାଲିଗଲା ଦ୍ରୁତଗତିରେ ଶିଢ଼ି ଉପର ଦେଇ ତା'ର ରୁମ୍ ଭିତରକୁ । କାନ୍ଦିକାନ୍ଦି ତକିଆ ଭିଜିଗଲା ସିନା ମନ ତୃପ୍ତ ହେଲାନାହିଁ । କବାଟରେ ଠକ୍‌ଠକ୍ ଶୁଣି ତା'ର ଚେତା ଫେରିଲା ।

କିଏ ? ମୁଁ, ଡ଼ାକ୍ତର ସରୋଜ । ଆସନ୍ତୁ । ଡ଼ାକ୍ତରବାବୁ ଘର ଭିତରକୁ ଆସିଲେ, ସାଥିରେ ଚନ୍ଦ୍ରକାନ୍ତା ଦେବୀ । ମଥାର ପଟି ବଦଳାଇ ଭିତରେ ହିଁ ସେ ଠିକ୍ ଲକ୍ଷ୍ୟ କରିପାରିଲା ତାଙ୍କ ଆଖି ଭିତରର ସେଇ ସମ୍ମୋହିତ ଭାବ । ସେ ବି ତା' ଛାତିତଳେ କେମିତି ଏକ ହଲ୍‌ଚଲ୍ ଭାବ ଅନୁଭବ କଲା । ଚମ୍‌କି ପଡ଼ିଲା ଭିତରେ ଭିତରେ ସେ ।

ଆଜି କେମିତି ଫିଲ୍ କରୁଛନ୍ତି ମିସେସ୍ ଛୋଟରାୟ ? ଭଲ ।

ତୁମେ ଦୁହେଁ କଥା ହୁଅ, ମୁଁ ଚା ପଠାଉଛି, ଉଠି ଚାଲିଗଲେ ଚନ୍ଦ୍ରକାନ୍ତା ଦେବୀ ।

ସେମାନେ ଦୁହେଁ କିନ୍ତୁ ନୀରବ ରହିଲେ ଅନେକ ସମୟ । ତୃଷ୍ଣାର କିଛି କହିବାକୁ ନଥିଲା । ବହୁତ କଥା ପଚାରିବାକୁ ଚାହିଁ ବି ଡ଼ାକ୍ତର କିଛି ପଚାରି ପାରୁନଥିଲେ ।

ଚା ଆସିଯିବା ପରେ ସେ ଉଠିଲେ, ଏଥର ମୁଁ ଆସୁଛି । ଦୁହିଁଙ୍କର ମନ ଚାହୁଁଥିଲା ଆଉ କିଛି ସମୟର ସାନ୍ନିଧ୍ୟ ହେଲେ କେମିତି ?

ତୃଷ୍ଣା ଅନେକ ସମୟ ଅନ୍ୟମନସ୍କ ଭାବରେ ବସିରହିଲା ।

ଘର ଭିତରକୁ ପଶି ଆସିଲେ ଚନ୍ଦ୍ରଶେଖର ବାବୁ ।

ଏମିତି କେମିତି କାଟିବୁ ଜୀବନ ମା' ।

ଟିକେ ବାହାରକୁ ଯା, ବୁଲାବୁଲି କର । ତୁ ତ ଏ ଘରର ବୋହୂ ନୁହେଁ ଝିଅ ହୋଇ ଆସିଛୁ, ଏତେ ବ୍ୟସ୍ତ ହେଲେ ଚଳିବ । କଥାଗୁଡ଼ା କହିସାରିବା ବେଳକୁ ତାଙ୍କ ତଣ୍ଟି ପାଖରୁ ଶବ୍ଦଗୁଡ଼ା ଯେ ଅତିକଷ୍ଟରେ ବାହାରୁଛି ଏକଥା ସ୍ପଷ୍ଟ ବୁଝିପାରିଲା ତୃଷ୍ଣା । ସେ ସିଧାସଳଖ ଭାବରେ ତାଙ୍କ ଆଖି ଭିତରକୁ ଗଭୀର ଭାବରେ ଚାହିଁଲା । ମୋ ଜୀବନ ଏମିତି ନଷ୍ଟ କଲେ କାହିଁକି ? ସେ ଚମ୍‌କି ପଡ଼ିଲେ ।

କିଛି ସମୟପରେ କହିଲେ । ତୋ ମା'କୁ ମୁଁ ବହୁତ କହିଥିଲି ଏଠାରେ ରହିବା ପାଇଁ ଅଥଚ ସେ ମୋ କଥା ଶୁଣିଲା ନାହିଁ । ଏହି ଘର ବାହାରକୁ ଯାଇ

ତା'ର ଜୀବନ ବିପର୍ଯ୍ୟସ୍ତ ହୋଇଗଲା । ସେହିପରି ତୋର ମଧ୍ୟ ହୋଇଥାନ୍ତା ତୋତେ ସବୁଦିନ କେମିତି କେଉଁ ଅଧିକାରରେ ଏଠାରେ ରଖିଥାନ୍ତି ମୁଁ । ତୋର ମୁଁ କିଏ ? ତୁ ମୋର କ'ଣ ? କହ ତୁ ନିଜେ କହ ! ସେଇଥିପାଇଁ ମୁଁ ଚନ୍ଦ୍ରକାନ୍ତା କଥାରେ ରାଜିହେଲି, ତୁ ଯଦି ଭାବୁଥାଉ, ମୁଁ ଭୁଲ କରିଛି ତେବେ ମୋତେ ଶାସ୍ତି ଦେ । କିନ୍ତୁ ଏହିପରି ନିଜକୁ କଷ୍ଟ ଦେଇ ଏକାଏକା ସହିଯା ନା । କେବଳ ତୋର ଭଲ ପାଇଁ, ତୋର ସୁରକ୍ଷା ପାଇଁ ହିଁ ମୁଁ ଏହି ପଦକ୍ଷେପ ନେଇଛି । ଏଥର ନୀରବି ଯାଇଥିଲା ତୃଷ୍ଣା ! କ'ଣ ବି କହିଥାନ୍ତା ସେ ।

ସେଦିନ ସେ ତଳକୁ ଗଲା । ଚାଲିଚାଲି ରୋଷେଇ ଘରକୁ ରୋଷେଇ ଘରର କାମ କରୁଥିବା ଲୋକଟି ତାକୁ ଦେଖି ଆଶ୍ଚର୍ଯ୍ୟ ହେଲା । ସେ କହିଲା ଦିଅ ଆଜି ମୁଁ ଚା ନେଇଯିବି । ଟେବୁଲ ପାଖରେ ଚନ୍ଦ୍ରଶେଖର ବାବୁ, ଚନ୍ଦ୍ରକାନ୍ତା ଦେବୀଙ୍କ ସହ ବସିଥିଲେ ଡ଼ାକ୍ତରବାବୁ ।

ତାକୁ ଦେଖି ସେମାନେ ବି ଆଶ୍ଚର୍ଯ୍ୟ ହୋଇଗଲେ, ଖୁସି ବି ! ସେ ସମସ୍ତଙ୍କୁ ଚା ଦେଲା ।

ଆଗେଇ ଚାଲିଲା ଶିଡ଼ିର ଶେଷମୁଣ୍ଡର ଘରଟି ଆଡ଼କୁ । ସେ ଜାଣିଲା ତା' ପଛପଟେ ସମସ୍ତେ ତାକୁ ଚାହିଁ ରହିଛନ୍ତି । ରୁମ୍‌ର ତାଲା ଖୋଲା ଥିଲା । ସେ କବାଟ ଖୋଲିଲା, ଦେଖିଲା ଖଟଟି ଉପରେ ଶୋଇ ରହିଛନ୍ତି ସ୍ୱାମୀ ତା'ର । ଛାତିକୁ ଦମ୍ଭଧରି ସେ ଘର ଭିତରେ ପାଦ ଦେଲା, ଧିରେଧିରେ ଖଟଟି ଆଡ଼କୁ ଆଗେଇବା ବେଳକୁ ସେ ଦମ୍‌ଦମ୍ ଶବ୍ଦ ଶୁଣିଲା ତାର ଛାତି ଭିତରୁ ପାଦତଳୁ ଯେମିତି ପୃଥିବୀର ମାଟି ଧସିଯାଇ ସେ କେଉଁ ଅତଳ ଗହୀରରେ ଖସିପଡୁଛି । ଆଖି ଭିତରୁ ଜୁଳୁଜୁଳୁଆ ପୋକ ବାହାରିଯାଉଛି । ତା' ମଥାରୁ ଝାଳ ବାହାରିବାକୁ ଲାଗିଲା, ଦେହ ଝିମ୍‌ଝିମ୍ ହେଲା । ସେ ପଡ଼ିଯାଉଯାଉ ହଠାତ୍ ଦେଖିଲା ଦୁଇଟି ହାତ ତାକୁ ଧରି ପକାଉଛି ସେ ଆଖି ବନ୍ଦ କଲା । ଡ଼ାକ୍ତରଙ୍କ ନିର୍ଭର ଆଶ୍ୱାସର ସାହାରା ତାକୁ ମିଳିଥିଲା ସତ ମାତ୍ର ତା' ଯେ ତାଳଗଛ ଛାଇ !

ଯିଏ ତାର ସାରାଜୀବନର ସାହାରା ସେ ଯେ ଅଥର୍ବ, ବାଚାଳମସ୍ତିଷ୍କ, ଦୁର୍ବଳ, ଚିକିତ୍ସାଧୀନ । ଆଖିରୁ ବହିଯାଉଥିବା ଲୁହର ଧାରାକୁ ଡ଼ାକ୍ତର ପୋଛିଦେଲେ,

କବାଟ ବଂଦ କରି ତାଲା ଲଟକାଇ ଦେଲେ କହିଲେ ଜିତୁର ଦେହ ଭଲ ନାହିଁ, ସେ ଶୋଇଛି । ଆପଣ ଏମିତି ଦୁଃସାହାସ କାହିଁକି କରୁଛନ୍ତି ବାରମ୍ବାର । ପିଲାଟି ଦିନରୁ ସେ ଯେତିକି ଜଣଙ୍କୁ ଦେଖିଛି ,ଜାଣିଛି ସେଇମାନଙ୍କୁ ହିଁ ସେ ହୃଦୟରେ ଗ୍ରହଣ କରିଛି । ମୋତେ ତା ସହ ମିଶିବାକୁ ଦୀର୍ଘ ଦଶବର୍ଷ ପରିଶ୍ରମ କରିବାକୁ ହୋଇଛି । ତଥାପି ବି ତା' ମୁଣ୍ଡରେ କେତେବେଳେ କ'ଣ ଯେ ହୁଏ ମୋତେ ବି ସେ ଆକ୍ରମଣ କରିଛି, ଆହତ କରିଛି ବହୁତ ଥର । କଥା ହେଲା ମୁଁ ଏହି ରୋଗ ଓ ରୋଗୀଙ୍କ ଉପରେ ଗବେଷଣା କରୁଛି ସେଥିପାଇଁ ସେଇ ପରୀକ୍ଷାଗାରର ବିଷୟବସ୍ତୁଟି ପାଇଁ ମୋତେ ଅକ୍ଲାନ୍ତ ପରିଶ୍ରମ କରିବାକୁ ହେଉଛି । କିନ୍ତୁ ଆପଣ ଏଇ କୋମଳବୟସରେ କାହିଁକି ଏତେ କଷ୍ଟ ପାଉଛନ୍ତି ? ସେଥିରେ ଆପଣଙ୍କର ମୁଣ୍ଡ ପଶେଇବା କିଛି ଦରକାର ନାହିଁ । ଡ଼କ୍ଟର ଆପଣ ନିଜକାମ ଦେଖନ୍ତୁ । ଚଢ଼ାଗଲାରେ କହିଲେ ଚନ୍ଦ୍ରକାନ୍ତା ଦେବୀ । ତୃଷା ଓ ଡ଼କ୍ଟର ଦୁଇଜଣଯାକ ଚମ୍‌କି ପଡ଼ି ଚାହିଁଲେ । ସେମାନଙ୍କ ଅଲକ୍ଷ୍ୟରେ ସମସ୍ତେ ଆସି ପଛ ପଟେ ଠିଆ ହୋଇଛନ୍ତି । ଡ଼କ୍ଟରଙ୍କ ମୁହଁ କଳା ପଡ଼ିଗଲା । ସେ ସେଇକ୍ଷଣି ସେଇ ସ୍ଥାନ ଛାଡ଼ି ଚାଲିଗଲେ ।

ଚନ୍ଦ୍ରକାନ୍ତାଦେବୀ କହିଚାଲିଲେ । ଦେଖ୍ ମା' ! ଅଗ୍ନୀକୁ ସାକ୍ଷୀରଖି, ଦଶଦିଗପାଳଙ୍କୁ ସାକ୍ଷୀରଖି ଦଶକର୍ମ କରି ତୁ ଜିତୁକୁ ଜୀବନ ଭରି ସାଥି ଦେବାପାଇଁ ନିଜେ ତା'ର ସ୍ତ୍ରୀ ହୋଇଛୁ । ପତ୍ନୀବ୍ରତ ପାଳନ କରିବା ତୋର ଧର୍ମ । ସେ ତୋର ଇହକାଳ ପରକାଳର । ତା'ର ସେବା ଯତ୍ନ କରିବା, ତା' କଥା ବୁଝିବା ହେଲା ତୋର ସାରାଜୀବନର କାମ । ଡ଼କ୍ଟର ଆସିଛନ୍ତି ରୋଗ ଚିକିତ୍ସା ପାଇଁ, ପଇସା ନେଉଛନ୍ତି ମୋଟା ଅଙ୍କର । ତାଙ୍କ ସହ ମିଶିବା, ଏମିତି କଥାକଥା କେ କାନ୍ଦିବା ତୋର ଉଚିତ୍ ନୁହେଁ । ଗୋଟିଏ ବିବାହିତ ସ୍ତ୍ରୀ ପାଇଁ ତାର ସ୍ୱାମୀ ହିଁ ସବୁକିଛି, ପରପୁରୁଷଙ୍କ କଥା ଭାବିବା ବି ତା ପାଇଁ ପାପ ।

ଝଡ଼ପରି ଏତିକି କହି ବାହାରିଗଲେ ଚନ୍ଦ୍ରକାନ୍ତ ଦେବୀ । ସ୍ଥାଣୁ ହୋଇ ଠିଆ ହୋଇ ରହିଥିଲା ତୃଷା !!

ପାପ ! ପୂଣ୍ୟ ! ମନେମନେ ଭାବି ଅଟ୍ଟହାସ୍ୟ କଲା ସେ ନିଜକୁ । ନିଜର ଭାଗ୍ୟକୁ ବିଦ୍ରୁପ କଲା ।

ତା'ର ଇହକାଳ ପରକାଳ ଦେବତା ଗୋଟିଏ ପରୀକ୍ଷାଗାରର ବିଷୟବସ୍ତୁ ଆଉ ସେ ତାଙ୍କ ପାଇଁ ଗୋଟିଏ ନିର୍ଜିବ କଣ୍ଢେଇ । କିଏ ସ୍ୱାମୀ, କିଏ ସ୍ତ୍ରୀ ।

ଧିରେଧିରେ ସେ ପଛକୁ ଫେରି ପୁଣି ଶିଢ଼ି ଦେଇ ଉପରକୁ ଉଠିଗଲା ।

ସେଦିନ ସାରା ସେ କିଛି ଖାଇଲା ନାହିଁ । କ'ଣ କରିବ ନ କରିବ ଭାବିଭାବି ସେ ଅସ୍ଥିର ହେଲା । କେତେ ଦୃଢ଼ କରି ସେ ମନକୁ ସେ ଭାବିଥିଲା ଯାହାହେବା ଟା ହୋଇଯାଇଛି ସେ ବି ଜୀବନ ଏମିତି କାଟିଦେବ । କିନ୍ତୁ ଡ଼ାକ୍ତରଙ୍କ କଥା ତାକୁ ଭାବିବାକୁ ବାଧ କଲା ।

କନ୍ୟାଶ୍ରମରେ ଲାଳିତ ପାଳିତ ଏକ ଅନାଥଝିଅ ଜୀବନର ଯେତିକିଟି ଶୀତର ଥଣ୍ଡା, ଗ୍ରୀଷ୍ମର ନିଦାଘ, ବସନ୍ତର କୁହୁ ତାନ, ବୈଶାଖର ଝାଞ୍ଜି, ବର୍ଷାର ବର୍ଷଣମୁଖର ରାତି ଦେଖିଆସିଥିଲା, ସବୁବେଳେ ତା' ମନ ଭିତରେ ଏକ ଆର୍ତ୍ତନାଦ, ଏକେଲାପଣ, ହାହାକାର ଶୁଣିଥିଲା । ମନେମନେ ସବୁ ସମୟରେ ଏକ ପ୍ରତ୍ୟୟ ଆଣିବାକୁ ଚେଷ୍ଟା କରିଥିଲା । ଏକ ସୁଖି ପରିବାରର, ଏକ ପ୍ରାଚୁର୍ଯ୍ୟମୟ ଜୀବନର ସ୍ୱପ୍ନରେ ଆଚ୍ଛନ୍ନ ରହୁଥିଲା ମନ ତା'ର । ସେଇ ପିଲାଟି ଦିନରେ ତା' ମା' ତା'ର ଅବଚେତନ ମନରେ ଯେଉଁ ସ୍ୱପ୍ନର ଛବିଟି ଆଙ୍କି ଦେଇଥିଲା ତାକୁ ହିଁ ରଙ୍ଗୀନ କରି ସେ ସଜେଇ ରଖିଥିଲା । ବାସ୍ ସେଇଥିପାଇଁ ହିଁ ଜଣେ ଅଜଣା ଅଶୁଣ ଲୋକକୁ ବିଶ୍ୱାସ କରି ସେ ତାଙ୍କ ସହିତ ଏଠିକୁ ଆସିଥିଲା । ଏଠି ବୋଗେନ୍‌ଭିଲ୍ଲା ଗଛର ରଙ୍ଗବେରଙ୍ଗ ବଗିଚା ଅଛି, ଅଛି ବି ବାସ୍ନାହୀନ କାକ୍‌ଟସ୍ ଗଛ । ସେ ନିଜକୁ ସେଇ କାକ୍‌ଟସ୍‌ର କଣ୍ଟା ବୋଲି ଆବିଷ୍କାର କଲା । ସାରାଜୀବନ ସେ ଏମିତି ଅତୃପ୍ତ ଆତ୍ମାଟିଏ ହୋଇ ରହିଥିବ । ଏମିତି ତା'ର ରୂପ, ଯୌବନ, ସ୍ନେହୀମନଟିଏର ଆକୁଳ ଦୀର୍ଘଶ୍ୱାସ କାଳର କରାଳ ଗର୍ଭରେ ଲୀନ ହୋଇଯିବ ସିନା ଆଉ କିଛି ଘଟିବ ନାହିଁ । ଏହି ବଡ଼ଲୋକଙ୍କ ଘରେ ବଡ଼ମନଟିର ସନ୍ଧାନ ସେ ପାଇନାହିଁ । ଯେଉଁ ଆୟାଟିଏ ଦରକାର ଥିଲା ସେଇଥିପାଇଁ ଜୀବନସାରା ପାଖରେ ରଖିବାର ପ୍ରତିଶ୍ରୁତିଟି ପାଇଁ ହିଁ ସେ ତୃଷ୍ଣାମଥାରେ ନିଜ ପୁଅନାମରେ ସିନ୍ଦୂର ଲଗାଇଦେଲେ ।

କି ଛଳନା !

କି ପ୍ରତାରଣ !

ଅନ୍ୟର ଜୀବନକୁ ନେଇ ଖେଳଖେଳିବାର ଅଧିକାର ତାଙ୍କୁ ଦେଲା କିଏ ?

ଡ଼ାକ୍ତରଙ୍କ ସହ ଯେତିକି ବି ସମୟ ସେ ବିତାଇଛି ତାକୁ ବହୁତ ଖୁସି ଲାଗିଛି । ଏମିତି ଗୋଟିଏ ଅନୁଭବ ହୋଇଛି ଯେ ଯାହାକୁ ପାଥେୟ କରି ହୁଏତ ସେ ଆଁଗେଇ ପାରନ୍ତା ଜୀବନର ଆଉ କିଛି ପଥ ! ଅଥଚ ତା' ମୁହଁରେ ଝଲମଲ କରୁଥିବା ସେଇ ପ୍ରତ୍ୟୟର ଚିହ୍ନ । ଆତ୍ମବିଶ୍ୱାସର ଏକ ସ୍ୱତନ୍ତ୍ର ଅନୁଭବକୁ ପଢ଼ିନେଇ ଚନ୍ଦ୍ରକାନ୍ତା ଦେବୀ ତାକୁ ଆଘାତ ଦେବାକୁ ପଛେଇଲେ ନାହିଁ । ସେ ତୃଷ୍ଣାକୁ ଦେଖନ୍ତି ନିଜ ବୋହୂ ଭୂମିକାରେ । ଯିଏ କି ଏକ ଅସ୍ୱାମୀର ସ୍ତ୍ରୀ । ଏମିତି ଏକ ସ୍ୱାମୀ ଯିଏ କି ମଣିଷ ବୋଲି ନିଜକୁ ଜାଣେନାଁ, ସ୍ତ୍ରୀ ବୋଲି ତାକୁ ଚିହ୍ନେନା । ସବୁବେଳେ ସେ ତୃଷ୍ଣାକୁ ଏକ କଣ୍ଢେଇ ଭାବେ । ମାଟିର ସଖି କଣ୍ଢେଇ । ଯାହାର ଚେହେରା ଏକଦା ତାକୁ ବଜାରରୁ ଆଣିଦେଇଥିବା ମାଟିର ବୋହୂ କଣ୍ଢେଇଟି ସହ ମିଶିଯାଏ । ବାହାଘର ଦିନ ଜରି ଓଢ଼ଣୀ ତଳୁ ଦିଶୁଥିବା ତୃଷ୍ଣାର ମୁହଁଟି ଦେଖି ସେ ତା'ର ମା' କଥାକୁ ବିଲକୁଲ୍ ସତ ଭାବିଥିଲା ଯିଏ କି ଦିନେ ଗୋଟିଏ କଣ୍ଢେଇ ଆଣିଦେବି ଯେ ଜୀବନସାରା ତା' ସହ ଖେଳିବୁ ବୋଲି ପ୍ରତିଶ୍ରୁତି ଦେଇଥିଲେ । ଦିନେ ଏଇ କଣ୍ଢେଇଟିକୁ ଆଣି ଦେଇଥିଲେ ମଧ୍ୟ । ସେ ସେଇ ସ୍ୱାମୀନାମକ ମଣିଷଟିର ସ୍ତ୍ରୀ ବୋଲି ବେଦୀରେ ଶପଥ ନେଇଛି ତେଣୁ ସେ ଜୀବନଭରି ସେକଥାକୁ ମନେ ରଖିବା ଉଚିତ୍ । ଚନ୍ଦ୍ରକାନ୍ତାଙ୍କ ଶାଶୂ ଆଉ ଜିତୁକୁ ସ୍ୱାମୀ ଭାବି ସେମାନଙ୍କର ସେବା ଯତ୍ନ କରିବା ଉଚିତ୍ ।

ସେ ଅସ୍ଥିର ହୋଇ ଉଠିଲା । ଫେରିଯିବ କି ଆଶ୍ରମକୁ ? ନହେଲା ନାହିଁ ପରିବାର ଟିଏ ପାଇବାର ସ୍ୱପ୍ନ ସ୍ୱପ୍ନରେ ରହିଯାଉ । ଗୋଟିଏ ପେଟ ପୋଷିବାର ଯୋଗ୍ୟତା କ'ଣ ତାର ନାହିଁ ? ଭାରି ମନେ ପଡୁଛି ଆଶ୍ରମର ସେଇ ନିରୁତା ସମୟଗୁଡ଼ା କଥା । ଯେଉଁଟା ଏକ୍‌ଦମ୍ ତା'ର ନିଜର ଥିଲା । କିନ୍ତୁ ଏଠି ସମୟ ଅସମୟରେ ତଳୁ ଡ଼ାକରା ଆସେ । ଅନେକ ଲୋକଙ୍କୁ ଚନ୍ଦ୍ରକାନ୍ତାଦେବୀ ଚିହ୍ନାଇ ଦେଖାନ୍ତି ଜିତୁର ବୋହୂ ଭାବରେ । ସଜାସଜି ହୋଇ କଣ୍ଢେଇଟିଏ ପରି ଯାଇ ପ୍ରଣାମ କରି ଫେରିବା ବେଳକୁ ସେ ଅଣନିଶ୍ୱାସୀ ହୋଇଯାଏ । ସବୁରି ଆଖିରେ ଏକ ଅବିଶ୍ୱାସ, ଏକ ବିସ୍ମୟ । ଗୋଟିଏ ପାଗଳକୁ ବାହାହେବାକୁ ତା' ପରି

ଅନିନ୍ଦ୍ୟ ସୁନ୍ଦରୀ ଝିଅଟିଏ ରାଜିହେଲା କେମିତି ? କାହିଁକି ? ତା'ର ଅସହାୟତାକୁ ବା' ବୁଝିବ କିଏ ? ଚନ୍ଦ୍ରକାନ୍ତାଦେବୀ କହନ୍ତି ଏ ସହରସାରା ତା' ମା'ର କଳଙ୍କିତ ଜୀବନର କାହାଣୀ ସମସ୍ତେ ଜାଣନ୍ତି । ସେଇ କଳାକାହାଣୀର ଫଳ ସେ । ସତରେ କ'ଣ ବାହାର ପୃଥିବୀ ଯେଉଁ ପ୍ରଶ୍ନ ସବୁର ସମ୍ମୁଖୀନ ହେବ ସେ ତାକୁ ସାମ୍ନା କରିବାର ଧୈର୍ଯ୍ୟ, ସାହସ ଅଛି ତା'ର୍ ?

ହେ ଭଗବାନ୍ ମୋତେ ମୁକ୍ତି ଦିଅ

ଆକୁଳ ଭାବରେ ଚିତ୍କାର କଲା ସେ ।

ସେ ମନେମନେ ସ୍ଥିର କରିଦେଲା ସେ ଚାଲିଯିବ ଆଶ୍ରମକୁ । ଫେରିଯିବ ସେଇ ନିର୍ଭର ଆଶ୍ରୟକୁ, ଯିଏ କି ଜୀବନଭରି ତାକୁ ସାହାରା ଦେଇ ବି କେବେ ତାକୁ ଘୃଣା କରିନାହିଁ । ତା'ର ଅସହାୟତାର ଫାଇଦା ଉଠାଇନାହିଁ ।

ସେ ତା'ର ସବୁ ଗହଣାଗାଣ୍ଠି, ଦାମୀକିଆଶାଢ଼ୀ ଖୋଲି ରଖିଲା । ପିନ୍ଧିଲା ଆଶ୍ରମର ପୁରୁଣା ଲୁଗା । ଶିଢ଼ି ଦେଇ ଓହ୍ଲାଇଗଲା ତଳକୁ । ତା ପାଦ ଝିମ୍‌ଝିମ୍ କରୁଥିଲା । ତା' ହାତରେ ଦୁଇପଟ ଶଙ୍ଖା, ମଥାର ସିନ୍ଦୂର ବିନ୍ଦୁ ତାକୁ ବିବାହିତର ମର୍ଯ୍ୟାଦା ଦେଉଥିଲା ସତ, ମାତ୍ର ବିବାହର ଅର୍ଥ ସେ ଜାଣିପାରିଲାନି, ଏତିକି ଦୁଃଖ, ଅବଶୋଷ ହୃଦୟରେ ନେଇ ସେ ଆଗେଇ ଚାଲିଲା ଡ଼ାଇନିଙ୍ଗ ହଲ୍ ଆଡ଼େ ।

ହାଲୋ ! ଚମ୍‌କି ପଡ଼ି ଚାହିଁଲା । ଆଗରେ ସୁଦର୍ଶନ ଯୁବକ ଜଣେ । ଆଖିରେ ଦୁଷ୍ଟାମୀର ହସ, ହାତରେ ରକ୍ତ ଗୋଲାପର ସ୍ତବକଟିଏ !

ମୁଁ ଜନ୍, ଡ଼ଃ ଅତନୁ ସାମନ୍ତରାୟଙ୍କ ଆମେରୀକୟ ପୁଅ । ଇଂରାଜୀରେ କହିଲେ ସେ । ତୁମ ଘରକୁ ଆଜି ଆସି ପହଞ୍ଚିଛି । ତମେ ଜିତୁର ସ୍ତ୍ରୀ ତ ! କି ସିନ୍ଦୁର, କି ମାର୍‌ଭେଲସ୍ ଫିଗର କି ବଡ଼ି ସେପ୍ ! ତା ଉଠରେ, ଆଖିରେ ସବୁଆଡ଼େ ପିପାସିତ ହୃଦୟର କାମନା ଜର୍ଜରିତ ଇଙ୍ଗିତରେ ଅଣନିଶ୍ୱାସୀ ହୋଇଗଲା ତୃଷା । ତା ହାତରୁ ଫୁଲଟି ନେବାକୁ ବାଧହେଲା ସେ । ଗୋଲାପ ଫୁଲର ସେଇ ଡ଼େମ୍ପରେ ଥିବା କଣ୍ଟାରେ ବାଜି ତା' ହାତ ଆଙ୍ଗୁଠିରୁ ରକ୍ତ ଝରିଯାଉଛି । ଆଃ... ଯନ୍ତ୍ରଣାରେ କ୍ଷୀଣ ସ୍ୱରଟିଏ ତା' ପାଟିରୁ ବାହାରିଗଲା । ଜନ୍ ହାତ ପାପୁଲିରେ ତା'ର ଆଙ୍ଗୁଠିକୁ ଚାପିଧରିଲା ବେଳକୁ , ସେ ଟାଣି ଆଣିଲା ତା'ର ହାତକୁ ଆଉ ଫେରିପଡ଼ି ଦୌଡ଼ି

ଦୌଡ଼ି ଚାଲିଆସିଲା ଶିଡ଼ି ଦେଇ ଉପରକୁ । ପଛରୁ ଶୁଭୁଥିଲା ଜନ୍‌ର ହସ ଏକ ଶଇତାନ୍‌ର ଅଟ୍ଟହାସ୍ୟ ପରି ।

ସେ ତା' ରୁମ୍ ଭିତରକୁ ଦୌଡ଼ ଯାଇ ଜୋର୍‌ରେ କାବଟ ବଂଦ କରିଦେଲା । ତା' ଗୋଡ଼ ହାତ ମୁଣ୍ଡ ଦେହ ଜୋର୍‌ରେ ଥରୁଥିଲା । ସେ ଖଟରେ ପଡ଼ିଯାଇ କଇଁକଇଁ ହୋଇ କାନ୍ଦିବାକୁ ଲାଗିଲା । ଯେତେବେଳେ ସେ ନିଜ ଦେହରୁ ଗହଣାଗୁଡ଼ା ଖୋଲିଦେଇ ସେଇ ଦାମୀ ଲୁଗାଟିକୁ କାଢ଼ି ଫିଙ୍ଗି ଦେଇଥିଲା ସେ ନିଜକୁ କେତେ ହାଲୁକା ଅନୁଭବ କରିଥିଲା । ସେତେ ଯେମିତି କଣ୍ଟାର ମୁକୁଟକୁ କାଢ଼ି ଫିଙ୍ଗିଦେଇଛି ଯେଉଁଟା ଅହରହ ତା ମଥାକୁ କ୍ଷତାକ୍ତ କରୁଥିଲା । ତା'ର ଯନ୍ତଣାର ବେଦନାର ରାଗିଣୀଟା କାହାକୁ ନ ଶୁଭିଲେ ବି ତା' ହୃଦୟ ତ ଶୁଣୁଥିଲା । କିନ୍ତୁ ଏବେ ସେ କରିବ କ'ଣ ? ଏଠୁ ଯିବ କେମିତି । ଜନ୍‌ଟି କିଏ ? ଚାହାଁଣୀ କଥାର ଭାବଭଙ୍ଗୀ ତାକୁ ଖରାପ ଲାଗିଲା କାହିଁକି ? ସେ ଅତନୁ ସାମନ୍ତରାୟଙ୍କର ଆମେରିକୀୟ ପୁଅ ! ସେଇ ଜନ୍ ପିତା ଯିଏ ଦିନେ ହୁଏତ ତା'ର ପିତା ହୋଇଥାନ୍ତେ । ସେ ଭାବିଲା ଯଦି ମା'କୁ ପାଖରେ ରଖି ତାକୁ ପିତାର ସ୍ନେହ ଦେଇ ସମାଜ ଆଗରେ ପିତାର ନାମ ନେଇଥାନ୍ତେ ସେ କ'ଣ ଏମିତି ବାରଦ୍ୱାର ଶୁଣ୍ଢିପିଣ୍ଡା ହୋଇ ଯନ୍ତଣାର ଜୀବନ ଜୀଇଁବାକୁ ବାଧ ହୋଇଥାନ୍ତା । କ'ଣ ଦୋଷଥିଲା ତା' ମାଁ'ର ! ମା' ପେଟ ଭିତରେ ବଢୁଥିବା ତୃଷ୍ଣାର କ'ଣ ଦୋଷ ଥିଲା ? କେଉଁ ଅପରାଧରେ ତାପରି ନିଷ୍ପାପ କଳିକାଟିକୁ ଦୁନିଆଁର ଆଲୋକ ଦେଖିବା ଆଗରୁ ମା' ହୋଇ ମାରିଦେଇଥାନ୍ତ । କିନ୍ତୁ ମା ବି ତାକୁ ବଞ୍ଚେଇ ରଖିଲା କାହିଁକି ? ସାରା ଜୀବନ ଯନ୍ତଣାରେ ଜୀଇଁଲା, ପୁଣି ତା ପାଇଁ ବି ନର୍କରେ ଜୀଇଁବାକୁ ଗୋଟିଏ ଜୀବନ ରଖିଗଲା । କୋହରେ ରୁନ୍ଧି ହୋଇଗଲା ସେ । କବାଟରେ କାହାର କରାଘାତ ଶୁଣି ସେ ପ୍ରକୃତିସ୍ଥ ହେଲା । ତା ମା'ର ଜୀବନ ଓ ତା'ର ଜୀବନ ଗୋଟିଏ ସୂତାରେ ଦୁଇଟି ଗଣ୍ଠି ପରି ଲାଗେ ତାକୁ । ଦିନରାତି କେବଳ ସେଇକଥା ଭାବିଭାବି କାଟିଚାଲିଛି ସେ ।

ଡ଼ରିଡ଼ରି କବାଟ ଖୋଲିଲା ସେ । ଆଗରେ ଚନ୍ଦ୍ରକାନ୍ତା ଦେବୀ, ପଛରେ ଜନ୍ ! ସେ କିଛି କହିଲାନି ସେମାନେ ପଶିଆସିଲେ ରୁମ୍ ଭିତରକୁ ।

ବୋହୂ ! ଆଜି ଏମିତି ବେଶ କାହିଁକି ହୋଇଛି । ଜନ୍ ଆସିଛି ଚବିଶ୍ ବର୍ଷ ପରେ । ଆମ କାହାରି ଗୋଡ଼ ତଳେ ଲାଗୁନି । ଘରେ ଉତ୍ସବର ଆୟୋଜନ

ଚାଲିଛି ତମେ ଘର ବୋହୂ ହୋଇ ଏମିତି ହେବାଟା କ'ଣ ଶୋଭା ଦିଶୁଛି । ଜନ୍‌କୁ ଆଡ଼େଇ ଏମିତି ଦୌଡ଼ି ଆସିଲ କାହିଁକି ? ବାରମ୍ବାର କହୁଛି ତମେ ଛୋଟରାୟ ବଂଶର ବୋହୂ । ତୁମକୁ ଏଇଟା ସବୁବେଳେ ମନେରଖିବାକୁ ହେବ । ଅସମ୍ଭବ କଥା ସମ୍ଭବ ହୋଇଛି କେବଳ ତୁମରି ଯୋଗୁଁ । ଜିତୁର ବାହାଘର ଖବର ପାଇଁ ଅତନୁ ତା'ର ପୁଅକୁ ପଠାଇଛି । ଭାଇଙ୍କର ପାଦତଳେ ଲାଗୁନି । ନାତିକୁ ଦେଖି ଖୁସିରେ ଆମ୍ଭହରା ହେଉଛନ୍ତି । ବହୁବର୍ଷ ପରେ ପାର୍ଟିର ଆୟୋଜନ ଚାଲିଛି । ତମେ ଶୀଘ୍ର ପ୍ରସ୍ତୁତ ହୋଇ ତଳକୁ ଆସ ।

କିନ୍ତୁ............... ତୃଷା କିଛି କହିବାକୁ ଚାହୁଁଥିଲା ।

କିନ୍ତୁ ଫିନ୍ତୁ କିଛି ନାହିଁ । ଯାହା କହିଲି ସେଇଆ କର, ହୁକୁମ୍ ଦେଇ ଦୁମ୍‌ଦୁମ୍ ହୋଇ ଚାଲିଗଲେ ଚନ୍ଦ୍ରକାନ୍ତା ଦେବୀ । ସେଇ ଚାହାଁଣୀରୁ କିଛି ଫିଙ୍ଗିଦେଇ ଜନ୍ ମଧ୍ୟ କହିଲା ମୁଁ ତୁମକୁ ଅପେକ୍ଷା କରୁଛି ଭାଉଜ ଜଲ୍‌ଦି ଆସ !

କ'ଣ କରିବ ତୃଷା ! ଅୟୁତ ବେଦନାରେ ମନ୍ଥି ହୋଇଗଲା ତା'ର ହୃଦୟ । ସେ ପୁଣି ସେଇ କଣ୍ଟାର ମୁକୁଟ ପିନ୍ଧିବାକୁ ବାଧ୍ୟ ହେଲା । ଆଜି ପାର୍ଟି ସରିଗଲେ ହିଁ ସେ ଚାଲିଯିବ । ମୁକ୍ତି ଦରକାର ତାକୁ ଆଉ ପାରିବନି ।

ବହୁ ଲୋକଙ୍କ ଭିତରେ ବୋହୂ ହୋଇ ବସିଥିଲା ସେ । ଏମିତି ଏକ ବୋହୂ ଯାହାର ବର ନଥିଲା । ସମସ୍ତେ ଜାଣିଥିଲେ ତା ସ୍ୱାମୀଙ୍କୁ ଜ୍ୱର ହୋଇଥିବାରୁ ସେ ଶୋଇଛନ୍ତି । ଯେଉଁମାନେ ନିଜ ଲୋକ ତା ସ୍ୱାମୀ ଯେ ଗୋଟିଏ ମାନସିକ ବିକାରଗ୍ରସ୍ତ ପିଲା ବୋଲି ଜାଣିଥିଲେ । ସେମାନେ ଆଶ୍ଚର୍ଯ୍ୟ ହେଉଥିଲେ । ତୃଷାକୁ ଏମିତି ପ୍ରଶ୍ନିଳ ଚାହାଁଣୀରେ ଚାହୁଁଥିଲେ ଯେ, ସେ ବାଧ୍ୟରେ ଆଖି ନୁଆଁଇ ବସି ରହିଥିଲା ଏକ କାଠ କଣ୍ଢେଇ ପରି । ତା' ଭିତରେ ଖାଲି କୋହ ଉଠୁଥିଲା । ଓଃ କେବେ ସରିବ ଏ ପ୍ରହସନ ।

ସେଇ ରାତ୍ରିର ମହାନାଟକର ମହାନାୟକ ଥିଲା ଜନ୍ । ଚନ୍ଦ୍ରବାବୁଙ୍କର ନାତି । ଆମେରିକରୁ ଦୀର୍ଘ ଚବିଶ୍‌ବର୍ଷ ପରେ ଆସିଥିବା ତାଙ୍କର ସମସ୍ତ ଆଶା, ଆକାଙ୍‌କ୍ଷାର ଏକ ସ୍ୱପ୍ନିଳ ବୃକ୍ଷ । ଯିଏ କି କେବେହେଲେ ଏଠାକୁ ଆସିବାର ସମ୍ଭାବନା ନଥିଲା । ପଚିଶ୍‌ବର୍ଷ ତଳେ ଜମିଦାର ପୁଅ ଅତନୁ ସାମନ୍ତରାୟ ତା'ର ଧର୍ଷିତା ପତ୍ନୀକୁ ଭାଗ୍ୟର ବଳୟ ଭିତରେ ସମସ୍ତ ବିର୍ପଯୟକୁ ଏକାଏକା ସାମ୍ନା କରିବାକୁ ଛାଡ଼ି ଦେଇ ନିଜର ପୌରୁଷତ୍ୱର ସମସ୍ତ ଅହମିକା ନେଇ ଚାଲିଯାଇଥିଲା

ସୁଦୂର ଆମେରିକା । ସେଇଠି ହିଁ ସେ ନିଜର ଭୂମିକା ଓ ଭୂମି ପାଇ ଆଶ୍ୱସ୍ତ ହୋଇଥିଲା । ସେ ନିଜର ସ୍ୱାଧୀନ ଜୀବନକୁ ପିତାଙ୍କର ଅପର୍ଯ୍ୟାପ୍ତ ଧନ ସାହାଯ୍ୟରେ ବେଶ୍ କିଛିଦିନ ମନ ଭରି ଉପଭୋଗ କରିବା ପରେ ଦିନେ ଏକ ଦୂରାରୋଗ୍ୟ ବ୍ୟାଧିରେ ପଡ଼ି ଏକ ଚିକିତ୍ସାଳୟରେ ଅନେକଦିନ ଧରି ଚିକିତ୍ସିତ ହେଲା ଯାହା ତା'ର ଜୀବନର ଗତିପଥକୁ ଏକ୍‌ଦମ୍ ବଦଳାଇ ଦେଲା । ସେଇଠି ହିଁ ତା'ର ମାର୍ଗାରେଟ୍ ନାମ୍ନୀ ଏକ ନର୍ସସହ ବନ୍ଧୁତା ଓ ବନ୍ଧୁତାରୁ ପ୍ରେମ ହୋଇଗଲା । ଯିଏ କି ଏକ ସନ୍ତାନର ମା' ଥିଲା । ସନ୍ତାନର ପିତା ମାର୍ଗାରେଟ୍‌କୁ ଛାଡ଼ି ପୁରୁଣା ଗୋଟିଏ ସ୍ତ୍ରୀକୁ ବିବାହ କରିଥିବାରୁ ନିଜର ପୁରୁଣା କାଳିଆ ଚିନ୍ତାଧାରାକୁ ଭାରତମାଟିରେ ହିଁ କବର ଦେଇ ଚାଲିଯାଇଥିବା ଅତନୁ ମାର୍ଗାରେଟ୍‌କୁ ହିଁ ନିଜର ଜୀବନସାଥି ଭାବରେ ଗ୍ରହଣ କରିଥିଲା । ସେଇ ନାରୀଟିର ପ୍ରେମ, ପ୍ରେରଣା, ସ୍ନେହସାହଚର୍ଯ୍ୟ ପାଇ ସେ ଭୁଲିଗଲା ଆଉ ଗୋଟିଏ ନାରୀର ବ୍ୟାଥାତୁର ରଜନୀର ସମସ୍ତ କାହାଣୀ । ବିଜିନେସ୍ କରି କୋଟିପତି ହେଲା, ଦୁଇ ପୁତ୍ର କନ୍ୟାଙ୍କର ପିତା ମଧ୍ୟ । ଆଉ ଭାରତ ଆସିବାକୁ ଇଚ୍ଛା ନଥିଲା ତା'ର । ତେବେ ଫୋନ୍ ମାଧ୍ୟମରେ ସେ ସଂପର୍କ ରଖୁଥିଲା ପିତା ଓ ପିଉସୀଙ୍କ ସହ । ଚନ୍ଦ୍ରକାନ୍ତା ଦେବୀଙ୍କର ନିମନ୍ତ୍ରଣ ପାଇଁ ହିଁ ଅତନୁ ପଠାଇଛନ୍ତି ତାଙ୍କର ପୁତ୍ର ଜନ୍‌କୁ ଘରକୁ । ତା' ହାତରେ ଆସିଛି ବୋହୂ ପାଇଁ ବିରାଟ ରତ୍ନଖଚିତ ହାର । ଯାହାକୁ ପିନ୍ଧି ଅପୂର୍ବ ଦିଶୁଛି ତୃଷା । ଭିତରେ ଭିତରେ ସେ ସନ୍ତୁଳି ଯାଉଛି । ଏଇ ରାତ୍ରିର ପ୍ରଭାତରେ ହିଁ ଚାଲିଯିବ ଏ ସ୍ଥାନଛାଡ଼ି । ଏ ବଡ଼ଲୋକ ଘର ଆଦବକାଇଦା, ଚାଲିଚଳଣୀ ଭିତରେ ସେ ଏକ ପିଞ୍ଜରାବଦ୍ଧ ପକ୍ଷୀ ପରି ଛଟପଟ ହେଉଛି । ଅଣନିଶ୍ୱାସୀ ହୋଇ ମୁକ୍ତିର ରାହା ଖୋଜୁଛି ।

ସବୁ ଲୋକମାନେ ଚନ୍ଦ୍ରକାନ୍ତା ଦେବୀଙ୍କୁ ଅଭିନନ୍ଦନ ଜଣାଉଛନ୍ତି । ଜନ୍ ସହ କଥା ହୋଇ ନିଜେ ଗର୍ବ ଅନୁଭବ କରୁଛନ୍ତି, ହେଲେ ତୃଷା ଅନୁଭବ କରୁଛି ଜନ୍‌ର ତା' ପ୍ରତି ଅଶ୍ଳୀଳ ଚାହାଣୀ ଓ କାମନା ଦଗ୍ଧ ମନର ବାସ୍ନାକୁ ।

ପାର୍ଟି ଶେଷରେ ତାକୁ ଚନ୍ଦ୍ରକାନ୍ତା ଦେବୀ ହାତଧରି ନେଇଗଲେ ଶିଡ଼ର ସେଇ ଶେଷ ଘରଟିକୁ । ଭୟରେ ଜଡ଼ସଡ଼ ହୋଇଗଲା ଦେହ ତା'ର । ସେ କହିଲେ ଭୟ କରିବା ଦରକାର ନାହିଁ । ପରମ୍ପରା ଓ ବିଧି ଦୃଷ୍ଟିରୁ ଆଜି ହିଁ ତୁମେ

ଦୁହିଁଙ୍କର ଚତୁର୍ଥୀ ରାତି ଅନୁଷ୍ଠିତ ହେଉଛି । ଏତିକିଦିନ କେବଳ ଜନ୍ ଓ ଅତନୁର ବାଟ ଚାହିଁ ବିତିଯାଇଛି । ତାଙ୍କୁ ହିଁ ଆମେ ଅପେକ୍ଷା କରିଥିଲୁ । ଜିତୁକୁ ନିଦ ଇଂଜେକ୍‌ସନ ଦିଆ ହୋଇଛି, ତମେ ରାତିଟି ଏଇ ରୁମ୍‌ରେ କାଟି ଦିଅ ।

ସେ ଘର ଭିତରେ ପାଦଦେଲା । ନୀଳ ଆଲୋକରେ ଜିତୁର ନିଦୁଆ ମୁହଁଟି ଗୋଟିଏ ନିଷ୍ପାପ କଢ଼ୀଟିଏ ପରି ଲାଗୁଥିଲା ତାକୁ । ସେ ସବୁ ଭୟ ଛାଡ଼ି ଧିରେଧିରେ ଖଟ ଧାରରେ ଠିଆ ହୋଇ ତା' ସ୍ୱାମୀର ଚରଣ ସ୍ପର୍ଶ କରି ମଥାରେ ମାରିଲା । ମୁଣ୍ଡ ପାଖରେ ଆଲୁଳାୟିତ କେଶକୁ ସାଉଁଳାଇ ସେ ବସୁବସୁ ଚମ୍‌କି ପଡ଼ିଲା । ଦୁଇଟି ଜ୍ୱଳନ୍ତ ଆଖି ତାକୁ ସତୃଷ୍ଣା ନୟନରେ ଚାହିଁରହିଛି ସୋଫା ଉପରୁ । ସେ ବିକଳରେ ପଚାରିଲା କିଏ ? ସେ ଲୋକଟି ଧାଇଁ ଆସି ତା' ପାଟି ଚାପିଧରିଲା । ପାଟି କରନା, ମୁଁ ଜନ୍ । ଇଂରାଜୀରେ କହିଲା ସେ । ଠକ୍‌ଠକ୍ ଥରିବାକୁ ଲାଗିଲା ତୃଷ୍ଣା ।

'କ'ଣ ଚାହୁଁଛ, କାହିଁକି ଆସିଛ ଏଠାକୁ । ବାହାରି ଯାଅ...... ଇତ୍ୟାଦି ଅନେକ କିଛି କହିବାକୁ ଚାହିଁବି ସେ କିଛି କହିପାରିଲାନି । ଜନ୍ ତା'ର ପାଟିରେ ତା'ର ମଥାର ଓଢ଼ଣୀ ବାନ୍ଧିଦେବା ସହ ତାରି ଶାଢ଼ୀର କାନିରେ ହାତବାନ୍ଧି ଦେଲା । ଆଉ କହିଲା ଏତେ ରାସ୍ତାରୁ କେବଳ ତୁମର ଫଟୋ ଦେଖି ମୁଁ ଧାଇଁ ଆସିଛି ଯେଉଁଟା ପିଇସୀ ପଠାଇଥିଲେ ଆମେରିକା । ଆଜି ତୁମ ସହ ମୋର ଚର୍ତୁଥୀ ରାତି । ଏଇ ସର୍ତ୍ତରେ ପିଇସି ରାଜି ହେବାରୁ ହିଁ ମୁଁ ଏଠାକୁ ଆସିଛି । ପିଇସୀ ଜେଜେ ସବୁ ଜାଣିଛନ୍ତି ତମେ ପାଟି କରି କିଛି ଲାଭ ନାହିଁ । ଏ ବଂଶର ମୁଁ ଉତ୍ତରାଧିକାରୀ । ଯଦି ସେମାନେ ମୋ କଥାରେ ରାଜି ହୋଇନଥାନ୍ତେ ମୁଁ କେବେହେଲେ ଇଣ୍ଡିଆ ଆସିନଥାନ୍ତି । ତମେ ଖୁସିରେ ରାଜି ହୋଇଯାଅ । ବାହାରେ କେହି କିଛି ଜାଣିପାରିବେନି । ତମେ ମୋର ରକ୍ଷୀତା ହୋଇ ରହିବ । ମୋର ଫେମେଲୀ ହୋଇଗଲେ ବି କିଛି ଅସୁବିଧା ହେବନି । ତୁମେ ଜିତୁର ସ୍ତ୍ରୀ, ମୁଁ ତୁମର ଦେଢ଼ଶ୍ୱର କେହି ଅବିଶ୍ୱାସ କରିବେନି । ଆଉ କିଛି ଶୁଣିବାର ଧୈର୍ଯ୍ୟ ନଥିଲା ତୃଷ୍ଣାର । ତା'ର ପାଟିଟି ଖୋଲିଦେବା ମାତ୍ରେ ସେ ଚିତ୍କାର କଲା ନାଁ......ତା ହୋଇପାରେନା । ମୋ ପ୍ରତି ଏପରି ବିଶ୍ୱାସଘାତକତା କାହିଁକି ହେଲା । ପୁଣି ତାର ପାଟି ବଂଦ କରିଦେଲା ଜନ୍ ।

ଅନ୍ଧାରରେ ମଣିଷ ପାଲଟିଯାଏ ଆଦିମ ମାନବ । ତା' ଭିତରେ ଚିତ୍କାର କରିଉଠେ ଦାନବୀୟ କ୍ଷୁଧା । ଲୁଟିହୋଇଯାଏ ସାରା ଜୀବନର ସଞ୍ଚିତ ଗୋଟିଏ ନାରୀର ସବୁ କିଛି । ସମସ୍ତ ଦେବତା ନୀରବ ହୋଇଯାଆନ୍ତି କୁରୁସଭାର ସଦସ୍ୟମାନଙ୍କ ପରି ।

ତୃଷ୍ଣାର ସ୍ୱାମୀ ଇହକାଳ ପରକାଳର ଦେବତା ସେଇ ଅନ୍ଧାର ଘରେ ଉପସ୍ଥିତ ଥାଇ ବି କିଛି ସାହାଯ୍ୟ ପାଇପାରିଲେନି । ଜିତୁ ଇଂଜେକ୍‌ସନର ପ୍ରଭାବରେ ଅଚେତନ ହୋଇଯାଇଥିଲେ । ଯଦି ସେ ଚେଇଁଥାନ୍ତି ସେ କେବେ ବି ଉଦ୍ଧାର କରିପାରିନଥାନ୍ତା । ଜନ୍‌ପରି ଏକ ଆଦିମ ଜାନ୍ତବ ପଶୁର ପାଶବିକତାରୁ ତୃଷ୍ଣାକୁ । ଗୋଟିଏ ନିରୀହ ନିଷ୍ପାପ କୋମଳ ଶିଶୁର ଜୀବନ ଜୀଉଁଥିବା ମଣିଷଟେ କ'ଣ ବା' ଜାଣେ ।

ଅଚେତନ ଶରୀର ତୃଷ୍ଣାର ପ୍ରାଣ ନଥିବା ପରି ଖସିପଡ଼ିଲା ଭୂମି ଉପରେ । ତାକୁ ପାଦରେ ଠେଲି ଦେଇ ଚାଲିଗଲା ଜନ୍ । ଗୋଟିଏ ନିଷ୍ପାପକଳିକୁ ଦଳିଚକଟି ଫିଙ୍ଗିଦେଇଗଲା ସାରାଜୀବନ ପାଇଁ, ଯନ୍ତ୍ରଣାର ଜୀବନ ଜୀଇଁବାକୁ ।

କେତେ କ'ଣ ଭାବିନଥିଲା ବିଚାରୀ । ସ୍ୱପ୍ନର ମୀନାର ତା'ର ଏମିତି ରୂପ ନେବ କିଏ ଜାଣିଥିଲା । ସନ୍ଧ୍ୟାରେ ସଂଜବତୀ ଦେଇ ଜାଳୁଥିବା ଚଉରାମୂଳରେ । ବେକରେ ଲୁଗାଗୁଡ଼ାଇ ସ୍ୱାମୀ ସନ୍ତାନଙ୍କୁ ପାଇଁ ଶୁଭମନାସିବ । ଶାଶୁ, ଶ୍ୱଶୁରଙ୍କର ସେବା କରିବ, ଏକ ସୁନାନାକୀ ବୋହୂ, ପତିବ୍ରତା ପତ୍ନୀ ହେବ । ହେଲେ ସବୁସ୍ୱପ୍ନ ତା'ର ପାଣିର ବୁଦ୍‌ବୁଦ୍ ଫୋଟକା ପରି ମିଳେଇଗଲା ମହାଶୂନ୍ୟରେ ଉଲ୍‌କାପିଣ୍ଡ ପରି । କେତେବେଳ ତା'ର ଚେତା ଫେରିବ । ଏକ ଜାନ୍ତବ ପଶୁର ଜାନୁଆର୍ କ୍ଷୁଧା ମେଣ୍ଟାଇବାକୁ ତା ଶରୀରକୁ ନିୟୋଜିତ କରାଯିବ, ଏଇ ହେବ ତା'ର ଭାଗ୍ୟ । କାହିଁକି ? ଦୁନିଆଁ ସମାଜ ଜାଣିବ ସେ ଛୋଟରାୟ ବଂଶର କୂଳବଧୂ ହେଲେ ପରୋକ୍ଷରେ ସେ ସାଜିବ ବାରାଙ୍ଗନା । କାହିଁକି ? କ'ଣ ତା'ର ଦୋଷ ? ତା' ମା'ର ଦୋଷ କ'ଣ ଥିଲା ? ସେ ସତେ ଯେମିତି ମା' ଚଣ୍ଡୀପରି ରଣହୁଙ୍କାର ଛାଡ଼ି ରଡ଼ି କରି ମାଡ଼ିଆସୁଥିବା ଦେବୀ ପାଲଟିଗଲା । ସେ କ୍ଷଣକରେ ଦୁର୍ଗାସାଜି, ମହିଷାସୁର ବେଶରେ ଥିବା ସମସ୍ତ ପୁରୁଷ ସମାଜକୁ ଧ୍ୱଂସ କରିବାକୁ ବଜ୍ରଶପଥ କଲା । ସେ ନାରୀ ହୋଇପାରେ ମାତ୍ର ଅବଳା ନୁହେଁ । ଶରୀରର ସମସ୍ତ ଶକ୍ତିଖଟାଇ

ସେ ଉଠିଲା । ତା' ଦେହରେ ଲାଲ୍‌ବନାରସୀ ଶାଢ଼ୀ ଲାଲ୍ ଚୁଡ଼ି, ଲାଲ୍ ସିନ୍ଦୂର ବିପର୍ଯ୍ୟସ୍ତ ହୋଇ ପଡ଼ିଥିଲା । ସମଗ୍ର ଶରୀରରେ ଅସହ୍ୟ ଯନ୍ତ୍ରଣା ! ଦ୍ରୌପଦୀ ପରି ତାକୁ ବି ବାଜି ରଖିଦିଅଗଲା । ତା'ରି ରୂପର ବିନିମୟରେ ଚନ୍ଦ୍ରବାବୁ ତାଙ୍କ ନାତିକୁ କିଣି ଆଣିପାରିଲେ । ସେ ପାଗଳର ସ୍ତ୍ରୀ ବୋଲି ନିଜକୁ ପରିଚୟ ଦେବାପାଇଁ କୁଣ୍ଠାବୋଧ କରିନଥାନ୍ତା । ସମଗ୍ର ଆୟୁଷକୁ ସର୍ମପି ଦେଇଥାନ୍ତା ସ୍ୱାମୀର ସେବାରେ । ସେ ସାବିତ୍ରୀ ହୋଇ ଫେରାଇ ଆଣିଥାନ୍ତା ସ୍ୱାମୀର ଜୀବନ ! ହେଲେ ଆଉଜଣଙ୍କର ରକ୍ଷିତା !

ବଡ଼ ଘରର ବଡ଼ ପ୍ରାଚୀର ଭିତରେ ଘଟୁଥିବା ଏଇ କାହାଣୀଗୁଡ଼ାକ ସମୟର ଇତିହାସରେ କେବେ ସ୍ଥାନ ପାଇନି । କେବେହେଲେ ପଣ୍ୟଦ୍ରବ୍ୟ ସାଜି ମୋଗଲ୍ ହାରେମ୍‌ମାନଙ୍କ ଭିତରେ ଥିବା ଅସଂଖ୍ୟ ନାରୀଙ୍କର କରୁଣ ଚିତ୍କାର, ସେମାନଙ୍କର ବ୍ୟଥା ବିଜଡ଼ିତ କଣ୍ଠର କ୍ରନ୍ଦନ ଶୁଣିନାହାଁନ୍ତି । କାରଣ.......ସମାଜ ପୁରୁଷର ! ପୁରୁଷ କାମନା ନିଆଁରେ ଘିଅ ହୋଇ ଜଳିବାକୁ ନାରୀର ଜନ୍ମ ! ହେଲେ କେତେବେଳେ କେମିତି ବିଦ୍ରୋହର ବହ୍ନି ଜଳିଉଠେ । ସେଇ ମଶାଲର ନିଆଁ ସମଗ୍ର ମାନବସମାଜକୁ ଜାଳିଦେବାକୁ ବଦ୍ଧପରିକର ହୋଇଉଠେ ।

ଶଇତାନର ଶେଷ ରାତି ଥିଲା !

ବଗିଚାରେ ପଡ଼ିଥିବା ଦା'କୁ ହାତରେ ଉଠାଇ ଦୌଡ଼ିଲା ତୃଷା । ଜନ୍‌ର ରୁମ୍ ଆଡ଼କୁ ଆଗେଇ ଚାଲିଲା । ପଛରେ ପଡ଼ିରହିଛି ତା'ର ଭଙ୍ଗାଚୂଡ଼ି ଆଉ ଲୁଣ୍ଠିତ ନାରୀତ୍ୱ, ତା'ର ଭ୍ରୂକ୍ଷେପ ନାହିଁ କିଛି ପ୍ରତି । ଆର୍ତ୍ତନାଦ, ଚିତ୍କାର ସବୁଶେଷ !

ସେ ପାଗଳୀ ପରି ହସିବାକୁ ଲାଗିଲା । ଆଖିରୁ ବହୁଥିଲା ଲୁହର ତଟିନୀ । ସେ ସ୍ରୋତସ୍ୱିନୀ ନଦୀଟିଏ ହେବାକୁ ଚାହିଁଥିଲା ଅଥଚ ସରସ୍ୱତୀ ପରି ଲୁପ୍ତହେଲା ସମୟର ବାଲିଚର ଭିତରେ । ସେ ପ୍ରତିଶୋଧ ନେଇଛି ଜନ୍ ଉପରେ । ଯେତଥର ସେ ଜନ୍ ଛାତିରେ ଦା'ଟିକୁ ଭୁଷିଛି ସେତେଥର ତା' ମା'ର ମୁହଁ ଆଉ ତା'ର ବ୍ୟର୍ଥ ନାରୀତ୍ୱର ଚରମ ଅପମାନକୁ ମନେପକାଇଛି । ସେଇ ଜାନ୍ତବ ପଶୁମାନଙ୍କ କାମନାର ନିଆଁରେ ଜଳିଯାଇଥିବା ମା'ର ଲୁହବତୁରା ଆଖି ଦୁଇଟା ଦେଖିଛି । ହିଁ........ହିଁ ହସିଛି ସେ । ସେ ପଶୁମାନଙ୍କ ଉପରେ ହିଁ ସେ ପ୍ରତିଶୋଧ ନେଉଛି । ସେମାନଙ୍କୁ ହିଁ ସେ ବଧ କରୁଛି ।

ସେ ଜେଲ୍ ଆସିଲା । ବିଚାରଧୀନ କଏଦୀଟିଏ ସେ ! ମଣିଷମାରିବାର ଦଣ୍ଡ ଯଦି ଫାଶୀହୁଏ, ତେବେ ବି ସେ ଅନୁତପ୍ତ ନୁହେଁ । ବରଂ ତା' ମନ ବେଶ୍ ହାଲ୍କା ଲାଗୁଛି । ତା' ମା'ର ବିକଳଆତ୍ମା ତାକୁ ଆଶୀର୍ବାଦ କରୁଛି । ହେଲେ........ ଜେଲ ଭିତରର କଥା........... କ'ଣ ନିଆରା ? ସେ କେବଳ ସ୍ତ୍ରୀଟିଏ । ତା' ଦେହ ଏକ ଖେଳଣା । ଏଠି ବି ସେଇ ଏକା କଥା । ସେ କରିବ କ'ଣ ? ଏଠି ରାତି ଆସିଲେ ଆରମ୍ଭ ହୁଏ ଅନ୍ୟ କାହାଣୀଟିଏ । କେତେ ରାଜନେତା, କେତେ ପୋଲିସ୍, କେତେ ବ୍ୟବସାୟୀଙ୍କର ଖେଳଣା ସାଜନ୍ତି ଜେଲ୍‌ର ନାରୀବନ୍ଦିନୀ ମାନେ । ସେମାନେ ଅସହାୟ । ସେମାନେ କୌଣସି ପାପରେ ପାପିନୀ । ଦଣ୍ଡିତ । ସେମାନେ କଥା କହିବା ଶକ୍ତି ଥାଇ ବି ପଥରର ମୂର୍ତ୍ତି ସାଜିବାକୁ ବାଧ୍ୟ !! ସେମାନଙ୍କର ପରିବାର, ଆତ୍ମୀୟସ୍ୱଜନ ସଭିଏଁ ସେମାନଙ୍କୁ ପର କରିଦେଇଛନ୍ତି ।

ତୃଷ୍ଣା ପ୍ରତିବାଦ କଲା । ଚିତ୍କାର କଲା ରଣଚଣ୍ଡୀ ସାଜିଲା । ଶେଷରେ ସେଠିବି ସେ ଲୁଟି ହେଲା ବାରମ୍ବାର ଆଉ ପାଗେଳୀ ସଜାଇ ଆଜି ଡ଼ାକ୍ତରଖାନାର ସଫେଦ୍ ଖଟରେ ଶୋଇ ପ୍ରତୀକ୍ଷା କରୁଛି ସମୟର ଚକ ପୁଣି କୁଆଡ଼େ ଘୁରୁଛି ଦେଖିବାକ ।





ପଲ୍ଲୀଶ୍ରୀ ପଟ୍ଟନାୟକ

ଉଚ୍ଚଶିକ୍ଷା ଲାଭପରେ ଜଣେ ସୁଗୃହିଣୀର କର୍ମ ସଂପାଦନା ସହ ସାରସ୍ୱତ ସାଧନାରେ ନିମଗ୍ନ । ମଣିଷର ସ୍ୱପ୍ନ, ଆଶଙ୍କା, ସମ୍ଭାବନା, ଜୀବନ-ଯନ୍ତ୍ରଣାକୁ ନେଇ ତାଙ୍କର ସୃଷ୍ଟି । 'ନିଃସଙ୍ଗ ନିଳୟ' ଗଳ୍ପ ସଂକଳନ ଓ 'ଶତାବ୍ଦୀର ସ୍ୱରଲିପି' ପ୍ରବନ୍ଧ ସଂକଳନ ପ୍ରକାଶପାଇ ପାଠକୀୟ ଶ୍ରଦ୍ଧାଲାଭ କରିଛି ।

'ଚେନାଏ ଆକାଶ ମୁଠାଏ ପୃଥିବୀ' ଲେଖିକାଙ୍କ ଦ୍ୱିତୀୟ ଗଳ୍ପ ସଂକଳନ । ଅଧୁନା ଲେଖିକା ପଲ୍ଲୀଶ୍ରୀ ପଟ୍ଟନାୟକ ଜଣେ ବରିଷ୍ଠ ଗବେଷିକା (ୟୁ.ଜି.ସି)ଭାବେ ଉତ୍କଳବିଶ୍ୱବିଦ୍ୟାଳୟ ଓଡ଼ିଆ ଭାଷା–ସାହିତ୍ୟବିଭାଗର ଡ଼ଃ ବିଜୟ କୁମାର ଶତପଥୀଙ୍କ ନିକଟରେ ଗବେଷଣାରତ ଅଛନ୍ତି ।

ପ୍ରକାଶକ



ସୁବର୍ଣ୍ଣଶ୍ରୀ ପ୍ରକାଶିନୀ